# ଦୀନକୃଷ୍ଣ ଦାସ

ଡକ୍ଟର ନଗେନ୍ଦ୍ରନାଥ ପ୍ରଧାନ



ଓଡ଼ିଶା ସାହିତ୍ୟ ଏକାଡେମୀ

# ଦୀନକୃଷ୍ଣ ଦାସ

ଡକ୍ଟର ନଗେନ୍ଦ୍ର ନାଥ ପ୍ରଧାନ



ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର

# ଦୀନକୃଷ୍ଣ ଦାସ

*ଲେଖକ :*
**ଡକ୍ଟର ନଗେନ୍ଦ୍ର ନାଥ ପ୍ରଧାନ**

*ପ୍ରକାଶକ :*
**ଓଡ଼ିଶା ସାହିତ୍ୟ ଏକାଡେମୀ,**
ସଂସ୍କୃତି ଭବନ, ଭୁବନେଶ୍ୱର-୭୫୧୦୧୪
ଫୋନ-୪୩୧୮୪୦

**ପ୍ରଥମ ପ୍ରକାଶ - ୨୦୦୨**

*ମୁଦ୍ରଣ :*
**ଦି' ପ୍ରିଣ୍ଟୋଭର୍ସ,**
ମୈତ୍ରୀ ସରଣି, କଟକ-୧

**ମୂଲ୍ୟ : ଟ୫୦.୦୦**

**DINAKRUSHNA DAS**

*Written by :*
**Dr. Nagendra Nath Pradhan**

*Published by :*
**Orissa Sahitya Akademi**
Sanskruti Bhaban, Bhubaneswar-751014
Phone : 431840

*First Edition :* **2002**

*Printed by :*
**The Printoverse,**
Maitree Sarani, Cuttack-1

*Price :* ***Rs. 50.00***

**ISBN : 91-7586-077-4**

# ମୁଖବନ୍ଧ

କବି ଦୀନକୃଷ୍ଣ ଦାସ ରୀତିଯୁଗର କବି ଉପେନ୍ଦ୍ର ଭଂଜଙ୍କ ସମସାମୟିକ ବୋଲି ଇତିହାସ ପ୍ରମାଣ ଦିଏ । କିନ୍ତୁ ସେ ଯେ ଜଣେ ପ୍ରଥିତଯଶା କାବ୍ୟଶିଳ୍ପୀ ଏହା ତାଙ୍କ ରଚିତ କାବ୍ୟକବିତା ସାକ୍ଷ୍ୟ ପ୍ରଦାନ କରେ । କବିଙ୍କର ବହୁଚର୍ଚ୍ଚିତ ରସକାବ୍ୟ 'ରସକଲ୍ଲୋଳ' ତାଙ୍କ କାବ୍ୟଶିଳ୍ପର ସର୍ବଶ୍ରେଷ୍ଠ ନିଦର୍ଶନ ।

କେବଳ ସିଏ ଯେ କବିତାରେ ମନୋନିବେଶ କରିଥିଲେ, ତା ନୁହେଁ; ସାଧାରଣ ଜୀବନରେ ନିର୍ଭୀକତା ତଥା ସ୍ପଷ୍ଟବାଦୀତାକୁ ପ୍ରାଥମିକତା ଦେଇ ନିଜର ଶିଳ୍ପୀ ବ୍ୟକ୍ତିତ୍ୱର ପରିଚୟ ଅକ୍ଷୁର୍ଣ୍ଣ ରଖିପାରିଥିଲେ । ଜଣେ ସାର୍ଥକ ବୈଷ୍ଣବୀୟ ଚେତନାର ଅଗ୍ରଦୂତ ସାଜି ଶ୍ରୀକୃଷ୍ଣଙ୍କ ଲୀଳାଖ୍ୟାନରେ ନିଜକୁ ସଂପୂର୍ଣ୍ଣ ନିମଜ୍ଜିତ କରି ସିଏ ସାଉଁଟିଥିଲେ ଜୀବନର ବିହ୍ୱଳତାକୁ । ରସକଲ୍ଲୋଳ ସାଙ୍ଗକୁ ତାଙ୍କ ଲିଖିତ ଅନ୍ୟାନ୍ୟ କାବ୍ୟଗ୍ରନ୍ଥ ଯଥା 'ରସବିନୋଦ', 'ଜଗମୋହନ ଛାନ୍ଦ', 'ପ୍ରସ୍ତାବ ସିନ୍ଧୁ', 'ଆର୍ତ୍ତତ୍ରାଣ ଚଉତିଶା', 'ନାବକେଳି' ତାଙ୍କ ଶାଶ୍ୱତ ବିଭୁପ୍ରେମ ଓ ଗଭୀର ଅର୍ନ୍ତଦୃଷ୍ଟିର ପ୍ରମାଣ ଦିଅନ୍ତି । ବହୁଳ ଜନାଦୃତ କାବ୍ୟ ଭିତରେ ଏଗୁଡ଼ିକ ଓଡ଼ିଆ ସାହିତ୍ୟରେ ସ୍ୱକୀୟ ଲଳିତ ଭାବାବେଗ ଓ କାନ୍ତକୋମଳ ସରସତା ପାଇଁ ବହୁ ପାଠକପାଠିକାଙ୍କ ହୃଦୟରେ ଆଜି ବି ଅନୁରଣିତ ।

କବି ଦୀନକୃଷ୍ଣଙ୍କ କାବ୍ୟପ୍ରତିଭା ଚିରନ୍ତନ । ସମୟ ତାକୁ ଡୁବେଇ ଦେଇ ପାରିନି, ପାରିବ ନାହିଁ ମଧ୍ୟ । ପ୍ରତିଟି ମଣିଷର ରସାତ୍ମକ ବ୍ୟକ୍ତିତ୍ୱକୁ ସିଏ ଉତ୍ତମ ରୂପେ ନିର୍ଣ୍ଣୟ କରି ତାରି ପ୍ରତିଫଳନ କରିଥିଲେ ନିଜର ସୃଷ୍ଟି ସମୂହରେ । ଏଇ ରସସ୍ରୋତ ଆଜି ବି ବେଶ୍ ସ୍ଫଟିକ । ଏହା କେତେବେଳେ ଶୃଙ୍ଗାରୀୟ ମୋଡ଼ ନେଇ କୃଷ୍ଣଙ୍କ ପ୍ରତି ଅଭିପ୍ରେତ ହେଲା ବେଳକୁ ଆଉ କେତେବେଳେ ନୀଳାଚଳବିହାରୀ ଜଗନ୍ନାଥଙ୍କ ପାଖରେ ସମର୍ପିତ । ଉପମା, ଅଳଙ୍କାରର ନିଖୁଣ ପାଟବତା ''କଳାମୁଖ ଗୋଟିକି ସୁନ୍ଦର ଚକାଡୋଳା, ପଦ୍ମଫୁଲ ଭିତରେ କି ଭୃଂଗ କରେ ଖେଳା'' ଶୁଣିଲେ ପାଠକ ଚମତ୍କୃତ ହୁଏ । ତାଙ୍କ କାବ୍ୟସୃଷ୍ଟି ବେଶ୍ ଶ୍ରୁତିମାଧୁର୍ଯ୍ୟ ଓ ବହୁଶାସ୍ତ୍ରଦର୍ଶିତାର ଜ୍ୱଳନ୍ତ ପ୍ରମାଣ । ବହୁ ପୌରାଣିକ ଆଖ୍ୟାନକୁ ସିଏ ନିଜ କବିତ୍ୱରେ ରସାଣିତ କରିଛନ୍ତି । ତାଙ୍କ ସୃଷ୍ଟି ଆଲୋଚନା କଲେ ଅଜାମିଳ ଠାରୁ ଧ୍ରୁବ, ପ୍ରହ୍ଲାଦ ପର୍ଯ୍ୟନ୍ତ ବହୁ ଚରିତ୍ର ସ୍ୱାଭାବିକ ଭାବରେ ଆମ ସାମ୍ନାରେ ନାଚି ଉଠନ୍ତି । ଗୀତି-କବିତାର ବହମାନ ପ୍ରବାହରେ ସିଏ ଆଜି ବି ଆମମାନଙ୍କୁ ଭସେଇ ନେଇ ପାରନ୍ତି । ସିଏ ଯଥାର୍ଥରେ ଏ ମାଟିର ଜଣେ ବରେଣ୍ୟ କାବ୍ୟଶିଳ୍ପୀ ।

'କବି ଦୀନକୃଷ୍ଣ ଦାସ' ପୁସ୍ତିକାଟି ଅପେକ୍ଷାକୃତ କ୍ଷୁଦ୍ର ହେଲେ ସୁଦ୍ଧା ଏହା ଲେଖକ ଡକ୍ଟର ନଗେନ୍ଦ୍ରନାଥ ପ୍ରଧାନଙ୍କ ଗଭୀର ଅନୁସଂଧିତ୍ସା ତଥା ପରିଶ୍ରମର ଫଳଶ୍ରୁତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡ଼ିଶା ସାହିତ୍ୟ ଏକାଡେମୀ ଏହାକୁ ଲୋକଲୋଚନକୁ ଆଣି ପାରିଥିବାରୁ ବେଶ୍ ଗର୍ବିତ । ମୁଁ ପୁସ୍ତକଟିର ଦ୍ରୁତ ପ୍ରସାର କାମନା କରୁଛି ।

**ଅଶ୍ୱିନୀ କୁମାର ମିଶ୍ର**
*ସଂପାଦକ*
*ଓଡ଼ିଶା ସାହିତ୍ୟ ଏକାଡେମୀ*

# ପ୍ରାଗ୍‌ଭାଷ

ଓଡ଼ିଆ ସାହିତ୍ୟରେ କୃଷ୍ଣକଥାର ମହାନ ଶିଳ୍ପୀ ହେଉଛନ୍ତି କବି କୃଷ୍ଣ ଦାସ । ତାଙ୍କ ଦୃଷ୍ଟିରେ ସ୍ୱୟଂ ଶ୍ରୀ ଜଗନ୍ନାଥ ହିଁ ଅବତାରୀ କୃଷ୍ଣ । ଓଡ଼ିଶାରେ ଜୟଦେବଙ୍କ 'ଗୀତଗୋବିନ୍ଦ' ପ୍ରଚାରିତ ହୋଇ ରାଧାକୃଷ୍ଣଙ୍କ ପରକୀୟା ପ୍ରୀତିରସର ପ୍ରସାର ଘଟିଥିଲା ।

ମୂଳ ମହାଭାରତରେ ଶ୍ରୀକୃଷ୍ଣଙ୍କ ଗୋପଲୀଳାର ସାମାନ୍ୟ ସଂକେତମାନ ଥିଲେ ମଧ ତାହା ଆଦୌ ବର୍ଣ୍ଣିତ ହୋଇ ନଥିବା ବେଳେ ସାରଳା ଦାସ ତାଙ୍କର ମହାଭାରତରେ ଖଲ୍ୟକାରର ଜନ୍ମବୃତ୍ତାନ୍ତ ବର୍ଣ୍ଣନା କ୍ରମେ ରାଧାକୃଷ୍ଣଙ୍କ ଗୋପନ ପ୍ରୀତିର ଉଲ୍ଲେଖ କରିଛନ୍ତି । ଏହି ଗୋପନ ପ୍ରୀତି ସୁଲଭ ଭୟ ବିହ୍ୱଳତା ଓ କାମୁକତା ବଶତଃ ଦୂତୀକୁ ରାଧା ଭ୍ରମରେ ବୃନ୍ଦାବନରେ ଘନ ଅନ୍ଧକାରରେ କୃଷ୍ଣ ରମଣ କରିଥିବାର ଜାଣିପାରି ପ୍ରବଳ ଅନୁଶୋଚନା ଓ ଘୃଣାରେ ଜର୍ଜରିତ ହୋଇ ପରକୀୟା ପ୍ରୀତିକୁ ନିନ୍ଦା କରିବା ସହିତ ଏପରି ପରକୀୟା ପ୍ରେମ ପ୍ରୟାସ ଯେ କରିବ ସେ ଅଶେଷ ପରାଭବ ପାଇବ ବୋଲି ଘୋଷଣା କରିଥିଲେ ।

ତଥାପି ସାରଳା ଦାସଙ୍କ ଭଣିତା ଥିବା ଦାଣ୍ଡି ବୃତ୍ତରେ ରଚିତ 'ଭାରତ ହରିବଂଶ'ରେ ଶ୍ରୀକୃଷ୍ଣଙ୍କ ବାଲ୍ୟ-ପୌଗଣ୍ଡ-କୈଶୋର ଲୀଳା ବର୍ଣ୍ଣନା ସହିତ ଗୋପାଙ୍ଗନାମାନଙ୍କ ସହିତ ରାସଲୀଳା ଓ ଏପରି ବିଭ୍ରମରେ କୃଷ୍ଣଙ୍କର ଦୂତୀ-ରମଣ ପ୍ରସଙ୍ଗର ବିଶଦ ବର୍ଣ୍ଣନା ପ୍ରଦାନ କରିଛନ୍ତି । ଷୋଡ଼ଶ ଶତାବ୍ଦୀରେ ଉତ୍କଳୀୟ ବୈଷ୍ଣବ କବି ରାୟ ରାମାନନ୍ଦ ରଚନା କରିଥିଲେ ତାଙ୍କର ବିଖ୍ୟାତ 'ଜଗନ୍ନାଥ ବଲ୍ଲଭ ନାଟକ', ଯହିଁରେ କି ରାଧାକୃଷ୍ଣଙ୍କ ପ୍ରେମବିଳାସ ମାଧୁର୍ଯ୍ୟ ହୋଇଛି ବିଚିତ୍ର ଐଶ୍ୱର୍ଯ୍ୟରେ ଭୂଷିତ । ରାଧାଭାବର ପ୍ରବକ୍ତା ଶ୍ରୀକୃଷ୍ଣ ଚୈତନ୍ୟ ପୁରୀ ଅବସ୍ଥାନ କାଳରେ ଏହି ନାଟକର ଗୀତିକାର ପଠନ ଶ୍ରବଣରେ ରାଧା ଭାବରେ ଆବିଷ୍ଟ ହୋଇଯାଉଥିବାର ବର୍ଣ୍ଣନା ତାଙ୍କର ଜୀବନୀ ଗ୍ରନ୍ଥମାନଙ୍କରୁ ଉପଲବ୍ଧ ହୁଏ । ଜଗନ୍ନାଥ ଦାସଙ୍କର 'ଓଡ଼ିଆ ଭାଗବତ'ର 'ଗୋପଲୀଳା' ବ୍ୟାପକ ଆଦୃତ ହୋଇ ବ୍ରଜରସାସ୍ୱାଦନର ସୌଭାଗ୍ୟ ଓଡ଼ିଶାର ପାଠକମାନଙ୍କୁ ସହଜ ଉପଲବ୍ଧ ହୋଇଥିଲା ।

ଏହାପରେ ଓଡ଼ିଶାରେ ରାଧାକୃଷ୍ଣ ପ୍ରୀତି ସମ୍ବଳିତ ଅଥବା ଗୋପଲୀଳା ସମ୍ବନ୍ଧୀୟ କେତେକ ଗୀତିକା ରଚିତ ହୋଇଥିଲେ ମଧ ଚାନ୍ଦକବିଙ୍କ କ୍ଷୁଦ୍ର କାବ୍ୟ

'ଗୋପୀ ଚନ୍ଦନ' ଓ ଦେବଦୁର୍ଲ୍ଲଭଙ୍କର 'ରହସ୍ୟ ମଞ୍ଜରୀ' ବ୍ୟତୀତ ଅନ୍ୟ କୌଣସି ଉଲ୍ଲେଖଯୋଗ୍ୟ କାବ୍ୟକୃତି ଓଡ଼ିଆ ଭାଷାରେ ରଚିତ ହୋଇ ନଥିଲା ।

କୃଷ୍ଣକଥା ପ୍ରିୟ କବି ଦୀନକୃଷ୍ଣ ଦାସ କୃଷ୍ଣଙ୍କ ବାଲ୍ୟଲୀଳାଦିକୁ ଉପଜୀବ୍ୟ କରି ସାନ ସାନ ଗ୍ରନ୍ଥମାନ ରଚନା ସହିତ କୃଷ୍ଣ ମହିମା ସମ୍ବଳିତ ବହୁ ଗ୍ରନ୍ଥ ପ୍ରଣୟନ କରି କୃଷ୍ଣ ମହିମା ଓ କୃଷ୍ଣ କଥାର ଭାବଗତ ବୈଶିଷ୍ଟ୍ୟକୁ ବ୍ୟାପକ ପ୍ରସାରିତ କରାଇ ଦେଇଥିଲେ । ତାଙ୍କର ପ୍ରାୟ ତିରିଶ ଖଣ୍ଡରୁ ଅଧିକ ସଂଖ୍ୟକ ଗ୍ରନ୍ଥ ଓ ବହୁ ସଂଖ୍ୟକ ଚଉପଦୀ, ଚଉତିଶା, ଭଜନ, ଜଣାଣମାନଙ୍କର ବିଷୟବସ୍ତୁ ମଧ୍ୟ ଏହି ଗୋପାଳକୃଷ୍ଣଙ୍କ ମହିମା ଆଧାରିତ । ତେଣୁ ଓଡ଼ିଶାରେ କୃଷ୍ଣଭକ୍ତିମୂଳକ କାବ୍ୟ କବିତା ଧାରାରେ ଭୂୟୋ ବିକାଶ ପାଇଁ ଦୀନକୃଷ୍ଣଙ୍କ ଗ୍ରନ୍ଥମାନେ ଯେପରି ଶାସ୍ତ୍ରୀୟ ଭିତ୍ତିଭୂମିକୁ ଦୃଢ଼ ନିର୍ମାଣ କରାଇ ଦେଇଥିଲେ, ସେହିପରି କାନ୍ତ କୋମଳ ପଦାବଳୀ ମଣ୍ଡିତ ତାଙ୍କର 'ରସ କଲ୍ଲୋଳ' ମହାକାବ୍ୟ କୃଷ୍ଣଭକ୍ତି କାବ୍ୟଧାରା ଓ କବିତାଧାରାର ପ୍ରବାହକୁ କ୍ଷିପ୍ରତର ଓ ରସସମୃଦ୍ଧ କରାଇ ଦେବାକୁ ପରବର୍ତ୍ତୀ କାବ୍ୟଶିଳ୍ପୀମାନଙ୍କ ପାଇଁ ଅଜସ୍ର ଆଶିଷ ଓ ଅନୁପ୍ରେରଣାର ଉତ୍ସ ରୂପେ ବିବେଚିତ ହୋଇଥିଲା । ଉତ୍ତର ମଧ୍ୟକାଳୀନ ଓଡ଼ିଆ ସାହିତ୍ୟକୁ ବିପୁଳାୟତନ ରସସଂପଦରେ ଭରିଦେବାରେ ଏହି କୃଷ୍ଣଭକ୍ତି ଧାରାର କାବ୍ୟ କବିତାର ଦାନ ହିଁ ସର୍ବାଧିକ ଓ ସର୍ବୋତ୍କୃଷ୍ଟ । ପଞ୍ଚସଖାଯୁଗୀୟ ପ୍ରଗଲ୍ଭ କଥନଭଙ୍ଗୀରେ ପୁରାଣ ଓ ଧର୍ମଗ୍ରନ୍ଥ ରଚନାଶୈଳୀ ଅନୁସରଣ କରୁଥିବା ଏହି ପ୍ରତିଭାଧର କବି କାବ୍ୟଯୁଗୀୟ ଧାରାକୁ ନିଜର ମାର୍ଗ ପରିବର୍ତ୍ତନ ବେଳେ ସେ କାଳ୍ପନିକ କଥାବସ୍ତୁ ଆଧାରରେ କାବ୍ୟ ରଚନା କରିଥିବାବେଳେ ବିପୁଳ ସାଫଲ୍ୟ ସମ୍ଭାବନାପୂର୍ଣ୍ଣ ବ୍ରଜରସ ଆଧାରିତ କଥାବସ୍ତୁକୁ ନିଜ କାବ୍ୟରଚନାରେ ଉପଯୋଗ କଲେ । ସତେ ଯେପରି ଓଡ଼ିଆ କାବ୍ୟରଚନା ଧାରାରେ ଦିବ୍ୟ ଅଦିବ୍ୟ ଭାଷାର ସମନ୍ୱୟ ସହିତ ଲଳିତ ଗମ୍ଭୀର କୃଷ୍ଣକଥା ସମ୍ବଳିତ କଥାର ସଦ୍ୟପ୍ରବର୍ତ୍ତନ କରି ଉଭୟ ଅଙ୍ଗିକ ଓ ଆତ୍ମିକ ବିଭାବ ଦୃଷ୍ଟିରୁ ସେ ସୃଷ୍ଟିକଲେ କୃଷ୍ଣକାବ୍ୟର ନବ ନବ ବିକାଶ ପାଇଁ ଏକ ଅଭିନବ ମାର୍ଗ । ତାଙ୍କରି ରଚନା ସମ୍ଭାରରେ ଉଭୟ ପୁରାଣ ଓ କାବ୍ୟଶୈଳୀ ମଧ୍ୟରେ ସୃଷ୍ଟି ହେଲା ଏକ ମିଳନ ବା ଶୈଳୀଗତ ସମନ୍ୱୟର ପବିତ୍ର ସାରସ୍ୱତ ସେତୁ । ଚଉତିଶା, ଗାଥାକବିତା, ଖଣ୍ଡପୁରାଣ, ସହିତ ଜଗମୋହନ ଛାନ୍ଦ, ମଧୁମଙ୍ଗଳ ଓ ରସକଲ୍ଲୋଳ ପ୍ରଭୃତି କାବ୍ୟଧାରା ଭିତରେ ଅନୁଭୂତ ହୁଏ, ଶୈଳୀଗତ ଓ ଭାବଗତ ଏହି ସମନ୍ୱୟର କ୍ରମପରିଣାମ । ଉତ୍ତର କାଳରେ ବହୁ ସ୍ରଷ୍ଟା ତାଙ୍କର ଏହି ନୂତନ ମାର୍ଗ ପ୍ରଦର୍ଶନରୁ ଲାଭ କରିଛନ୍ତି ସ୍ୱ ସ୍ୱ ସୃଷ୍ଟିରେ ସାଫଲ୍ୟ ପାଇଁ ବିପୁଳ ଅନୁପ୍ରେରଣା ଓ ଆଶୀର୍ବାଦ ।

କୃଷ୍ଣ କଥାର କାବ୍ୟଶିଳ୍ପୀ ଏହି କବିଙ୍କ ରଚନାବଳୀ ହଣ୍ଟର ସାହେବ ଓ ଜନ୍ ବୀମ୍ସଙ୍କ ପରି ପାଶ୍ଚାତ୍ୟ ସମୀକ୍ଷକମାନଙ୍କ ଠାରୁ ଆରମ୍ଭକରି ଓଡ଼ିଆ ସାହିତ୍ୟର ଇତିହାସ ଲେଖକମାନଙ୍କ ପର୍ଯ୍ୟନ୍ତ ବହୁ ବିଦ୍ୱାନ ସମାଲୋଚକମାନଙ୍କର ଦୃଷ୍ଟି ଆକର୍ଷଣ କରି ଆସିଅଛି । ବହୁ ଆଲୋଚକ ରସ ବିନୋଦକାର ଓ ରସକଲ୍ଲୋଳର କବିଙ୍କୁ ଜଣେ ବା ଦୁଇ ବିଭିନ୍ନ ବ୍ୟକ୍ତି ବୋଲି ପ୍ରତିପାଦିତ କରିବାକୁ ଯାଇ ବହିରଙ୍ଗ

ଆଲୋଚନାମାନଙ୍କରେ ଯଥେଷ୍ଟ ସମୟ ଓ ଶକ୍ତି ବିନିଯୋଗ କରି ଯାଇଛନ୍ତି । କିନ୍ତୁ ଉଭୟ ଗ୍ରନ୍ଥର କବି ଯେ ଜଣେ ଓ ଅଭିନ୍ନ ବ୍ୟକ୍ତି ତାହା ତାଙ୍କର 'ଜଗମୋହନ ଛାନ୍ଦ' ଗ୍ରନ୍ଥର ଆବିଷ୍କାର ଓ ସଂପାଦନା ବେଳେ ପ୍ରଫେସର ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ଶକ୍ତିଶାଳୀ ଯୁକ୍ତିମାନଙ୍କ ସାହାଯ୍ୟରେ ପ୍ରମାଣିତ କରି ଯାଇଥିବା ବେଳେ ଆମେ ତାଙ୍କର ଗୀତି କବିତାମାନଙ୍କର ଆଧାରରେ ମଧ୍ୟ ପ୍ରଫେସର ମହାନ୍ତିଙ୍କର ମତକୁ ସମର୍ଥନ କରିଥିଲୁ ଆମର 'ଦୀନକୃଷ୍ଣ ସାହିତ୍ୟ ସମୀକ୍ଷା' ଗ୍ରନ୍ଥରେ ।

କବି ଦୀନକୃଷ୍ଣଙ୍କର ରଚନାବଳୀ ବିଶେଷତଃ 'ରସକଲ୍ଲୋଳ' ଓ ଗୀତିକବିତାଦିମାନଙ୍କର ଅନ୍ତର୍ନିହିତ ରସ ସୌନ୍ଦର୍ଯ୍ୟର ଅନୁଶୀଳନ ଦିଗରେ ପ୍ରୟାସ କରି ଏଥି ପୂର୍ବରୁ 'ଦୀନକୃଷ୍ଣ ସାହିତ୍ୟ ସମୀକ୍ଷା' ଓ 'ଓଡ଼ିଆ ସାହିତ୍ୟରେ ଦୀନକୃଷ୍ଣ' ନାମରେ ଦୁଇଖଣ୍ଡି ଆଲୋଚନା ଗ୍ରନ୍ଥ ଆମେ ପ୍ରକାଶିତ କରିଥିଲୁ । ତଥାପି ଅନ୍ୟାନ୍ୟ ବହୁ ବିଷୟରେ ଆଲୋଚନା ପାଇଁ ସେହି ପୁସ୍ତକଦ୍ୱୟର ପରିସର ଥିଲା ସୀମିତ । ଏବେ 'ଓଡ଼ିଶା ସାହତ୍ୟ ଏକାଡେମୀ'ଙ୍କ ନିବେଦନ କ୍ରମେ ଆମେ ଦୀନକୃଷ୍ଣଙ୍କ ସମଗ୍ର କୃତି ସମ୍ବନ୍ଧରେ ଏକ ବ୍ୟାପକ ପ୍ରବନ୍ଧ ମାତ୍ର ରଚନା କରୁଥିବାବେଳେ, ପୂର୍ବ ପ୍ରକାଶିତ ପୁସ୍ତକମାନଙ୍କର ଅନ୍ତର୍ଭୁକ୍ତ ହୋଇ ପାରିନଥିବା ଆମର ଅଭିମତମାନଙ୍କୁ ଏଥିରେ ସଂଯୋଜିତ କରିବାର ସୁଯୋଗ ଲାଭ କରିଥିବାରୁ ଆମେ ସାହିତ୍ୟ ଏକାଡେମୀର ବରେଣ୍ୟ ଅଧିକାରୀ ମାନଙ୍କଠାରେ ଆମର ନମ୍ର କୃତଜ୍ଞତା ଜ୍ଞାପନ କରୁଅଛୁଁ । ଅପରପକ୍ଷରେ କବି ଦୀନକୃଷ୍ଣଙ୍କର ଧର୍ମମତଗତ ବୈଶିଷ୍ଟ୍ୟ ସମ୍ବନ୍ଧରେ ଆମେ ଏହି କାବ୍ୟାଲୋଚନମୂଳକ ପ୍ରବନ୍ଧରେ ଆଲୋଚନା କରିବାରୁ ଜ୍ଞାନସାରରେ ନିବୃତ୍ତ ରହିବାବେଳେ ଏତିକି ସୂଚନା ଦେଇପାରୁଁ ଯେ ସେ ଜୀବନର ପୂର୍ବାଶ୍ରମରେ ଶ୍ରୀଜଗନ୍ନାଥ ଉପାସନାକୈନ୍ଦ୍ରିକ ଜ୍ଞାନମିଶ୍ରାଭକ୍ତିରେ ବିଶ୍ୱାସ ରଖିଥିବାବେଳେ ପରବର୍ତ୍ତୀ ଜୀବନରେ ଶୁଦ୍ଧା ଭକ୍ତି ପ୍ରଧାନ ଗୋପୀ ଭାବରେ ସାଧନା କରିଥିବାର ଅନୁମିତ ହୁଏ ।

ଦୀନକୃଷ୍ଣଙ୍କ ରଚନାବଳୀମାନଙ୍କ ମଧ୍ୟରୁ ଅତି ଅଳ୍ପ ସଂଖ୍ୟକ ମାତ୍ର ଅଦ୍ୟାବଧି ଲୋକଲୋଚନକୁ ଆସି ପାରିଅଛି । ବହୁ ଅଂଶ ରହିଛି ତଥାପି ଅନାବିଷ୍କୃତ ଓ ଅପ୍ରକାଶିତ । ସେ ସବୁ ଗ୍ରନ୍ଥମାନଙ୍କର ପ୍ରକାଶ ଦ୍ୱାରା ତାଙ୍କର କବି ବ୍ୟକ୍ତିତ୍ୱର ପରିପୂର୍ଣ୍ଣ ସ୍ୱରୂପ ଆକଳନ କରାଯାଇ ପାରନ୍ତା । ବର୍ତ୍ତମାନର ଉପଲବ୍ଧ ସୀମିତ ସଂଖ୍ୟକ ରଚନାବଳୀ ଆଧାରରେ ଆମେ ଆମର ଯଥାସମ୍ଭବ ଆଲୋଚନା ଓ ଅଭିମତକୁ ସୀମାବଦ୍ଧ ରଖିଅଛୁ । ତଥାପି ଆମର ଅଭିମତମାନଙ୍କରେ ଥିବା ତ୍ରୁଟିବିଚ୍ୟୁତି ବା ଅସଂଗତି ସମ୍ବନ୍ଧରେ ଆମକୁ ଅବଗତ କରାଇ ଏ ଦିଗରେ ସୁଚିନ୍ତିତ ଅଭିମତ ଓ ପରାମର୍ଶ ପ୍ରଦାନ ପାଇଁ ବିଜ୍ଞ ଆଲୋଚକ ଓ ପାଠକମାନଙ୍କଠାରେ ଆମର ବିନମ୍ର ନିଂବେଦନ ଜ୍ଞାପନ କରୁଅଛୁଁ ।

୩୦ ଅଗଷ୍ଟ, ୨୦୦୨
ଜନ୍ମାଷ୍ଟମୀ

ନିତ୍ୟାନନ୍ଦ ନାଥ ପ୍ରଧାନ

# ବିଷୟ ସୂଚୀ

ପୃଷ୍ଠା





# ଦୀନକୃଷ୍ଣଙ୍କ ସ୍ୱାଭିମାନ ଓ ଆତ୍ମସଚେତନା

ଭାରତବର୍ଷର ସାରସ୍ୱତ ସାଧକ ପରଂପରାରେ ମାନବିକ ମୂଲ୍ୟବୋଧ ସାମାଜିକ ନ୍ୟାୟ ଓ ନୈତିକ ଅନୁଶାସନର ପ୍ରତିଷ୍ଠା ପାଇଁ ନାନାଭାବରେ ନିରନ୍ତର ପରୋକ୍ଷ ପ୍ରୟାସ ଅବ୍ୟାହତ ରହି ଆସିଥିବାବେଳେ ମୂଲ୍ୟବୋଧର ଅବକ୍ଷୟ ଧାରାକୁ ପ୍ରତ୍ୟକ୍ଷ ଭାବରେ ପ୍ରତିରୋଧ କରିବାର ଦୃଷ୍ଟାନ୍ତ କ୍ୱଚିତ ଦୃଷ୍ଟିଗୋଚର ହୋଇଥାଏ । ଓଡ଼ିଶାରେ ଗଙ୍ଗବଂଶୀୟ ସାମ୍ରାଜ୍ୟତନ୍ତ୍ରର ଅନ୍ତରାଳରେ କ୍ରମବର୍ଦ୍ଧିଷ୍ଣୁ ହୋଇଆସୁଥିବା ଏହି ଅବକ୍ଷୟକୁ ସ୍ୱକୀୟ କାବ୍ୟ ମାଧମରେ ଅତ୍ୟନ୍ତ ମନୋଜ୍ଞ ଭାବରେ ପ୍ରତିବାଦ କରି ଉଗ୍ରସ୍ୱର ଉତ୍ତୋଳନ କରିବାର ଦୁଃସାହସ ପ୍ରଦର୍ଶନ କରିଥିଲେ ଉତ୍କଳର ଜଣେ ଦୀନହୀନ କବି ଦୀନକୃଷ୍ଣ ଦାସ । ଓଡ଼ିଶା ସାମ୍ରାଜ୍ୟରେ ରାଜକୀୟ ପୃଷ୍ଠପୋଷକତା ଓ ସୁରକ୍ଷା ଲାଭକରି ଅସପତ୍ନ ଏକାଧିପତ୍ୟ ପ୍ରଭୁତ୍ୱ ବିସ୍ତାର କରିଥିଲେ ଉପରସ୍ତରର ଗୋଟିଏ ତଥାକଥିତ ବୁଦ୍ଧିଜୀବୀ ଗୋଷ୍ଠୀ, ଯେଉଁମାନେ କି ଆପଣାର ପ୍ରତିପତ୍ତି ଓ ପ୍ରତିଷ୍ଠାକୁ ନିରାପଦ ରଖିବା ଅଭିପ୍ରାୟରେ ଶାସନତନ୍ତ୍ରର ସମସ୍ତ ଅବିବେକିତା ଅବିଚାର ଓ ଅନ୍ୟାୟ ସତ୍ତ୍ୱେ ତା'ର ଅନ୍ଧସ୍ତାବକତା କରୁଥିଲେ । ବିପଥଗାମୀ କବି, ପଣ୍ଡିତ ବିଦ୍ୱାନ ବୁଦ୍ଧିଜୀବୀ ଗୋଷ୍ଠୀର ଏପରି ଭୀରୁତା, କପଟତା ଓ ଛଦ୍ମ ଆବରଣକୁ ଅନାବୃତ କରିବା ସହିତ ସେହି ସ୍ତାବକତା ଓ ଚାଟୁରେ ପ୍ରତ୍ୟୟ ପୋଷଣ କରୁଥିବା ଶାସନତନ୍ତ୍ରକୁ ସମାଲୋଚନା କରି କବି ଦୀନକୃଷ୍ଣ ହିଁ ପ୍ରଥମେ କହିଲେ—

> ''କହେ ଯେଉଁ ପଣ୍ଡିତ ସଭାରେ ପକ୍ଷପାତ ପ୍ରଭୁ ଆଜ୍ଞାକୁ ଅନୁସରି
> କରେ ତହିଁକି ପ୍ରତେ ଯଉଁ ନୃପତି ଚିତ୍ତେ ସେହିଟି ଅବିବେକ ପୂରିହେ''

ପ୍ରବଳ ପରାକ୍ରମୀ ରାଜତନ୍ତ୍ର ଓ ତହିଁରେ ପାଳିତ ତଥା ପ୍ରଭାବ ବିସ୍ତାର କରିଥିବା ରୂଢ଼ିବାଦୀ ଧର୍ମଶାସ୍ତ୍ରବିତ୍ ପଣ୍ଡିତମାନଙ୍କର ଅତ୍ୟାଚାର, ଶୋଷଣ ଓ ଉପଦ୍ରବରେ କ୍ରମେ ଦୁର୍ବଳ, ନିର୍ଜୀବ ଓ ମୃତକଳ୍ପ ହୋଇଯାଇଥିବା ଅବଶିଷ୍ଟ ସମଗ୍ର ସମାଜର ପ୍ରତିବାଦକୁ କାବ୍ୟ ରୂପ ଦେଇ କବି ଦୀନକୃଷ୍ଣ ଯେଉଁ ବିଦ୍ରୋହର ଉଗ୍ରସ୍ୱର ଉତ୍ତୋଳନ କରିଥିଲେ ତାହା ଥିଲା ଏ ଦେଶର ସମାଜ ଚେତନାରେ ସଂପୂର୍ଣ୍ଣ ଅଜ୍ଞାତ, ସଂପୂର୍ଣ୍ଣ ଅଶ୍ରୁତପୂର୍ବ । ମହନୀୟ ବୃହତ୍ତର ଲକ୍ଷ୍ୟରେ ସଂସ୍କୃତ ଭାଷାରେ ରଚିତ କାବ୍ୟ ପୁରାଣାଦି ସାହିତ୍ୟିକ

ସଂପଦ ଅଦ୍ୟାବଧି ରାଜସଭାରେ କେବଳ ଉପଭୋଗର ସାମଗ୍ରୀ ହୋଇ ଆସିଥିବାବେଳେ ଦୀନକୃଷ୍ଣଙ୍କ ପୂର୍ବବର୍ତ୍ତୀ କାଳରେ ବଳରାମ ଦାସ, ଅଚ୍ୟୁତାନନ୍ଦ, ଜଗନ୍ନାଥ ଦାସ ପ୍ରମୁଖ ସାହିତ୍ୟକୁ ସାମାଜିକ ଉତ୍‌ଥାନର ଉପଯୋଗୀ ସାଧନ କରାଇବାର ପ୍ରୟାସ କରିଥିବାବେଳେ ସେମାନଙ୍କ ବିରୋଧରେ ରାଷ୍ଟ୍ରତନ୍ତ୍ର-ବିରୋଧ ପରି ଗୁରୁତର ଅଭିଯୋଗମାନ ମଧ୍ୟ ଆଗତ ହୋଇଥିଲା । ସେମାନେ ନିଜ ନିଜର ନୀତିନିଷ୍ଠ ବ୍ୟକ୍ତିତ୍ୱ ବଳରେ ସେସବୁ ଅଭିଯୋଗର ସଫଳ ମୁକାବିଲା କରି ଆତ୍ମରକ୍ଷା କରି ପାରିଥିଲେ । କିନ୍ତୁ ପଞ୍ଚସଖା ପରବର୍ତ୍ତୀ ପରାଧୀନତାର ଅନ୍ଧକାରମୟ ଯୁଗରେ କ୍ଷୀଣ, ଦୁର୍ବଳ ରାଜସଭାମାନଙ୍କରେ ନ୍ୟସ୍ତସ୍ୱାର୍ଥ ସଂକୀର୍ଣ୍ଣମନା ବିଦ୍ୱାନ ଗୋଷ୍ଠୀ ନିଜ ନିଜର କ୍ଷୁଦ୍ରତା ଓ ଅସମାର୍ଥ୍ୟକୁ ଲୁଚ୍ଚାୟିତ ଓ ଆବୃତ କରି ରଖିବା ଅଭିପ୍ରାୟରେ ଅନ୍ଧ ସ୍ତାବକତା କରି ସ୍ୱାଭିମାନୀ, ସତ୍ୟନିଷ୍ଠ, ଧୀମାନ, ନୀତିମାନ ସର୍ଜ୍ଜନଶୀଳ ପ୍ରତିଭାଧର ବୁଦ୍ଧିଜୀବୀ ଓ କବିମାନଙ୍କ ପ୍ରତି ଅସୂୟା ଓ ଅସହିଷ୍ଣୁତାର ବଶବର୍ତ୍ତୀ ହୋଇ ନାନା ପ୍ରକାର ଭିତ୍ତିହୀନ ମିଥ୍ୟା ଅଭିଯୋଗମାନ ଉତ୍‌ଥାପିତ କରିବାର ହୀନ ଚକ୍ରାନ୍ତ କରୁଥିବା ଏକ ସାଧାରଣ ନିତିଦିନିଆ ବ୍ୟାପରରେ ପରିଣତ ହୋଇଯାଇଥିଲା । ଅରାଜକତା ଓ ଆଇନଶୃଙ୍ଖଳହୀନ ସେହି ଶାସନଯୁଗରେ ଯେତେବେଳେ ସାମାନ୍ୟ ମୁଷ୍ଟିମେୟ ଲୋକ ଧର୍ମ, ନୀତି ଓ ସମାଜବ୍ୟବସ୍ଥାର ଦ୍ୱାହି ଦେଇ କୋଟି କୋଟି ଦୁର୍ବଳ ଲୋକଙ୍କ ଉପରେ ଆପଣାର କ୍ଷମତା ଜାହିର କରି ସେମାନଙ୍କୁ ନିଷ୍ଠୁର ନିର୍ଯ୍ୟାତନାମାନ ଦେଉଥିଲେ ସେତେବେଳେ ଦାରିଦ୍ର୍ୟଲାଞ୍ଛିତ ଦୁରାରୋଗ୍ୟ-ରୋଗ ଯନ୍ତ୍ରଣାରେ ନିଷ୍ପେଷିତ ଦୀନକୃଷ୍ଣଙ୍କ ପରି ଜଣେ ନିପୀଡ଼ିତ ନିଃସଙ୍ଗ କବିଙ୍କର ବିଦ୍ରୋହର ସ୍ୱର ଏକାନ୍ତ ବିସ୍ମୟକର । ସବୁ ଅନ୍ୟାୟ ଅତ୍ୟାଚାରକୁ ବିନମ୍ର ଭାବରେ ସହନ କରି ନେବାରେ ଅଭ୍ୟସ୍ତ ଏକ ସମାଜର ନିଥର, ନିସ୍ତରଙ୍ଗ ଗତାନୁଗତିକ ଜୀବନଧାରାରେ କବି ଦୀନକୃଷ୍ଣଙ୍କର ଏହି ସ୍ୱର ସତେ ଯେପରି ଅନ୍ୟାୟ ବିରୁଦ୍ଧରେ ସଚେତନତା ସୃଷ୍ଟିକରି ଶକ୍ତିଶାଳୀ ଜନଚେତନା ସଂଗଠିତ କରାଇବା ନିମିତ୍ତ ଏକ ଅତ୍ୟନ୍ତ ବଳିଷ୍ଠ ଫଳପ୍ରଦ ଆହ୍ୱାନ । ଏକ ଲଳିତ କାବ୍ୟର ଉପସଂହୃତି ଅନ୍ତର୍ଗତ ସ୍ୱଗତୋକ୍ତି ପରିସର ମଧ୍ୟରେ ଏହି ପଦାଂଶମାନଙ୍କର ସ୍ୱର ଆପାତତଃ କ୍ଷୀଣ ଓ ସଂକୁଚିତ ମନେହେଲେ ହେଁ ଏହାର ଅନ୍ତଃସ୍ୱରରେ ପ୍ରବାହିତ ପ୍ରତିବାଦର ଶକ୍ତିଶାଳୀ ତଡ଼ିତ୍-ତରଙ୍ଗ ତତ୍କାଳ କ୍ରିୟାଶୀଳ ଶକ୍ତିରୂପେ ସତତ ବିଦ୍ୟମାନ ଥିଲା । ତାହା ବ୍ୟତୀତ ତାଙ୍କର ଏପରି ବ୍ୟଙ୍ଗ ବିଦ୍ରୂପ ଶାଣିତ ସମାଲୋଚନାର ସ୍ୱର ତାଙ୍କ ରଚିତ 'ଧର୍ମସାଗର' ପ୍ରଭୃତି ଗ୍ରନ୍ଥରେ ଅଧିକ ପ୍ରଖର ଓ ତୀର୍ଯ୍ୟକ ।

ଏହି ମହାନ ପ୍ରତିଭାଧର କବିଙ୍କର ଆବିର୍ଭାବ ହୁଏ ସାମ୍ରାଜ୍ୟହରା ପରାଧୀନ ଓଡ଼ିଶାରେ ଖ୍ରୀଷ୍ଟୀୟ ୧୭ଶ ଶତାବ୍ଦୀର ମଧ୍ୟ ଭାଗରେ ପ୍ରାୟ ୧୬୫୦ ଖ୍ରୀଷ୍ଟାବ୍ଦ ସୁଦ୍ଧା । ଯଦିଓ ଇତିହାସରେ କୌଣସି ନିର୍ଦ୍ଦିଷ୍ଟ ବିବରଣୀ ତାଙ୍କର ଜୀବନ ଚରିତ ସମ୍ବନ୍ଧରେ

ଉପଲବ୍ଧ ନୁହେଁ, ଶାସନତନ୍ତ୍ର ବିରୋଧରେ ତାଙ୍କର ଉଗ୍ରପ୍ରତିବାଦର ସ୍ୱର ଏପରି ଏକ ଚହଳ ସୃଷ୍ଟି କରିଥିଲା ଯେ ଲୋକଶ୍ରୁତିରେ ଅଦ୍ୟାବଧି ଯେପରି ଅଲିଭା-ଲିପିରେ ଉତ୍କୀର୍ଣ୍ଣ ରହିଛି ତାଙ୍କର ଅନମନୀୟ ବ୍ୟକ୍ତିତ୍ୱର ଏକ କ୍ଷୀଣ-ଖଣ୍ଡିତ ସଂକ୍ଷିପ୍ତ ଆତ୍ମଲିପି ।

ଅଷ୍ଟାଦଶ ଶତାବ୍ଦୀର ବିଖ୍ୟାତ ଜୀବନୀ ଲେଖକ ରାମଦାସ ସ୍ୱୀୟ 'ଦାର୍ଢ୍ୟତାଭକ୍ତି ରସାମୃତ' ଗ୍ରନ୍ଥରେ ଏହି ଦୀନକବି ଦୀନକୃଷ୍ଣ ଦାସଙ୍କ ବଳିଷ୍ଠ ବ୍ୟକ୍ତିତ୍ୱ ଓ ନୀତିନିଷ୍ଠତାର ବିବରଣୀମାନ ଲୋକଶ୍ରୁତିରୁ ସଂଗ୍ରହ କରି ତାଙ୍କୁ ଏ ଦେଶର ବହୁ ବିଶ୍ରୁତ ପୁଣ୍ୟଶ୍ଳୋକ ମହାପୁରୁଷମାନଙ୍କର ପର୍ଯ୍ୟାୟଭୁକ୍ତ କରିଦେଇଛନ୍ତି । ତାଙ୍କର ବିବୃତି ଅନୁସାରେ ପୁରୀର ତତ୍କାଳୀନ ଗଜପତି ରାଜା କବି ଦୀନକୃଷ୍ଣଙ୍କ କବିତ୍ୱରେ ମୁଗ୍ଧ ହୋଇ ରାଜସଭାର ଅନ୍ୟାନ୍ୟ କବିଙ୍କ ପରି ସ୍ୱରଚିତ କାବ୍ୟ କବିତାମାନ ରାଜାଙ୍କ ନାମରେ ଭଣିତା ପାଇଁ ପ୍ରଚୁର ଧନ ସଂପଦାଦି ସହିତ ପଦମର୍ଯ୍ୟାଦା ପ୍ରଦାନ କରିବାକୁ ନିବେଦନ କରିଥିଲେ । କିନ୍ତୁ ସ୍ୱାଭିମାନୀ କବି ନିଜର ଅତି ଶୋଚନୀୟ ଦାରିଦ୍ର୍ୟ ଓ ରୁଗ୍ଣାବସ୍ଥା ସତ୍ତ୍ୱେ ଏପରି ଆତ୍ମଗ୍ଲାନି ମୂଳକ କାର୍ଯ୍ୟଦ୍ୱାରା ସ୍ୱକୀୟ ସୃଜନ ପ୍ରବୃତ୍ତି ପ୍ରତି ଘୋର ଅପମାନ ବୋଲି ବିବେଚନା କରି ସେହି ରାଜ ପ୍ରଲୋଭନକୁ ପ୍ରତ୍ୟାଖ୍ୟାନ କରି ଦେଇଥିଲେ । ତତ୍ପରେ ଆରମ୍ଭ ହୋଇଥିଲା କୁଚକ୍ରୀ ଖର୍ବକାୟ ପଣ୍ଡିତମ୍ମନ୍ୟ ଗୋଷ୍ଠୀର ପ୍ରବଳ ଚକ୍ରାନ୍ତ । ଏହି ଶକ୍ତିଶାଳୀ ପ୍ରତିଭାକୁ ନିର୍ମୂଳ କରିଦେବା ଅଭିପ୍ରାୟରେ ସେମାନେ ଦୀନକୃଷ୍ଣଙ୍କ ଆତ୍ମମ୍ଭରିତା, ଅନମନୀୟତା, ରାଜାଜ୍ଞା ଅବମାନନା ଭଳି ଗୁରୁତର ଦୋଷାବହ କୁକର୍ମ ସମ୍ବନ୍ଧରେ ଅତିରଞ୍ଜିତ ଅଭିଯୋଗମାନ ରାଜଦରବାରରେ ଆଗତ କରାଇ ରାଜାଙ୍କୁ ବିଚଳିତ କରାଇଥିଲେ । ସେମାନଙ୍କର ପ୍ରବର୍ତ୍ତନା ଓ ପ୍ରରୋଚନାରେ ମାତ୍ସର୍ଯ୍ୟ ଜର୍ଜରିତ ରାଜା ତାଙ୍କୁ କାରାଦଣ୍ଡରେ ଦଣ୍ଡିତ କରାଇବାରୁ ଦୀର୍ଘ ସମୟ କ୍ଷୁଧା ତୃଷାରେ ପୀଡ଼ିତ କବିଙ୍କର ଜୀବନ ସଂକଟାପନ୍ନ ହୋଇଥିଲା । କବିଙ୍କର ଏହି ଦୁର୍ଦ୍ଦଶାରେ ତାଙ୍କର ସ୍ୱୀୟ ଇଷ୍ଟ ଦେବତା ଜଗନ୍ନାଥ ତାଙ୍କୁ କାରାଗାରରେ ଶୃଙ୍ଖଳମୁକ୍ତ କରାଇ ସୁମିଷ୍ଟ ଖାଦ୍ୟାଦି ପ୍ରଦାନ କରି ତାଙ୍କର କ୍ଷୁଧା ନିବାରଣ କରାଇଥିଲେ, ଏବଂ ଦୀନକୃଷ୍ଣଙ୍କ ମହାନତା ସମ୍ବନ୍ଧରେ ସ୍ୱପ୍ନାଦିଷ୍ଟ ହୋଇ ରାଜା ସସମ୍ମାନ କବିଙ୍କୁ କାରାମୁକ୍ତ କରାଇ ଦେଇଥିଲେ । ରାମଦାସଙ୍କ ବିବୃତି ଅନୁସାରେ;

ଶୁଣ ହେ କବି କୃଷ୍ଣ ଦାସ । ହୋଇଣ ଥିବ ଦିବ୍ୟ ବେଶ ।।
ସୁନ୍ଦର ମଧୁର କଠିନ । ଗୀତ କରି ମୋ ନାମେ ଭଣ ।।
ମୋ ନାମେ ଭଣିଲେ ଅବଶ୍ୟ । ଅନେକ ଦେବି ଗ୍ରାମ ଦେଶ ।।
ମୋ ରାଜ୍ୟେ ଦେବି ଅଧିକାର । ଦେଖ ମୁଁ ଜଗତ ଈଶ୍ୱର ।।
ନୋହିଲେ ମରିବୁ ଅବଶ୍ୟ । ଛାଡ଼ ତୋ ଜୀବନର ଆଶ ।।
x x x
ଦାସେ ବୋଇଲେ ତାହା ଶୁଣି । ଶୁଣ ହେ ନୃପଚୂଡ଼ାମଣି ।।
ତୁମ୍ଭଙ୍କୁ ନାହିଁ ମୋର ଡର । ମୋ ପ୍ରଭୁ ବଳେ ବଳୀୟାର ।।
ଜଗତ ସୃଷ୍ଟି ଆନ ହେଲେ । ଏ ଗୀତ ଆନକୁ ନବୋଲେ ।।

ଜୀବନରେ ଏପରି ଦୁର୍ଭାଗ୍ୟ ଓ ବିଡ଼ମ୍ବନାର ବିଷୟ ସେହି ସ୍ୱାଭିମାନୀ କବି ନିଜର କୌଣସି ଗ୍ରନ୍ଥରେ ଉଲ୍ଲେଖ କରି ନଥିଲେ ମଧ୍ୟ ପରୋକ୍ଷରେ ଏକ ସାଧାରଣ ରୀତିରେ ସୂଚନା ଦେଇ ଲେଖିଛନ୍ତି;

''କଣ୍ଠରେ ଭୂଷଣ କରି ତାଙ୍କ ଗୁଣ ଗାଉଥାଇ ନାମମାନ
କୃପଣ ଗୁଆଁର କୁବୁଦ୍ଧିକି ଜ୍ଞାନ ମାଗି ପାଉଥାଇ ମାନ
କରେ ଚିନ୍ତାମଣି ପାଇକରି ଆଣି ନ ରହିଲା ମୋର କିଛି ।
କରଇ ବିଚାର କେତେବେଳେ ଛାର ଜୀବନ କାହିଁକି ଅଛି ।
କୃଷ୍ଣ ଆଶ୍ରେକରି ସୁବିଦ୍ୟା ଆଚରି ପାଷାଣ୍ଡକୁ ଯାହା ସ୍ତୁତି,
କୃଷ୍ଣ ଦାସ କହେ କିଛି ଭଲ ନୋହେ କେବଳ ଛାତିକି କାତି ।

*(ର.କ. ୨୦/୨୭-୩୦)*

ଆପଣାର ଗ୍ରାସାଚ୍ଛାଦନ ପାଇଁ କବିମାନଙ୍କୁ ମୂର୍ଖ, ଅପଣ୍ଡିତ; ଅରସିକ ଧନପତି ଅଥବା ରାଜାଙ୍କ ପରି ଶାସକମାନଙ୍କର ଚାଟୁ ଓ ସ୍ତାବକତାକୁ ଚରମ ଦୁର୍ଭାଗ୍ୟ ମନେକରି ଲେଖିଛନ୍ତି;

''କବି ଯା କରେ ମୂର୍ଖକୁ ସ୍ତୁତି ଏଥିରୁ ବଡ଼ ନାହିଁ ବିପତ୍ତି
ଏଥିକି ପ୍ରତି ଛାତିକି କାତି ମାରିବା ଭଲ ଯେ ।'' *(ର.କ. ୧୬ଶ ଛାନ୍ଦ)*

ଅନ୍ୟ କୌଣସି ଉଦ୍ୟୋଗ ବା ଉତ୍ପାଦନର ସାଧନ ନଥିବା ସମଗ୍ର ପୁରାତନ ଯୁଗରେ ଅନନ୍ୟ ଚିତ୍ତରେ ସାରସ୍ୱତ ସାଧନା ଲିପ୍ତ ଶିଳ୍ପୀ ଓ କଳାକାରମାନଙ୍କୁ ଜୀବିକା ନିର୍ବାହ ପାଇଁ ଅନ୍ୟ ବୃତ୍ତି ଅବଲମ୍ବନର ସୁଯୋଗ ବା ଅବକାଶ ନ ଥିବାବେଳେ ସେମାନଙ୍କୁ ଧନପତିମାନଙ୍କର ବଦାନ୍ୟତା ଉପରେ ନିର୍ଭର କରିବାକୁ ପଡୁଥିବାର ଏକ ସାଧାରଣ ପ୍ରଥାରେ ପରିଣତ ହୋଇଯାଇଥିଲା । ତେଣୁ ଏହାକୁ ନୀତିଗତ ସମର୍ଥନ ଜଣାଇ ଶାସ୍ତ୍ରକାରମାନ କହୁଥିଲେ 'ବିନାଶ୍ରୟେ ନ ବର୍ତ୍ତନ୍ତେ କବିତା ବନିତା ଲତା' । ସୁକୁମାର ଲତିକାଟିଏ, ସୁକୁମାରୀ ତରୁଣୀଟିଏ ଯେପରି ଆପଣାର ସ୍ଥିତିପାଇଁ ଅନ୍ୟର ନିର୍ଭରଶୀଳ ହୁଅନ୍ତି ସେହିପରି ସୁକୁମାର କାବ୍ୟଶିଳ୍ପ ବଞ୍ଚିରହିବା ପାଇଁ ଧନପତିମାନଙ୍କ ଦୟା ନିର୍ଭରଶୀଳତାକୁ ଏପରି ଏକ ସାଧାରଣ ସ୍ୱୀକୃତି ମିଳିଯାଇଥିଲା । କିନ୍ତୁ ନିଃସର୍ତ୍ତ ପୃଷ୍ଠପୋଷକତା ପ୍ରଦାନ କରିବାର ମହାନୁଭବ ଗ୍ରାହକତା ମିଳିବା କାବ୍ୟଶିଳ୍ପୀର ସୌଭାଗ୍ୟ ସାପେକ୍ଷ ମାତ୍ର ଥିଲା । ଯେତେବେଳେ ରାଜାନୁଗ୍ରହ ଲାଭ ଆଶାରେ ଗ୍ରାହକତାର ସନ୍ଧାନକରି ଦୀନକୃଷ୍ଣଙ୍କ ପରି ଜଣେ ଦୁଃସ୍ଥ ଦରିଦ୍ର କାବ୍ୟଶିଳ୍ପୀ ସୁଦୂର ଜଳେଶ୍ୱର ଅଂଚଳର ଅଖ୍ୟାତ ମୁରୁଣିଆ ଗ୍ରାମରୁ ଦୀର୍ଘ ଦୁର୍ଗମ ଯାତ୍ରା ଆରମ୍ଭକରି ଲକ୍ଷେ ରାଜାର ମଉଡ଼ମଣି ଓଡ଼ିଶାର ଗଜପତି ରାଜାଙ୍କଠାରେ ନିଜର କାବ୍ୟ ଶିଳ୍ପର ଉତ୍କର୍ଷ ନିବେଦନ କରିଥିଲେ ସେତେବେଳେ

ଚାଟୁଜୀବୀ ପଣ୍ଡିତମାନଙ୍କର ଅସୂୟାର ଶିକାର ହୋଇଥିବାର ଅନୁଭବ କରି ପାରିଥିଲେ ଏହି ସୁଚତୁର କବି । ତେଣୁ ବିକ୍ଷୁବ୍ଧ ଚିତ୍ତରେ କବି ପ୍ରସଙ୍ଗକ୍ରମେ ମଧ ଉଲ୍ଲେଖ କରିଦେଲେ,

> ''କହେ ଯେଉଁ ପଣ୍ଡିତ ସଭାରେ ପକ୍ଷପାତ ପ୍ରଭୁ ଆଜ୍ଞାକୁ ଅନୁସରି ।
> କରେ ତହିଁକି ପ୍ରତେ ଯଉଁ ନୃପତି ଚିତ୍ତେ ସେହିଟି ଅବିବେକ ପୂରି ହେ ।

ସମାଜ ଭିତରେ ଜଣେ ବ୍ୟକ୍ତି ଯେତେ ଦରିଦ୍ର, ଧନହୀନ, ପ୍ରତିଷ୍ଠାହୀନ, ପ୍ରତିପତ୍ତିହୀନ ଯଶକୀର୍ତ୍ତିରୁ ବଞ୍ଚିତ ଅଖ୍ୟାତ ଅପାଂକ୍ତେୟ ହେଲେ ମଧ ସେ ଯେ ଜଣେ ମଣିଷ ଓ ମଣିଷ ଭାବରେ ସମ୍ମାନର ସହିତ ବଂଚିବାର ତା'ର ଅଧିକାର ଅଛି ଏକଥା ସେ ଯୁଗରେ କୋଟି କୋଟି ଲୋକ ଅନୁଭବ କରିପାରୁ ନଥିବା ବେଳେ ଏହି ଅକିଞ୍ଚନ କବିଙ୍କର ଏପରି ତୀବ୍ର ବ୍ୟକ୍ତି-ସମ୍ମାନ ସଚେତନତା ତାଙ୍କୁ ଜଣେ ପୃଥକ ଅନମନୀୟ ଜୀବନ୍ତ ବ୍ୟକ୍ତିତ୍ୱ ଭାବରେ ଉଦ୍ଭାସିତ କରାଇଦିଏ । ତାହା ବ୍ୟତୀତ ସେ ଥିଲେ ଜଣେ ଶାସ୍ତ୍ରଜ୍ଞ, ପଣ୍ଡିତ, ତତ୍ତ୍ୱଜ୍ଞାନୀ ଓ ସର୍ଜନଶୀଳ ପ୍ରତିଭାର ଅଧିକାରୀ । ତାଙ୍କ ମଧରେ ଚିରଜାଗ୍ରତ ରହିଥିବା ଶକ୍ତିଶାଳୀ ସ୍ରଷ୍ଟା ପୁରୁଷକୁ ସେ କଦାପି ଅପମାନିତ କରିବାକୁ ଦେଇ ନଥିଲେ । ସମାଜରେ ଜଣେ କବି ଭାବରେ ସ୍ୱତନ୍ତ୍ର ସମ୍ମାନ ପାଇଁ ତାଙ୍କର ରହିଛି ବିଧିଦତ୍ତ ଅଧିକାର । ତେଣୁ ଚାଟୁକାର ପଣ୍ଡିତ ଓ ଚାଟୁ-ଭୋକ୍ତା ନୃପତିଙ୍କୁ ଏକାଧାରେ ଏପରି ସୂକ୍ଷ୍ମ ବ୍ୟଙ୍ଗ ବିଦ୍ରୂପ ଦ୍ୱାରା ସେମାନଙ୍କର ମର୍ମଦହନ କରାଇବା ଦ୍ୱାରା ସେ ରାଜରୋଷକୁ ତ୍ୱରାନ୍ୱିତ କରାଇଥିବା ସମ୍ଭବପର । ପରିଣାମରେ ରାଜଦଣ୍ଡରେ ଦଣ୍ଡିତ ହୋଇଥିବାର ବିବରଣୀକୁ ଅସ୍ୱୀକାର କରାଯାଇ ନ ପାରେ । କାରଣ ତାଙ୍କର ଗୋଟିଏ ସ୍ୱକୀୟ ନୀତିଥିଲା,

> ''କଣ୍ଠାଗ୍ରତ ପ୍ରାଣ ହେଲେ ହେଁ ବଡ଼ ଲୋକ
> କେତେବେଳେ ସେ ନ ଛାଡ଼ଇ ନିଜ ଟେକ,'' ***(ର.କ. ୪ର୍ଥ ଛାନ୍ଦ)***

ଅନ୍ୟ ଗୋଟିଏ ତାଙ୍କ କାବ୍ୟାଦର୍ଶର ଅଙ୍ଗୀଭୂତ ତତ୍ତ୍ୱଥିଲା,

> ''କବି ହୋଇ କରୁଥିବ ନିର୍ମଳ କବିତ୍ୱ,
> କର୍ଣ୍ଣଦେଇ ଶୁଣୁଥିବ ରସିକ ପଣ୍ଡିତ ।''

ଅକୃତ୍ରିମ ନିର୍ମଳ କବିତ୍ୱ ସ୍ଫୂର୍ତ୍ତିରେ ଯେ ଥିଲେ ଆତ୍ମବିଭୋର, ସେ ତାଙ୍କର ଏହି କବିତ୍ୱ ଶକ୍ତିର ଅପମାନ ଓ ଅବମାନନାକୁ ସହ୍ୟ କରିନେବାକୁ କଦାପି ସମର୍ଥ ହୋଇ ପାରନ୍ତେ ନାହିଁ । ତାଙ୍କର ପ୍ରାଣ କଣ୍ଠାଗ୍ରତ ହେଲେ ମଧ ରାଜାଙ୍କର ଏହି ସସର୍ତ୍ତ ଆଦେଶକୁ ଉପେକ୍ଷା କରି ଅକୃତ୍ରିମ 'ବଡ଼ଲୋକ' ଭାବରେ 'ନିଜ ଟେକ'କୁ ରକ୍ଷା କରିବାକୁ ଯାଇ କାରାଦଣ୍ଡକୁ ମଧ ଗ୍ରହଣ କରିନେଇଛନ୍ତି । ତଥାପି ରାଜା ବା ତାଙ୍କର ଚାଟୁକାରମାନେ ମହତ ହେଲେ ହେଁ ପରିସ୍ଥିତିର ଦୁର୍ବଳତାରେ ତାଙ୍କ ପ୍ରତି ଏପରି

କ୍ରୁର ଆଚରଣ କରିଥିଲେ ବୋଲି ଯେତେବେଳେ ତାଙ୍କର ହୃଦ୍‌ବୋଧ ହୋଇଥିଲା ସେତେବେଳେ ସେ ସେମାନଙ୍କୁ ଦାୟୀ ନକରି ବରଂ ତାଙ୍କ ପ୍ରତି ବିଧିବିଧାନର କୁଟିଳତାକୁ ହିଁ ଦାୟୀ କରି ଲେଖିଛନ୍ତି;

''କର୍କଶ ବେଣୁସ୍ୱନ କଦଳୀ ଆଦି ଫଳ
ବେଳକୁ ନାଶକୁ ଭଜନ୍ତି,
କୁଟିଳ ହେଲେ ବିହି ମହତ ପଣ୍ଡିତ ହିଁ
ବିବେକପଣକୁ ତେଜନ୍ତି ହେ, କୃପାନିଧି,
କାଳ ଘୋଟଇ ଯେତେବେଳେ
କାହାର କୃତ୍ୟ ତେତେବେଳେ ।।''

ପୁନଶ୍ଚ

''କର୍ମ ଫାଟିଲାବେଳେ କଳ୍ପତରୁ ନ ଫଳେ
ସବୁ ତୁମ୍ଭ ଭିଆଣ ସିନା ହେ, ଇତ୍ୟାଦି ।

କବି ଦୀନକୃଷ୍ଣ ଯେଉଁ ରାଜା ଓ ତାଙ୍କର ପାରିଷଦମାନଙ୍କର ଅନ୍ୟାୟ ଚକ୍ରାନ୍ତ ବିଷୟରେ ଉଲ୍ଲେଖ କରିଛନ୍ତି ସେ ରାଜା ଥିଲେ ତତ୍କାଳୀନ ଗଜପତି ପ୍ରଥମ ଦିବ୍ୟସିଂହ ଦେବ । କାରଣ ସେହି ରାଜାଙ୍କର ସପ୍ତଦଶ ଅଙ୍କରେ ସେ ନିଜର ନାମରତ୍ନ ଗୀତା ଶେଷ କରିଥିଲେ ବୋଲି ଉକ୍ତ ଗ୍ରନ୍ଥରେ ଲେଖିଛନ୍ତି;

''ଯେଉଁ କାଳେ ସପ୍ତଦଶ ଅଙ୍କ ହେବ ଜାଣ
ଯୁଧିଷ୍ଠିର ସମ ଥିବେ ଦିବ୍ୟସିଂହ ରାଣ,
ମୋହ ନାମ ରତ୍ନଗୀତା ହୋଇବ ପ୍ରକାଶ
ଦୀନକୃଷ୍ଣ ବୋଲେ ଏହା ଭାଳି ପୀତବାସ ।''

ଦିବ୍ୟସିଂହ ଦେବଙ୍କର ସପ୍ତଦଶ ଅଙ୍କ ଖ୍ରୀଷ୍ଟାବ୍ଦ ୧୭୦୨ ସୁଦ୍ଧା ପଡୁଥିବାରୁ ଦୀନକୃଷ୍ଣଙ୍କର ଆବିର୍ଭାବ ୧୬୫୦ ଖ୍ରୀ.ଅ. ସୁଦ୍ଧା ହୋଇଥିବାର ଅନୁମିତ ହୁଏ । ଓଡ଼ିଶାରେ ଦୀର୍ଘ ଦିନର ଅରାଜକତା ଓ ରାଜନୈତିକ ଅସ୍ଥିରତା ପରେ ଏହି ଦିବ୍ୟସିଂହ ଦେବଙ୍କ ସମୟରେ କିଛି ପରିମାଣରେ ଶାନ୍ତି ପ୍ରତିଷ୍ଠା ହୋଇଥିବାରୁ ଏହି ସମୟରେ ଓଡ଼ିଶାରେ ବହୁ କବିଙ୍କର କାବ୍ୟ ରଚନା ପାଇଁ ଅନୁକୂଳ ପରିସ୍ଥିତି ସୃଷ୍ଟି ହୋଇଥିଲା । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ମଧ୍ୟ ଏହି ଦିବ୍ୟସିଂହ ଦେବଙ୍କର ୨୭ ଅଙ୍କ ବା ଖ୍ରୀ.ଅ. ୧୬୯୮ ସୁଦ୍ଧା ତାଙ୍କର ରସଲେଖା କାବ୍ୟ ସମାପ୍ତ କରିଥିଲେ ବୋଲି ଉକ୍ତ ଗ୍ରନ୍ଥର ଶେଷ ଭାଗରେ ଉଲ୍ଲେଖ କରନ୍ତି । ଦିବ୍ୟସିଂହ ଦେବ କବିବତ୍ସଳ ଓ ସାହିତ୍ୟ ସଂସ୍କୃତି ପ୍ରେମୀ ନରପତି ଭାବରେ ସମ୍ମାନିତ ହେଲେ ମଧ୍ୟ ଶାସନତନ୍ତ୍ରର ନୈତିକ ଅଧୋଗତି ରାଜା ପ୍ରତାପରୁଦ୍ର ଦେବଙ୍କ ସମୟରୁ କ୍ଷିପ୍ରତର ହୋଇଯାଇଥିଲା । ଶାସକମାନଙ୍କର

ଦୁର୍ବଳତା ଓ ରାଜନୈତିକ ଅସ୍ଥିରତା ଓ ଅନ୍ୟ ନିର୍ଭରଶୀଳତାର ସୁଯୋଗ ନେଇ ହୀନମ୍ମନ୍ୟ ଚାଟୁକାର ଗୋଷ୍ଠୀଙ୍କ ପ୍ରଭାବ ବୃଦ୍ଧି ପାଇବା ସ୍ୱାଭାବିକ । ତେଣୁ ଗଜପତି ଦିବ୍ୟସିଂହ ଦେବ ଏପରି ଚାଟୁକାରମାନଙ୍କର ପ୍ରଭାବକୁ ପ୍ରତିରୋଧ କରି ନପାରି କବି ଦୀନକୃଷ୍ଣଙ୍କ ପ୍ରତି ଅନ୍ୟାୟ ଅବିଚାର ଦ୍ୱାରା ଅପମାନିତ କରିଥିବାର ବିବରଣୀମାନ ବିଶ୍ୱାସଯୋଗ୍ୟ ମନେହୁଏ । ତଥାପି ମହାନୁଭବ କବି ଆପଣାର ଉଦାରତା ଗୁଣରେ ରାଜାଙ୍କୁ ଦୋଷ ନ ଦେଇ ନିଜର ଭାଗ୍ୟକୁ ହିଁ ନିନ୍ଦା କରିଛନ୍ତି । ଅପର ପକ୍ଷରେ ମହାନୁଭବ ରାଜା ମଧ୍ୟ ଆପଣାର ଅବିଚାର ଓ ଅନ୍ୟାୟ କର୍ମ ପାଇଁ ଅନୁଶୋଚନା କରି କବିଙ୍କୁ କାରାମୁକ୍ତ କରାଇ ତାଙ୍କୁ ଆର୍ଥିକ ସହାୟତା ସହିତ ସମ୍ମାନିତ କରାଇଥିଲେ ବୋଲି 'ଦାର୍ଢ୍ୟତାଭକ୍ତି' ଗ୍ରନ୍ଥର ବିବରଣୀରୁ ଜଣାଯାଏ ।

ସମଗ୍ର ପୁରାତନ ଓ ମଧ୍ୟଯୁଗୀୟ ଶାସନ ଓ ସମାଜ ବ୍ୟବସ୍ଥାକୁ ବେଳେବେଳେ ମୁଷ୍ଟିମେୟ ସୁବିଧାବାଦୀ ଚାଟୁକାର ଗୋଷ୍ଠୀର ପରସ୍ପର ହିଂସା, ଅସୂୟା, ଅସହିଷ୍ଣୁତା, ହୀନମନ୍ୟତାଜନିତ ଷଡ଼ଯନ୍ତ୍ର ଓ କୁଟିଳ କପଟତା ପଙ୍ଗୁ, ଦୁର୍ବଳ ଓ ରୁଗ୍ଣ କରିଦେଇଥିଲା, ସେତେବେଳେ ଦୀନ ଦୁର୍ବଳ ଜଣେ ସାମାନ୍ୟ କାବ୍ୟଶିଳ୍ପୀ ଯେ ନିର୍ଭୀକ ଭାବରେ ରାଜଦଣ୍ଡର ସମସ୍ତ କଷଣକୁ ଅଙ୍ଗୀକାର କରିନେଇ ଏହାର ତୀବ୍ର ସମାଲୋଚନା କରିବାକୁ ଅପରିମିତ ଦୁଃସାହସର ସହିତ ଅଗ୍ରସର ହୋଇ ପାରିଥିଲେ ତାହା ହେଉଛି ତାଙ୍କର ସ୍ୱାଭିମାନୀ ସାରସ୍ୱତ ବ୍ୟକ୍ତିତ୍ୱର ଅକୃତ୍ରିମ ଅନାବୃତ ସ୍ୱରୂପ । ସ୍ଥିତିସ୍ଥାପକତାଶୀଳ ସଂକୋଚନ ପ୍ରବଣ ସମାଜରେ ଦୀନକୃଷ୍ଣଙ୍କର ଏହି ବିଦ୍ରୋହ ଓ କାରାଦଣ୍ଡ ଘଟଣାରେ ତାଙ୍କୁ ଲୋକେ ନିର୍ବୋଧ ଓ ଅଦୂରଦର୍ଶୀ ମନେକରି ଘଟଣାଟିକୁ ଗୁରୁତ୍ୱହୀନ ବା ନଗନ୍ୟ ଜ୍ଞାନକରି ଭୁଲିଯାଇଥିବେ, କିନ୍ତୁ ସମାଜର କ୍ରମବିକାଶ ଓ ପ୍ରବହମାନତା ପାଇଁ ପ୍ରଚଣ୍ଡ ଜୀବନୀଶକ୍ତିକୁ ଉଦ୍ଦୀପିତ କରାଇ ଦେବାକୁ ଏହି ଘଟଣାର ମାର୍ମିକ ସ୍ପନ୍ଦନର ଅବଦାନକୁ କଦାପି ଅସ୍ୱୀକାର କରାଯାଇ ନପାରେ । ଓଡ଼ିଶାର ସମାଜ ଯେ ପଙ୍ଗୁ, ଗତିହୀନ, ସ୍ଥାଣୁ ରକ୍ଷଣଶୀଳ ବିଧିନିଷ୍ଠ ଏକ ଅଥର୍ବ ସମାଜ ନୁହେଁ ଏବଂ ନାନା କ୍ରିୟା ପ୍ରତିକ୍ରିୟା ଭିତରେ ଏହା କ୍ରମମାର୍ଜିତ, ସଂସ୍କାରିତ ହୋଇ ମଣିଷକୁ ମେରୁଦଣ୍ଡଯୁକ୍ତ କରାଇ ସଭ୍ୟତାର ଅଭିମୁଖୀନ କରାଇବାର ଗତିଶକ୍ତି ପ୍ରଦାନ କରେ ତାହାର ଦୃଷ୍ଟାନ୍ତ ହେଉଛି ଦୀନକୃଷ୍ଣଙ୍କର ବ୍ୟକ୍ତିତ୍ୱ ସଚେତନା । ରାଜଶାସିତ ସମାଜ ଭିତରେ ବ୍ୟକ୍ତି ବିଶେଷର ଯେ ଏକ ନିଜସ୍ୱତା ଅଛି ଓ ତାହା ଯେ ଶାସନତନ୍ତ୍ରର ଉପଭୋଗ ପାଇଁ ବଳିଯୋଗ୍ୟ ନୁହେଁ, ତାହା ପ୍ରତିପାଦନ କରାଇବାକୁ ଯାଇ ରାଜାଙ୍କୁ କବି କହିଥିଲେ,

"ତୁମ୍ଭଙ୍କୁ ନାହିଁ ମୋର ଡର । ମୋ ପ୍ରଭୁ ବଳେ ବଳୀୟାର ।"

କବି ନିଜର ଯେଉଁ ବଳୀୟାର ପ୍ରଭୁଙ୍କ କଥା କହି ତାଙ୍କୁ ରାଜାଶକ୍ତି ଠାରୁ ଅଧିକ ଶକ୍ତିଶାଳୀ ବୋଲି କହନ୍ତି, ସେ ପ୍ରଭୁ ହେଉଛନ୍ତି କବିଙ୍କର ଅନ୍ତରରେ ବିଜେ

କରିଥିବା ସୃଜନଶୀଳ ଅପ୍ରାକୃତ କବିତ୍ୱ ଶକ୍ତି, ଯାହାକୁ ସର୍ବତୋଭାବେ ସମ୍ମାନିତ କରିବା ହେଉଛି ରାଜା ପ୍ରଜା ନିର୍ବିଶେଷରେ ସମସ୍ତଙ୍କର ମହାନ କର୍ତ୍ତବ୍ୟ । ସମଗ୍ର ମଧ୍ୟଯୁଗୀୟ ରୀତି ପ୍ରଧାନ ସାହିତ୍ୟ ପରଂପରା ଭିତରେ କବି ଦୀନକୃଷ୍ଣଙ୍କର ଆବିର୍ଭାବ ହେଉଛି ଏକ ବ୍ୟତିକ୍ରମ ସୃଷ୍ଟି । ତାଙ୍କ ସାହିତ୍ୟ ଭିତରେ ଉତ୍କୃଷ୍ଟ କଳାକୃତି ସହିତ ଉଚ୍ଚ ମୂଲ୍ୟବୋଧର ଉଦ୍‌ବୋଧନ ମିଳିଥାଏ ।

ରାଜା ବା ବିତ୍ତଶାଳୀ ବ୍ୟକ୍ତିବିଶେଷଙ୍କର ଦୟା ଓ ଅନୁଗ୍ରହ ଲାଭକରି ବନିତା ପରି ଯେ କବିତା ବଞ୍ଚି ରହିପାରେ, ଏପରି ଏକ ଆବର୍ଜ୍ଜନାପୂର୍ଣ୍ଣ ବିଶ୍ୱାସ ମୂଳରେ କୁଠାରଘାତ କଲେ କବି ଦୀନକୃଷ୍ଣ । ସାହିତ୍ୟ ଯେ କେବଳ ସଂସ୍କୃତ ଭାଷାରେ ରଚିତ ହେଲେ ସାହିତ୍ୟ ପଦବାଚ୍ୟ ହୁଏ ଏବଂ ଦେଶୀୟ ପ୍ରାକୃତ ବା ଲୋକ ଭାଷାରେ ରଚିତ ହେଲେ ତାହା ସାହିତ୍ୟ ପଦବାଚ୍ୟ ହୁଏ ନାହିଁ ଏପରି ଏକ ବିଶ୍ୱାସର ମୋହରେ ପଡ଼ି ଏ ଦେଶର ବହୁ ବିଜ୍ଞ ପ୍ରତିଭାଶାଳୀ ଲୋକେ ବିକାଶୋନ୍ମୁଖୀ ପ୍ରାକୃତ ଭାଷାମାନଙ୍କର ସାହିତ୍ୟ ସୃଷ୍ଟିକୁ ବ୍ୟଙ୍ଗ ବିଦ୍ରୂପ କରି ଯେ ଅନ୍ତରାୟ ସୃଷ୍ଟି କରୁଥିଲେ ତାହା ନୁହେଁ, ସଂସ୍କୃତ ସାହିତ୍ୟର ଶକ୍ତିଶାଳୀ ପ୍ରବାହକୁ ମଧ ପ୍ରତିରୋଧ କରି ଦେଉଥିଲେ । ସଂସ୍କୃତ ସାହିତ୍ୟକୁ ସର୍ବଶ୍ରେଷ୍ଠ ଓ ସଂସ୍କୃତ ଭାଷାକୁ ସର୍ବଶକ୍ତିଶାଳୀ ବୋଲି ପ୍ରତିପାଦନ କରି ତା'ର ସଂରକ୍ଷକ ଓ ପ୍ରତିନିଧି ଭାବରେ ଆତ୍ମସନ୍ତୋଷ ମଧରେ ନିମଜ୍ଜିତ ରହି ଆସିଥିବା ଏହି ବିଦ୍ୱାନ୍‌ଗଣ ପରଂପରା କ୍ରମେ ଏକ ସ୍ଥାଣୁ ଗୋଷ୍ଠୀରେ ପରିଣତ ହୋଇଯାଇଥିଲେ । ଏପରି ଅନ୍ଧବିଶ୍ୱାସ ଓ ତା'ର ପୃଷ୍ଠପୋଷକମାନଙ୍କ ବିରୁଦ୍ଧରେ ସଂଗ୍ରାମ କରିବାର ଦୁଃସାହସ କରିଥିଲେ କବି ଶାରଳା ଦାସ, ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ ଓ ଭୂପତି ପଣ୍ଡିତ ପ୍ରମୁଖ ପ୍ରାକୃତ ଓଡ଼ିଆ ଭାଷାର କବିପୁଙ୍ଗବଗଣ । ଦୀନକୃଷ୍ଣଙ୍କୁ ଏଥିରୁ ପ୍ରେରଣା ଓ ସାହସ ମିଳିଥିଲା । ସେ ଆଉ ପାଦେ ଅଗ୍ରସର ହୋଇଯାଇ କ୍ଷମତାର ଉତ୍ତୁଙ୍ଗସ୍ତରରେ ରହି ଆସ୍ଫାଳନ କରୁଥିବା ଗୋଷ୍ଠୀଙ୍କର ଚକ୍ରାନ୍ତର ଆହ୍ୱାନ ଶୁଣିପାରିଥିଲେ । ତହିଁରେ ଭରି ରହିଥିବା ହୀନମନ୍ୟତା ଓ ଦୁର୍ବଳତାକୁ ଅଭ୍ରାନ୍ତ ଭାବେ କଳନା କରି ପାରିଥିଲେ । ତେଣୁ ସେହି ଆହ୍ୱାନ-ଆସ୍ଫାଳନର ସଫଳ ସମ୍ମୁଖୀନ ହୋଇ ଶେଷରେ ବିଜୟଶ୍ରୀ ମଣ୍ଡିତ ହୋଇଥିଲେ ।

ସଂସ୍କୃତ କାବ୍ୟ କବିତାମାନଙ୍କର ସର୍ବଶ୍ରେଷ୍ଠତା ସମ୍ବନ୍ଧରେ ଉଚ୍ଚ ପ୍ରଶଂସାମାନ ଶୁଣି ଶୁଣି ଅନୁରୂପ ଶୈଳୀ ଓ ରୀତିରେ କାବ୍ୟ ନିର୍ମାଣ କରିବାର ଏକ ମୋହ ଓଡ଼ିଆ ଭାଷାର ସମର୍ଥ ସ୍ରଷ୍ଟାମାନଙ୍କୁ ମଧ ଆଚ୍ଛାଦନ କରି ଦେଇଥିଲା । ତେଣୁ ମଙ୍ଗଳାଚରଣ, ଅଳଙ୍କରଣ, ବାଗାଡ଼ମ୍ବର, ନଖଶିଖ ବର୍ଣ୍ଣନା, ଚରିତ୍ର ଚିତ୍ରଣ, ଶୃଙ୍ଗାରୀକରଣ ଦ୍ୱାରା ଓଡ଼ିଆ ସାହିତ୍ୟକୁ ସଂସ୍କୃତ କାବ୍ୟ ସାହିତ୍ୟର ସମକକ୍ଷ କରିବାର ଯେଉଁ ବିପୁଳ ଉତ୍ସାହ ସୃଷ୍ଟି ହୋଇଥିଲା ତାହା ମଧ ଏହି ହୀନମନ୍ୟତା ବ୍ୟାଧିରୁ ସଂଜାତ ଏକ ପ୍ରତିକ୍ରିୟା ବ୍ୟତୀତ ଅନ୍ୟ କିଛି ନୁହେଁ । କ୍ରିୟା ପ୍ରତିକ୍ରିୟାର ସଂଘର୍ଷ ଭିତର ଦେଇ ସାହିତ୍ୟ ଓ

ସଂସ୍କୃତି ହୁଅନ୍ତି ଗତିଶୀଳ । କିନ୍ତୁ ଜୀର୍ଣ୍ଣଶୀର୍ଣ୍ଣ ହର୍ମ୍ୟର ସୁଦୃଢ଼ ପ୍ରସ୍ତରଖଣ୍ଡକୁ ନେଇ ନୂତନ କଳ୍ପନାରେ ନୂତନ ଏକ ଆକର୍ଷଣୀୟ ପ୍ରାସାଦର ଅଭ୍ରାନ୍ତ ଚିତ୍ର ଅଂକନ କରି ତଦନୁରୂପ ନୂତନ ମନ୍ଦିର ବା ଅଟ୍ଟାଳିକା ନିର୍ମାଣ କରିବାର ସୁଗଭୀର ଆତ୍ମବିଶ୍ୱାସ ଓ ବଳିଷ୍ଠ ପ୍ରେରଣାରେ ଉଦ୍‌ବୁଦ୍ଧ ନ ହେଲେ ନୂତନ ଶିଳ୍ପ ସୃଷ୍ଟିଟି କେବଳ ଏକ ଅନୁକୃତିରେ ପରିଣତ ହୋଇଯାଏ । ରୀତିଯୁଗର ସ୍ରଷ୍ଟାମାନେ ଦକ୍ଷବିନ୍ଧାଣୀ ଥିଲେ, ଶକ୍ତିଶାଳୀ ସ୍ରଷ୍ଟା ମଧ ଥିଲେ । କିନ୍ତୁ ସଂସ୍କୃତ ସାହିତ୍ୟ ଯେ ସର୍ବୋତ୍କୃଷ୍ଟ ଏବଂ ଦେଶୀୟ ଭାଷା ଯେ ଉତ୍କୃଷ୍ଟ ସାହିତ୍ୟ ସୃଷ୍ଟି ପାଇଁ ଅନୁପଯୁକ୍ତ ଏପରି ଗତାନୁଗତିକ ଉଦ୍‌ଘୋଷଣମାନ ଉପର ସ୍ତରରୁ ଶୁଣି ଶୁଣି ସେମାନଙ୍କର ସୁକୁମାର ଶିଳ୍ପ ମାନସକୁ ଯେଉଁ ହୀନମନ୍ୟତା ଗ୍ରାସ କରି ଯାଇଥିଲା ତାହା ଫଳରେ ସେମାନେ କେବଳ ପ୍ରତିକ୍ରିୟାଶୀଳ ହୋଇ ନିର୍ମାଣ କଲେ 'ନୈଷଧୀୟ ଚରିତ' ଅଥବା 'ରଘୁବଂଶ' ପରି କାବ୍ୟମାନଙ୍କର ଅନୁକୃତି ମାତ୍ର । ଏହି ଅନୁକୃତି ସୃଷ୍ଟିର ବିଫଳ ପ୍ରୟାସ ଓଡ଼ିଆ ଭାଷାରେ ସୃଷ୍ଟିକଲା ରାମବିଭା, ରୁକ୍ମିଣୀବିଭା, ଉଷାହରଣ, ବୈଦେହୀଶ ବିଳାସ ଅଥବା କଳ୍ପଲତା, ପ୍ରେମଲୋଚନା, ଇଚ୍ଛାବତୀ, ପରିମଳା, କାଞ୍ଚନଲତା, ଶଶୀସେଣା, ହାରାବତୀ, ଲୀଳାବତୀ, ମଦାଳସା, ତ୍ରିପୁରାସୁନ୍ଦରୀ, ରତ୍ନମଞ୍ଜରୀ, ଅନଙ୍ଗରେଖା, ମଦନମଞ୍ଜରୀ, କନକଲତା, ପ୍ରଭାବତୀ, ପ୍ରେମମଞ୍ଜରୀ, ଚିତ୍ରଲେଖା, ରସଲେଖା, ସୁବର୍ଣ୍ଣରେଖା, ଲାବଣ୍ୟବତୀ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଇତ୍ୟାଦି ବହୁ ସଂଖ୍ୟକ ପୌରାଣିକ କାବ୍ୟ ଓ ସଂଖ୍ୟାତୀତ କାଳ୍ପନିକ କାବ୍ୟ । ବାହ୍ୟ ଶବ୍ଦଶିଳ୍ପରେ କାବ୍ୟକୁ ଆକର୍ଷଣୀୟ କରାଇବାର ପ୍ରବୃତ୍ତି ସହିତ କାବ୍ୟକୁ ଶୃଙ୍ଗାର ସର୍ବସ୍ୱ କରାଇବାର ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ ହୋଇଥିଲା । ପରିଣାମରେ କାବ୍ୟଗୁଡ଼ିକ ହୋଇଗଲେ ସୀମାବଦ୍ଧ କ୍ଷୁଦ୍ର କ୍ଷୁଦ୍ର ରାଜସଭାମାନଙ୍କର ଉପଭୋଗ୍ୟ ବସ୍ତୁ, ବିଳାସର ସାମଗ୍ରୀ । ସାହିତ୍ୟ ଏହିପରି କ୍ରମେ ଦୁର୍ବୋଧ ହୋଇଉଠି ଲୋକସାଧାରଣଙ୍କ ଠାରୁ ଦୂରେଇ ଯାଉଥିବା ବେଳେ, ଲୋକଶିକ୍ଷା ପାଇଁ ବହୁ ଗ୍ରନ୍ଥ ରଚନା କରି ସାରିବା ପରେ ଏକ ସର୍ବସାଧାରଣ ଗ୍ରହଣଯୋଗ୍ୟ ଲୋକାଭିମୁଖୀ କାବ୍ୟରଚନାର ଉଦ୍ୟମ କଲେ କବି ଦୀନକୃଷ୍ଣ । କାବ୍ୟଟି ଅଳଙ୍କାର ଯୁକ୍ତ ହେଲେ ମଧ ଦିବ୍ୟ-ଅଦିବ୍ୟ ଭାଷାର ସମ୍ମିଶ୍ରଣରେ ରଚିତ । ଶୃଙ୍ଗାର ରସ ଏଥିରେ ମଧୁର ରସ ଭାବରେ ପ୍ରାବଲ୍ୟ ଲାଭ କରିଥିଲେ ମଧ, ବାତ୍ସଲ୍ୟ, ବୀର, କରୁଣ, ବୀଭତ୍ସ ଓ ଶାନ୍ତରସାଦି ଏଥିରେ ସମାନୁପାତିକ ଭାବରେ ସମାବିଷ୍ଟ । କଥା ଭାଗଟିରେ ନାୟକ ନାୟିକା ରାଜକୁମାର ରାଜକୁମାରୀ ନ ହୋଇ ସର୍ବଲୋକ ସୁପରିଚିତ କୃଷ୍ଣ-ଗୋପିକାଙ୍କ ବିରହ ମିଳନ କାହାଣୀକୁ ଆଧାର କରି ପରିକଳ୍ପିତ । ସର୍ବୋପରି ରସିକ କବି ଦୀନକୃଷ୍ଣଙ୍କର ଉକ୍ତି ଚାତୁର୍ଯ୍ୟ ବେଳେ ବେଳେ ହାସ୍ୟ-କୌତୁକ ରସର ଉଦ୍ଦୀପକ । ଭାଷା ଶିଳ୍ପରେ ଅଯତ୍ନ ସମ୍ଭୂତ ଅତୁଳନୀୟ କମନୀୟତା ତାଙ୍କର ସ୍ୱଭାବ କବିତ୍ୱକୁ ଉନ୍ମୋଚିତ କରାଇ ଦେଇ ଏହି କଳାକୃତିକୁ ଓଡ଼ିଶାର ଜନସାଧାରଣଙ୍କର ପ୍ରିୟ ଓ ଆଦରଣୀୟ କରି ଦେଇଥାଏ । ଓଡ଼ିଶାର ରୀତି ସାହିତ୍ୟକୁ ଭେଦିବା ପାଇଁ ଓ ଲୋକେ

ବୁଝିବା ପାଇଁ ସତେ ଯେପରି ରସକଲ୍ଲୋଳ କେତେକଙ୍କୁ ସକ୍ଷମ କରାଇ ପାରିଥିଲା । ଦରବାରୀ କାବ୍ୟ ସାହିତ୍ୟ ଓ ଜନସାଧାରଣଙ୍କର ସୁବୋଧ ଗୀତି ସାହିତ୍ୟର ସମନ୍ୱୟ ସେତୁ ରୂପେ ରଚିତ 'ରସକଲ୍ଲୋଳ' ଉଭୟ ସୁଧୀ-ସୁଜ୍ଞ ଓ ସାଧାରଣ ଜନତାଠାରେ ଆଦୃତ ହେଲା । କାବ୍ୟର ଭାଷାଶୈଳିକ ବୈଚିତ୍ର୍ୟ ଓ କୃତ୍ରିମ ଅଳଙ୍କରଣକୁ ଉପେକ୍ଷା କରି ସେ କାବ୍ୟର ଅନ୍ତସ୍ୱରରେ ଯେଉଁ ପ୍ରୀତିର କଥା କହନ୍ତି ତାହା କୃଷ୍ଣ କଥାରେ ସାଧାରଣ ହେଲେ ମଧ୍ୟ ତହିଁରେ ରହିଛି ବୃହତ୍ତର ଜୀବନାନୁଭୂତି ଓ ଜୀବନାନୁରାଗର ପ୍ରତିଛବି । ଏହି ପ୍ରୀତି କେବଳ ଦାମ୍ପତ୍ୟ ପ୍ରୀତି ମାତ୍ର ନୁହେଁ, ଏହା ଭିତରେ ରହିଛି ବାତ୍ସଲ୍ୟପ୍ରୀତି, ସଖାପ୍ରୀତି, ଦାସପ୍ରୀତି, କାନ୍ତାପ୍ରୀତି, ପ୍ରଭୁପ୍ରୀତି ଓ ସର୍ବୋପରି ଈଶ୍ୱରପ୍ରୀତି ।

ଦୀନକୃଷ୍ଣଙ୍କ ସମଗ୍ର ସାହିତ୍ୟ ସୃଷ୍ଟିର ବହୁଳାଂଶ ଲୋକଶିକ୍ଷାର ମାଧ୍ୟମ ଭାବେ ଉପାଦେୟ । ଅଜ୍ଞାନ, ଅବିବେକମାନଙ୍କୁ ଜ୍ଞାନ ଓ ବିବେଚନା ଦେବା ପାଇଁ ଗ୍ରନ୍ଥ ରଚନା କରୁଥିବା ବେଳେ ସହଜ ସରଳ ରୀତିରେ ନାନା ନୀତି ଉପଦେଶ ଦେଇଛନ୍ତି । କିନ୍ତୁ କୃତ୍ରିମତା ଓ କପଟତା ଆଚରଣ କରି ଛଦ୍ମ ରୂପରେ ଯେଉଁମାନେ ସମାଜରେ ପ୍ରଭାବ ବିସ୍ତାର କରି ସାଧାରଣ ନିରୀହ ମୂକ ଜନତାକୁ ଶୋଷଣ କରିବାର ନାନା କୌଶଳ ଅବଲମ୍ବନ କରିଥାନ୍ତି ସେମାନଙ୍କ ମୁଖା ଖୋଲିଦେଇ ସେମାନଙ୍କର ପ୍ରକୃତ ହିଂସ୍ର ରୂପକୁ ଉନ୍ମୋଚିତ କରାଇଦେବାର ସାହସ ପ୍ରଦର୍ଶନ କରନ୍ତି କବି ଦୀନକୃଷ୍ଣ । ସନ୍ଥ କବୀରଙ୍କ ପରି ସେ ସେହି ଧୂର୍ତ୍ତ କପଟୀ ଶୋଷକମାନଙ୍କୁ ପ୍ରତ୍ୟକ୍ଷ ବ୍ୟଙ୍ଗ ବିଦ୍ରୂପରେ କ୍ଷତବିକ୍ଷତ କରି ଦେବାକୁ ଆଦୌ ପଶ୍ଚାଦ୍‌ପଦ ହୋଇ ନାହାନ୍ତି । କର୍ମକାଣ୍ଡ ସର୍ବସ୍ୱ ପୁରୋହିତ-ବ୍ରାହ୍ମଣ, ଦର୍ପୀ ଅହଂକାରୀ କ୍ଷତ୍ରୀୟ, ଲାଙ୍ଗଟାପିନ୍ଧା ଲଙ୍ଗୁଳୀ ହଠଯୋଗୀ, ତୀର୍ଥ ପର୍ଯ୍ୟଟକ ସାଧୁ ଓ ନୀତି ନିୟମ ବିହୀନ ଗୃହୀ ପ୍ରଭୃତି ସମାଜର ଯେକୌଣସି ସ୍ତରର ଲୋକଙ୍କୁ ସେମାନଙ୍କର ମାନବିକତା ବିହୀନ ନିଷ୍ଫଳ ଆସ୍ଫାଳନ ଓ ଆତ୍ମମ୍ଭରିତା ପ୍ରଦର୍ଶନକୁ କବି ଦୀନକୃଷ୍ଣ ହିଁ ନିର୍ଭୀକ ଭାବେ ଆକ୍ରମଣ କରିଛନ୍ତି । ସମଗ୍ର ମଧ୍ୟଯୁଗୀୟ ଭୀରୁତା ଓ ଚାଟୁକାରୀ କବିତ୍ୱର କୋଳାହଳ ମଧ୍ୟରେ କବି ଦୀନକୃଷ୍ଣ ହିଁ ଏକମାତ୍ର ଅନମନୀୟ ନିର୍ଭୀକ ବିଦ୍ରୋହୀ ବ୍ୟକ୍ତିତ୍ୱ, ଯାହାଙ୍କର ବିଦ୍ରୋହର ସ୍ୱର ପରବର୍ତ୍ତୀ କେତେ କବିଙ୍କ କବିତାରେ ପ୍ରତିଧ୍ୱନିତ ହୋଇଛି । ଗଣମାଧ୍ୟମ ବିହୀନ ଯୁଗରେ ବିଳମ୍ବିତ ହେଲେ ମଧ୍ୟ ସାଧାରଣ ଜନତା ଭିତରେ ଏହା ଚମକ ସୃଷ୍ଟି କରିଛି, ଆଲୋଡ଼ନ ସୃଷ୍ଟି କରି ପାରିଛି । ଏପରିକି ଆପଣାର ଇଷ୍ଟ ଦେବତା ଜଗନ୍ନାଥଙ୍କର ସ୍ତୁତି ଛାନ୍ଦରେ ଶାଣିତ ବ୍ୟଙ୍ଗ ଓ ଯୁକ୍ତି ବଳରେ ତାଙ୍କୁ ଦେବତା ଆସନରୁ ଆଣି ନିଜର ଆତ୍ମୀୟ ସାମନ୍ତ ବା ପ୍ରଭୁ ହିସାବରେ ଠିଆ କରାଇ ଗୋଟିଏ ଗୋଟିଏ ପ୍ରଶ୍ନର ଯଥାର୍ଥ ଉତ୍ତର ଦାବୀ କରିଛନ୍ତି । ଲୋକ ପ୍ରସିଦ୍ଧି ଓ ଶାସ୍ତ୍ର ପ୍ରସିଦ୍ଧି ଅନୁସାରେ ଯେଉଁ ଦେବତା କରି, ମୃଗୁଣୀ, ଦ୍ରୌପଦୀ ପ୍ରଭୃତିଙ୍କର ଆର୍ତ୍ତ ବିଳାପ ମୁହୂର୍ତ୍ତମାତ୍ରେ ଶୁଣିପାରି ସେମାନଙ୍କୁ ସଂକଟରୁ

ମୁକ୍ତ କରି ପାରିଥିଲେ, ଏବେ ଏତେ ନିକଟରେ କବି ବ୍ୟାକୁଳ ପ୍ରାର୍ଥନା କରୁଥିଲେ ମଧ୍ୟ ସେହି ଦେବତା ନିଜ କର୍ଣ୍ଣ ଗହ୍ୱରକୁ ଅବରୁଦ୍ଧ କରି ଦେଲେ କାହିଁକି ? ବୋଧହୁଏ ସେମାନଙ୍କର ସଂକଟ ଅପେକ୍ଷା କବିଙ୍କର ବିପଦକୁ ଅଧିକ ଗୁରୁତର ଜ୍ଞାନରେ ସେହି ପ୍ରଭୁ ଭୟଭୀତ ହୋଇ ଯାଇଛନ୍ତି କି ? କବି ପଚାରନ୍ତି;

"ଟିକାଏ ବିଳମ୍ବିତ ନକରି ପଣ୍ଡୁସୁତ
ଯୋଷିତ ସଂକଟୁ ତାରିଲ
ଟେକ ଦୁଃସହ ଘୋରଦାରିଦ୍ର୍ୟ ସୁଦାମାର
ଦର୍ଶନ ମାତ୍ରକେ ହରିଲ, ହେ ମହାପ୍ରଭୁ
ଟେକି କରୁଣା କଟାକ୍ଷରେ,
ଟିକିଏ ବିଲୋକିଲେ ମୋରେ,
ଟଳିବ କି ମହିମା ସଂସାର ସୁଖସୀମା
ଏମନ୍ତ ବିଚାର ମନରେ ହେ, ମହାପ୍ରଭୁ ।"

ଏପରି ବହୁ କମନୀୟ ପଂକ୍ତି ମାଧ୍ୟମରେ କବି ଜଗନ୍ନାଥଙ୍କୁ ମଧୁର ଭର୍ତ୍ସନା କରି ତାଙ୍କ ବିରୁଦ୍ଧରେ ନାନା ଅଭିଯୋଗ ଆଗତ କରି ଠାକୁରଙ୍କ ଠାରୁ ଉପଯୁକ୍ତ ଉତ୍ତର ଆଶା କରିଛନ୍ତି । ଇଷ୍ଟ ଦେବତାଙ୍କ ପ୍ରତି ଏପରି ଅଶ୍ରୁତପୂର୍ବ ବ୍ୟଙ୍ଗ, ଛଳୋକ୍ତି ଓ ଦୋଷାରୋପ ଭିତରେ ମୃଦୁ ଭର୍ତ୍ସନାର ସ୍ୱର ଓଡ଼ିଆ ସାହିତ୍ୟରେ ଅନବଦ୍ୟ । ଏପରି ନିଜର ଆର୍ତ୍ତକରୁଣ ଶରଣାଗତିର ସ୍ୱର ଭିତରେ ଫୁଟି ଉଠିଛି ତାଙ୍କର ଭକ୍ତି ସାଧନରେ ଗଭୀର ଆତ୍ମପ୍ରତ୍ୟୟ ଓ ଦେବତାଙ୍କର ନିକଟତମ ସାନ୍ନିଧ । ଦୀନକୃଷ୍ଣଙ୍କର କବିତାର ଏହି ସ୍ୱର କବିସୂର୍ଯ୍ୟ ବଳଦେବ ଓ ଯଦୁମଣିଙ୍କର ଜଣାଣମାନଙ୍କରେ ପ୍ରତିଧ୍ୱନିତ । କିନ୍ତୁ ଆର୍ତ୍ତତ୍ରାଣ ଚଉତିଶାର ସାବଲୀଳତା ଓ ଲାଳିତ୍ୟ ହେଉଛି ଅନନ୍ୟ ।

ସମଗ୍ର ମଧ୍ୟଯୁଗୀୟ କାବ୍ୟରଚନା ଧାରାରେ କେବଳ ଦୀନକୃଷ୍ଣଙ୍କର କାବ୍ୟ କବିତାମାନଙ୍କରେ ପ୍ରତିଫଳିତ ହୋଇଛି ଲୋକଜୀବନର ଶୋକ କଷଣର ଚିତ୍ର । କୁଟୁମ୍ବୀ ଦୀନଜନ, ଅକ୍ଳାନ୍ତ କ୍ଳେଶ ସହିଷ୍ଣୁ କୃଷିକାର, ଋଣକାରୀ ଦରିଦ୍ର ଜନ, କୃପଣ ସାମନ୍ତାଶ୍ରୟୀ ଲୋଭୀ ସେବକ, ଶୀତ ପୀଡ଼ିତ ନିର୍ବସ୍ତ୍ର ଦୀନ ଦରିଦ୍ର ବ୍ୟକ୍ତି ପ୍ରଭୃତିଙ୍କର ମନଗହନର ଅସୀମ ଯନ୍ତ୍ରଣା ସମ୍ବନ୍ଧରେ କବି ଥିଲେ ପୂର୍ଣ୍ଣ ଅନୁଭବୀ । ତେଣୁ ନାନା ପ୍ରସଙ୍ଗରେ ସେମାନେ କାବ୍ୟ କବିତାମାନଙ୍କରେ ଉଭା ହୋଇ ପାଠକର ଚିତ୍ତକୁ କ୍ଷଣକ ପାଇଁ ଅନ୍ତତଃ ଆଲୋଡ଼ିତ କରାଇ ଦେଇଥାନ୍ତି । ଏପରି ମାନବୀୟ ସଂବେଦନା ଓ ପ୍ରୀତିର ସ୍ୱର ଦୀନକୃଷ୍ଣଙ୍କର ପ୍ରାୟ ସବୁ ରଚନାମାନଙ୍କରେ ପ୍ରତିଧ୍ୱନିତ, ଯାହାକି ଦୀନକୃଷ୍ଣଙ୍କୁ ସ୍ୱତନ୍ତ୍ର ଜଣେ ଦୀନଦଳିତର ଅନୁରକ୍ତ କବି ଭାବରେ ଚିହ୍ନିତ କରାଇଦିଏ ।



ଦ୍ୱିତୀୟ ପରିଚ୍ଛେଦ

# ପରିଚୟ ଓ କବିକର୍ମର ପ୍ରଧାନ ଆଭିମୁଖ୍ୟ

ରସକଲ୍ଲୋଳ କାବ୍ୟର କବି ଭାବରେ ସେ ବିଦଗ୍ଧ ମହଲରେ ସୁପରିଚିତ ହେଲେ ମଧ୍ୟ 'ରସବିନୋଦ', 'ନାମରତ୍ନ ଗୀତା' ପ୍ରଭୃତି ତାଙ୍କର ବହୁଗ୍ରନ୍ଥ ଓଡ଼ିଶାର ସାଧାରଣ ଜନତାଙ୍କ ମଧ୍ୟରେ ବହୁଳ ପ୍ରଚାରିତ । ଗତ ଶତାବ୍ଦୀରେ ଆନୁଷ୍ଠାନିକ ସ୍କୁଲ ଶିକ୍ଷା ପ୍ରଚଳିତ ହେବା ପର୍ଯ୍ୟନ୍ତ ସାଧାରଣ ଚାଟଶାଳୀମାନଙ୍କରେ ନାମରତ୍ନଗୀତା, ପ୍ରସ୍ତାବ ସିନ୍ଧୁ, କୃଷ୍ଣ ଦାସ ବୋଲୀ, ରସବିନୋଦ, ଧର୍ମସାଗର, ଗୁଣ ସାଗର ପ୍ରଭୃତି ଗ୍ରନ୍ଥ ଗୁଡ଼ିକ ପାଠ୍ୟପୁସ୍ତକ ରୂପେ ବ୍ୟବହୃତ ହୋଇ ବିଦ୍ୟାର୍ଥୀମାନଙ୍କର ପଠନ ଶକ୍ତି ଅଭିବୃଦ୍ଧିରେ ସହାୟକ ହେବା ସହିତ ନୈତିକ ଶିକ୍ଷା ଲାଭରେ ମଧ୍ୟ ଅତ୍ୟନ୍ତ ଉପଯୋଗୀ ବିବେଚିତ ହେଉଥିଲା । ଏପରି ବହୁ ଗ୍ରନ୍ଥର ରଚୟିତା ଦୀନକୃଷ୍ଣଙ୍କ ରାଜାଦେଶ ଅବମାନନା ସମ୍ବନ୍ଧରେ କବି ରାମଦାସଙ୍କ 'ଦାର୍ଢ୍ୟତା ଭକ୍ତି'ରୁ କେତେକ ସୂଚନା ମିଳୁଥିଲେ ମଧ୍ୟ ତାଙ୍କର ପୂର୍ଣ୍ଣାଙ୍ଗ ଜୀବନୀ ସମ୍ବନ୍ଧରେ ଅନ୍ୟ କୌଣସି ତଥ୍ୟ ମିଳେ ନାହିଁ । ତଥାପି 'ରସବିନୋଦ'ରୁ ଜଣାଯାଏ ଯେ ତାଙ୍କର ପୂର୍ବପୁରୁଷ ସୁବର୍ଣ୍ଣ ରେଖା ନଦୀ ତୀରସ୍ଥ ଜଳେଶ୍ୱର ସମୀପବର୍ତ୍ତୀ ମୁତ୍ରୁଣିଆ ଗ୍ରାମରେ ବାସ କରୁଥିଲେ ଓ ସେ ଥିଲେ ଜାତିରେ ରାଜପୁତ କ୍ଷତ୍ରିୟ । ତାଙ୍କର ପିତାଙ୍କ ନାମଥିଲା ମଧୁସୂଦନ । ପରିବାରର ଲୋକେ କୃଷିଜୀବୀ ଥିଲେ ଓ କେହି କେହି ବ୍ୟବସାୟାଦି ମଧ୍ୟ କରୁଥିଲେ । ତତ୍କାଳୀନ ଓଡ଼ିଶାରେ ସେମାନଙ୍କର ଆର୍ଥିକ ଅବସ୍ଥା ଆଦୌ ସ୍ୱଚ୍ଛଳ ନଥିଲା । କବିଙ୍କର କୃଷି କର୍ମାଦି ପ୍ରତି ଆଗ୍ରହ ନଥିବାରୁ ସେ ପରିବାର ପୋଷଣାଦି କରିବାରେ ସକ୍ଷମ ହୋଇପାରୁ ନଥିଲେ । ଜଗନ୍ନାଥଙ୍କ ଅନୁଗ୍ରହରୁ ପଦରଚନା କରିବାର ଶକ୍ତିଲାଭ କରି ସେ ବିଶେଷ ଆତ୍ମସନ୍ତୋଷ ଲାଭ କରୁଥିଲେ । ତେଣୁ ଜ୍ଞାତିମାନଙ୍କୁ ଛାଡ଼ି ସେ ନିଜର ଇଷ୍ଟ ଦେବତାଙ୍କ ଦର୍ଶନାଭିଳାଷରେ ଶ୍ରୀକ୍ଷେତ୍ର ପୁରୁଷୋତ୍ତମକୁ ଚାଲିଆସିଥିଲେ । ତେଣୁ ସେ ଜଗନ୍ନାଥଙ୍କର ଏହି ଅନୁଗ୍ରହ ପାଇଁ କୃତଜ୍ଞତା ପ୍ରକାଶ କରି ଲେଖିଛନ୍ତି;

''ହୃଦରେ ଅନୁରାଗ କଲେ । ଦକ୍ଷିଣ ଦିଗକୁ ଆଣିଲେ ।।
ଦେଖିଲି ଓଡ଼ରାଷ୍ଟ୍ର ଦେଶ । ଓଡ଼ିଶା ଭୂମିରେ ପ୍ରବେଶ ।।
ଦେଖିଲି ଶ୍ରୀ ପୁରୁଷୋତ୍ତମ । କ୍ଷେତ୍ରମାନଙ୍କ ଯେ ଉତ୍ତମ ।।''

ସେ ପୁରୀ ଅବସ୍ଥାନ କାଳରେ ସମ୍ଭବତଃ 'ଜଗମୋହନଛାନ୍ଦ' ରଚନା କରି ଶ୍ରୀକ୍ଷେତ୍ରର ଯାନିଯାତ୍ରା ଉତ୍ସବାଦିର ଛନ୍ଦୋବଦ୍ଧ ବର୍ଣ୍ଣନା କରିଥିଲେ । କିନ୍ତୁ

'ରସବିନୋଦ' ରଚନା ବେଳେ ସେ ବ୍ରାହ୍ମଣୀ ନଦୀ କୂଳସ୍ଥ ଏକଘରିଆ ଗ୍ରାମରେ ବାସ କରୁଥିବାର ଉଲ୍ଲେଖ କରନ୍ତି । କିପରି ପରିସ୍ଥିତିରେ ସେ ଶ୍ରୀକ୍ଷେତ୍ରରୁ ପୁଣି ଏକଘରିଆ ଗ୍ରାମକୁ ଯାଇ ବାସ କଲେ ତାହାର କୌଣସି ଆଭାସ ନାହିଁ । ପୁରୀର ଗଜପତି ରାଜା ଦିବ୍ୟସିଂହ ଦେବଙ୍କ ଆଦେଶ ଅବମାନନା ହେତୁ ସେ କାରାବାସ ଭୋଗ କରିଥିଲେ ମଧ୍ୟ ପରେ ସମ୍ମାନିତ ହୋଇଥିବା ବିଷୟକୁ ସେ କୁତ୍ରାପି ପ୍ରକାଶ କରି ନାହାନ୍ତି । ତେଣୁ ରାଜାଙ୍କ ଦ୍ୱାରା ଶ୍ରୀକ୍ଷେତ୍ରରୁ ବିତାଡ଼ିତ ହୋଇ ଏକଘରିଆ ଗ୍ରାମକୁ ଯାଇଥିବା କଥା ବିଶ୍ୱାସଯୋଗ୍ୟ ମନେ ହୁଏ ନାହିଁ । ବରଂ ରାଜାମାନଙ୍କର ଚାଟୁ ଓ ସ୍ତାବକତା କରି ସେମାନଙ୍କର ଅନୁଗ୍ରହରେ ବଞ୍ଚିରହିବାକୁ ତାଙ୍କର ଅନ୍ତରର ସହଜାତ ଘୃଣା ହେତୁ ସେ ପୁରୀ ତ୍ୟାଗକରି ଅନ୍ୟତ୍ର ବାସ କରିବାକୁ ଶ୍ରେୟସ୍କର ମନେକରିଥିଲେ । ଏଣୁ ବ୍ରାହ୍ମଣୀ କୂଳସ୍ଥ ଏକଘରିଆ ଗ୍ରାମରେ ରହି ସେ ରଚନା କରିଥିଲେ 'ରସବିନୋଦ' ଗ୍ରନ୍ଥ । ତଥାପି ଶ୍ରୀକ୍ଷେତ୍ର ବାସ ଓ ସତ୍‌ସଙ୍ଗ ଲାଭ ପାଇଁ ତାଙ୍କର ପ୍ରବଳ ଆଗ୍ରହ ସତ୍ତ୍ୱେ ସେ ସେହି ସ୍ଥାନରେ ରହି ନପାରି ଥିବା ହେତୁ ମନରେ ପ୍ରବଳ ଗ୍ଲାନି ଓ ଅସନ୍ତୋଷ ଅନୁଭବ କରିଥିଲେ । 'ରସକଲ୍ଲୋଳ' ପରି ଲଳିତ କାବ୍ୟରେ ମଧ୍ୟ ତାଙ୍କର ଏହି ଅସନ୍ତୋଷ ପ୍ରତିଫଳିତ ହୋଇ ଉଠିଛି;

''କରିଥିଲା ଆଶ ଶ୍ରୀକ୍ଷେତ୍ରେ ନିବାସ କରିବାକୁ ଦୀନକୃଷ୍ଣ
କି ଅଭାଗ୍ୟୁଁ ତହିଁ ନପାରିଲା ରହି ପ୍ରଭୁ ନୋହିଲେ ସତୃଷ୍ଣ ।
x x x x
କଣ୍ଠରେ ଭୂଷଣ କରି ତାଙ୍କ ଗୁଣ ଗାଉଥାଇ ନାମମାନ,
କୃପଣ ଗୁଆଁର କୁବୁଦ୍ଧିକି ଜ୍ଞାନ ମାଗି ପାଉଥାଇ ମାନ ।
କରେ ଚିନ୍ତାମଣି ପାଇକରି ଆଣି ନ ରିହଲା ମୋର କିଛି,
କରଇ ବିଚାର କେତେବେଳେ ଛାର ଜୀବନ କାହିଁକି ଅଛି ।
କୃଷ୍ଣ ଆଶ୍ରେକରି ସୁବିଦ୍ୟା ଆଚାରି ପାଷାଣ୍ଡକୁ ଯାହାସ୍ତୁତି
କୃଷ୍ଣ ଦାସ କହେ କିଛି ଭଲ ନୋହେ କେବଳ ଛାତିକି କାତି ।

*(ର.କ. ୨୦/୨୭-୩୦ ପଦ)*

ଆପଣାର ଉଦରପୋଷଣ ଓ ଜୀବନ ନିର୍ବାହ ପାଇଁ ତାଙ୍କର ଏହି କବିକର୍ମ ମାତ୍ର ଆଦୌ ସହାୟତା କରି ପାରି ନଥିବାରୁ ତାଙ୍କୁ ବୋଧହୁଏ ବାରମ୍ବାର ଅନନ୍ୟୋପାୟ ହୋଇ ନାସ୍ତିକ ଧନପତିମାନଙ୍କଠାରେ ସାହାଯ୍ୟ ଭିକ୍ଷା କରିବାକୁ ପଡୁଥିଲା, ଯାହାକି ଥିଲା ସଂପୂର୍ଣ୍ଣ ରୂପେ ତାଙ୍କର ନିଜର ବିବେକ ଓ ଅନ୍ତରସ୍ଥ କବିପୁରୁଷ ପ୍ରତି ଘୋର ଅବମାନନା । ତେଣୁ ନିଜର ଦାରିଦ୍ର୍ୟ ପାଇଁ ଓ ଏହି ଅନିଚ୍ଛାକୃତ ତୋଷାମଦ-ଖୋସାମଦ୍ ପାଇଁ ସେ ନିଜକୁ ବାରମ୍ବାର ଧିକ୍କାର କରି ଲେଖିଛନ୍ତି,

''କିମ୍ବା ଛାଡ଼ନ୍ତି ଭକତି ବାଟ            ଆନନ୍ଦ ହୋଇ କରନ୍ତି ନାଟ
ଏବେ ଅନେକ ରୂପ କଲାଣି ଏ ପୋଡ଼ା ପେଟ ଯେ,
କବି ଯା କରେ ମୂର୍ଖଙ୍କୁ ସ୍ତୁତି,            ଏଥିରୁ ବଡ଼ ନାହିଁ ବିପତ୍ତି
ଏଥିକି ପ୍ରତି ଛାତିରେ କାତି ମାରିବା ଭଲ ଯେ ।''

(ର.କ. ୧୬ଶ ଛାନ୍ଦ)

କୁଟୁମ୍ବ ପୋଷଣ ପାଇଁ ସ୍ୱରଚିତ କୃଷ୍ଣଗାଥାମୂଳକ ଗ୍ରନ୍ଥ ଓ କବିତାମାନ ଗାନ କରି ଧନୀ ଲୋକଙ୍କ ଠାରୁ ସାହାଯ୍ୟ ଭିକ୍ଷା କରୁଥିବା ବିଷୟ ମଧ୍ୟ ରାମଦାସ ଉଲ୍ଲେଖ କରି କହନ୍ତି,

''ଶ୍ରୀକୃଷ୍ଣ ଜନ୍ମକର୍ମଗୁଣ । ସେ ସବୁ କରଇ ବଖାଣ,
x            x            x            x
କେବଳ ଏହି କଥାମାନ । ପ୍ରବନ୍ଧେ କରିଣ ଗାୟନ,
ମାଗେ ଉତ୍ତମ ଜନ ଠାରେ । ନିଜ କୁଟୁମ୍ବ ପୋଷିବାରେ ।।''

ଏପରି କବିତା ରଚନା ଓ ଆବୃତ୍ତିର ନିଶାରେ ପଡ଼ି ସମସ୍ତ ଲୌକିକ ବୃତ୍ତିକୁ ଉପେକ୍ଷା କରି କୁଟୁମ୍ବ ପୋଷଣର ଗୁରୁଭାର ସମ୍ଭାଳିବାର ଏକ ଦୁଃସାହସ କରିଥିଲେ ସେହି ସୁଗ୍ରାହକତା ବିହୀନ ଯୁଗରେ ଦରିଦ୍ର କବି ଦୀନକୃଷ୍ଣ । ତେଣୁ ନାନା ଲୋକଙ୍କ ଦ୍ୱାରସ୍ଥ ହୋଇ ବାରମ୍ବାର ରିକ୍ତହସ୍ତରେ ନିରାଶ ଓ ଅପମାନିତ ଅନୁଭବ କରି ଫେରିଥିବାର ଓ ଉପବାସରେ କାଳାତିପାତ କରି ଥିବାର ଦୁଃସହ ଦାରୁଣ ଅନୁଭୂତିରୁ ହିଁ ସୃଷ୍ଟି ହୋଇଛି ଏହିସବୁ ଆତ୍ମଧିକ୍କାରମୂଳକ ସ୍ୱଗତୋକ୍ତି ସମ୍ବଳିତ ସ୍ୱତଃସ୍ଫୂର୍ତ୍ତ ପଂକ୍ତି ନିଚୟ । ସ୍ୱଭାବତଃ ଦୀନକୃଷ୍ଣ ଥିଲେ ଭକ୍ତକବି । ଇଷ୍ଟ ଦେବତା ଜଗନ୍ନାଥଙ୍କ ମହିମା ଗାନକରି ଗ୍ରନ୍ଥ ଲେଖିବାକୁ ସେ ବୃତ୍ତି ହିସାବରେ ଗ୍ରହଣ କରି ନେଇଥିବା ବେଳେ କବି ଯଶ ପାଇଁ ଲାଳସା ପୋଷଣ ଆଦୌ କରି ନାହାନ୍ତି । ଏକାଦିକ୍ରମେ କବିତା, ଛାନ୍ଦ ଓ ଶାସ୍ତ୍ରଭିତ୍ତିକ ଗ୍ରନ୍ଥ ରଚନାରେ ଅଭିନିବିଷ୍ଟ ରହିଥିବା ବେଳେ 'ରସକଲ୍ଲୋଳ' ପରି ଏକ ଉତ୍କୃଷ୍ଟ କାବ୍ୟ ତାଙ୍କ ଲେଖନୀରୁ ସୃଷ୍ଟି ହୋଇ ତାଙ୍କୁ କାବ୍ୟଯୁଗରେ ଜଣେ ସଫଳ ପଥିକୃତ ସ୍ରଷ୍ଟା ଭାବରେ ଠିଆ କରିଦେଲା । ବିଶେଷତଃ କୃଷ୍ଣ ଗୋପିକା ମଧୁର ଲୀଳା ସମ୍ବଳିତ ବ୍ରଜରସର କବି ହିସାବରେ ଓଡ଼ିଆ ସାହିତ୍ୟରେ ସେ ସର୍ବ ବରିଷ୍ଠ ଆସନର ଅଧିକାରୀ । ତାଙ୍କରି 'ରସକଲ୍ଲୋଳ' ପ୍ରଭାବରେ ଉପେନ୍ଦ୍ର ଭଞ୍ଜ ରଚନା କଲେ ଆଦ୍ୟପ୍ରାନ୍ତ 'କ' ଅକ୍ଷର ବିଶିଷ୍ଟ କାବ୍ୟ 'କଳାକଉତୁକ' । ଅନୁପ୍ରାଣିତ ହୋଇ ମଧ୍ୟ ରଚନା କଲେ 'ଛାନ୍ଦଭୂଷଣ' କାବ୍ୟ ଓ ଅନ୍ୟାନ୍ୟ କବିତା । ଭୂପତି ପଣ୍ଡିତ ଲେଖିଲେ 'ପ୍ରେମ ପଞ୍ଚାମୃତ' । ଦାଶରଥି ଦାସ ଲେଖିଲେ 'ବ୍ରଜ ବିହାର' । କୃପାସିନ୍ଧୁ ପଟ୍ଟନାୟକ ରଚନା କଲେ ଅନ୍ୟ ଗୋଟିଏ 'ବ୍ରଜ ବିହାର' । ମନ୍ଦରଧର ଭାଗୀରଥି ଲେଖିଲେ 'ରାଧାବିଳାସ' । ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ରଚନା କଲେ 'ଯୁଗଳ

ରସାମୃତ ଲହରୀ', 'ଯୁଗଳ ରସାମୃତ ଭଉଁରୀ', 'ଚୌର ଚିନ୍ତାମଣି' ପ୍ରଭୃତି । ଅଭିମନ୍ୟୁ ସାମନ୍ତ ସିଂହାର ରଚନା କଲେ 'ବିଦଗ୍ଧ ଚିନ୍ତାମଣି' । କବିସୂର୍ଯ୍ୟ ବଳଦେବ ରଚନା କଲେ 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ' ଇତ୍ୟାଦି । ଓଡ଼ିଶାର କୃଷ୍ଣଭକ୍ତି କାବ୍ୟ ପରଂପରାରେ ବହୁ ସଂଖ୍ୟକ କାବ୍ୟ ରଚିତ ହୋଇଥିଲେ ହେଁ 'ରସକଲ୍ଲୋଳ'ର କାବ୍ୟଗୌରବ ଓ ଶିଳ୍ପ ସୌରଭ ଅନତିକ୍ରାନ୍ତ । ଶାସ୍ତ୍ରମାନଙ୍କ ଆଧାରରେ ଗ୍ରନ୍ଥରଚନା କରୁଥିବା ଜଣେ କାବ୍ୟ ଶିଳ୍ପୀର ସହଜ କବିତ୍ୱ ନିଜସ୍ୱ ଏକ ମୌଳିକତାର ସାକ୍ଷର ବହନ କରି ଏହି କାବ୍ୟ ଗ୍ରନ୍ଥରେ ହେଲା ସହସ୍ର ବିଭାରେ ଅଭିବ୍ୟକ୍ତ । ଗୋଟିଏ ମାତ୍ର ଗୀତିକାବ୍ୟ ଜୟଦେବଙ୍କୁ ବିଶ୍ୱବିଶ୍ରୁତ କରି ଦେବାପରି ବହୁ ଗ୍ରନ୍ଥ ରଚନା କରିଥିଲେ ମଧ କେବଳ 'ରସକଲ୍ଲୋଳ' ହିଁ ଦୀନକୃଷ୍ଣଙ୍କୁ ଯଶସ୍ୱୀ ସ୍ରଷ୍ଟାର ଗୌରବ ଦେଲା । ଭାଷାତତ୍ତ୍ୱବିଦ୍ ଜନ୍ ବୀମ୍ସ ଓଡ଼ିଶାର କମିସନର ଥିବାବେଳେ ଏହି ମହାକାବ୍ୟର ଲଳିତ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତା'ର କେତେକାଂଶ ଇଂରେଜୀରେ ଅନୁବାଦ ସହିତ 'ଇଣ୍ଡିଆନ ଆଣ୍ଟିକ୍ୱେରୀ' ପତ୍ରିକାରେ ୧୮୭୨ ସାଲର ଦୁଇଗୋଟି ସଂଖ୍ୟାରେ ବିସ୍ତୃତ ଆଲୋଚନା ପ୍ରକାଶ କରିଥିଲେ । ସେହିବର୍ଷ ଉଇଲିୟମ ହଣ୍ଟର ମଧ ଇଂରେଜୀ ଭାଷାରେ ରଚିତ ତାଙ୍କର 'ଓଡ଼ିଶା ଇତିହାସ' ଗ୍ରନ୍ଥର କବି ତାଲିକାରେ ଦୀନକୃଷ୍ଣଙ୍କୁ ଓଡ଼ିଶାର ସର୍ବାଧିକ ଲୋକପ୍ରିୟ କବି ବୋଲି ଉଲ୍ଲେଖ କରିଥିଲେ । ପାଶ୍ଚାତ୍ୟ ପରଂପରାର ପ୍ରଭାବରେ ଏ ଦେଶର କବି ଓ ସେମାନଙ୍କର କାବ୍ୟ କବିତାଦି ସମ୍ବନ୍ଧରେ ବିବିଧ ଆଲୋଚନା ଧାରାର ସୂତ୍ରପାତ ହୋଇ କବିମାନଙ୍କର ଉତ୍କର୍ଷ ପ୍ରତିପାଦନ କରାଯାଉ ଅଛି । କିନ୍ତୁ ଦୀନକୃଷ୍ଣଙ୍କ ଯୁଗରେ କେବଳ ସାମାଜିକମାନଙ୍କ ଦ୍ୱାରା ଲୋକ ସମାଜରେ ପଠନ ପାଠନ ବା ଗାୟନ ପାରାୟଣ ହୋଇପାରିଲେ କବି ନିଜର ଶ୍ରମକୁ ସାର୍ଥକ ଜ୍ଞାନ କରୁଥିଲେ । ତାହାଛଡ଼ା ଗ୍ରନ୍ଥ ରଚନାକୁ ଜୀବନ ଧାରଣର ଏକମାତ୍ର ବୃତ୍ତି ବା ଜୀବିକା ଭାବରେ ଗ୍ରହଣ କରିଥିବା ଦୀନକୃଷ୍ଣଙ୍କ ପାଇଁ ତାଙ୍କର କାବ୍ୟର ପ୍ରଶସ୍ତି ଅପେକ୍ଷା ବରଂ ସାମାନ୍ୟ କିଞ୍ଚିତ୍ ପାରିତୋଷିକ ମାତ୍ର ଥିଲା ଯଥେଷ୍ଟ । ଏହା ହିଁ ଥିଲା ଏହି ମହାନ ସ୍ରଷ୍ଟାଙ୍କ ପାଇଁ ଭାଗ୍ୟର ଚରମ ବିଡ଼ମ୍ବନା, ଯଦିଓ ମୁଦ୍ରାଯନ୍ତ୍ର ଆସିବା ପରେ ଓଡ଼ିଶାରେ କେବଳ ତାଙ୍କ 'ରସକଲ୍ଲୋଳ' ପ୍ରକାଶ ପାଇଛି ପ୍ରାୟ ଅର୍ଦ୍ଧଶତାଧିକ ସଂସ୍କରଣରେ ।

ରସବିନୋଦ ରଚନା କାଳକୁ କବି ଯେଉଁ ସବୁ ଗ୍ରନ୍ଥମାନ ରଚନା କରି ସାରିଥିବାର ଉଲ୍ଲେଖ କରନ୍ତି ସେ ସବୁର ତାଲିକା ନିମ୍ନମତେ ପଠନ କରାଯାଇ ପାରେ ।

| | | | |
|---|---|---|---|
| ୧ ) | ଗୁଣସାଗର | ୪ ) | ସଂସାର ବୋଧକ ବୋଲୀ |
| ୨ ) | ଭାବସମୁଦ୍ର | ୫ ) | ଅମୃତସାଗର (ବୋଲୀ) |
| ୩) | ଭୂତକେଳି | ୬) | ମୁକ୍ତିସାଗର |

୭) କଳିଯୁଗ
୮) ପ୍ରସ୍ତାବସିନ୍ଧୁ
୯) ତତ୍ତ୍ୱସାଗର
୧୦) ଜଗମୋହନ ଛାନ୍ଦ
୧୧) ଜାୟବତୀ ବିଭା
୧୨) ବୃନ୍ଦାବନ ରାସଙ୍କ ବିଭା
୧୩) ଜ୍ଞାନ ସାଗର
୧୪) କଂସବିଭା
୧୫) ଧର୍ମ ସାଗର
୧୬) ପାଞ୍ଚପାଟ ବଂଶୀ ବିଭା
୧୭) ଦରିଦ୍ର ଦାମୋଦର ଦ୍ୱିଜ
୧୮) ନାମରତ୍ନଗୀତା
୧୯) ଜ୍ଞାନ ଚୂଡ଼ାମଣି
୨୦) ରସ ବିନୋଦ
୨୧) ନାରକାସୁର ବଧ
୨୨) ଭକ୍ତି ସାଗର
୨୩) ସ୍ତ୍ରୀ ପୁରୁଷ ଲକ୍ଷଣ
୨୪) ମହିମା ସାଗର
୨୫) ଚଉତିଶାମାନ (ଆର୍ତ୍ତତ୍ରାଣ ଚଉତିଶା, କମଳାକାନ୍ତ ଚଉତିଶା ଇତ୍ୟାଦି)

'ରସବିନୋଦ' ପରେ ଯେତେଦୂର ମନେହୁଏ କବି ତାଙ୍କର ଅବଶିଷ୍ଟ ଗ୍ରନ୍ଥମାନ ରଚନା କରିଛନ୍ତି । କାରଣ ସେ ସବୁ ଗ୍ରନ୍ଥର ନାମ 'ରସବିନୋଦ'ରେ ମିଳି ନଥାଏ । ତାଙ୍କର ନିମ୍ନୋକ୍ତ ଗ୍ରନ୍ଥମାନଙ୍କର ମୁଦ୍ରିତ ପୁସ୍ତକ ଓ ଅମୁଦ୍ରିତ ପାଣ୍ଡୁଲିପିମାନ ଏବେ ଉପଲବ୍ଧ ହୁଏ ।

୧) ରସକଲ୍ଲୋଳ, ୨) ନାବକେଳି (ଘାଟବୋଲୀ), ୩) ଅଳଙ୍କାର ବୋଲୀ, ୪) ଶରୀର ଭେଦ ଭଜନାଦି ଗୀତିକା, ୫) ସୁଭଦ୍ରା ହରଣ କାବ୍ୟ, ୬) ବଉଦ ବ୍ରହ୍ମଗୀତା, ୭) ନାମ ବ୍ରହ୍ମଗୀତା ଇତ୍ୟାଦି ।

'ରସକଲ୍ଲୋଳ' ଗ୍ରନ୍ଥର ଶୁଦ୍ଧ ସଂକଳନ ବେଳେ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ଏହାର ମୁଖବନ୍ଧରେ ଆର୍ତ୍ତତ୍ରାଣ ଚଉତିଶା ଓ କମଳାକାନ୍ତ ଚଉତିଶାମାନଙ୍କୁ 'ରସବିନୋଦ' ରଚନାର ପରବର୍ତ୍ତୀ ରଚନା ବୋଲି ଅନୁମାନ କରନ୍ତି । କାରଣ 'ରସବିନୋଦ'ରେ ଏମାନଙ୍କର ନିର୍ଦ୍ଦିଷ୍ଟ ନାମୋଲ୍ଲେଖ ନାହିଁ । କିନ୍ତୁ ଆମର ମନେହୁଏ ଏଗୁଡ଼ିକ ଗୀତିକବିତା ଶ୍ରେଣୀର ଚଉତିଶା ହୋଇଥିବାରୁ ସେ ସ୍ଥୂଳ ଭାବରେ 'ଆବର ଚଉତିଶାମାନ' ବୋଲି ରଚନା କରିଥିବାର ଯାହା ଉଲ୍ଲେଖ କରନ୍ତି ସେହିମାନଙ୍କର ଅନ୍ତର୍ଭୁକ୍ତ ଥିଲା ଏସବୁ ରଚନା । କାବ୍ୟ ଯୁଗରେ କବିମାନେ ଶୃଙ୍ଗାର ରସପ୍ରଧାନ କାଳ୍ପନିକ କାବ୍ୟମାନ ଚିତ୍ତବିନୋଦନ ପାଇଁ ବା ମନୋରଞ୍ଜନ ଧର୍ମୀ ଉପଭୋଗ୍ୟ ସାମଗ୍ରୀ ଭାବରେ ବହୁ ଆୟାସରେ ରଚନା କରୁଥିବାବେଳେ ବସ୍ତୁତଃ ଏହାର ଉପଭୋକ୍ତା ଥିଲେ ସେ ଯୁଗର ମୁଷ୍ଟିମେୟ ରାଜନ୍ୟମଣ୍ଡଳୀ ଓ ସେମାନଙ୍କର ରାଜସଭା ମଣ୍ଡନ କରୁଥିବା ସୁଧୀ, ସୁଜନ, ଶିଷ୍ଟ କୋବିଦଗଣ । ଜନସାଧାରଣଙ୍କର ଉଚ୍ଚତର ଶିକ୍ଷାଗତ ଯୋଗ୍ୟତା ଓ ବୌଦ୍ଧିକ ସଂସ୍କାରର ଅଭାବ ହେତୁ ସେମାନଙ୍କ ପାଇଁ ଏହି ରୀତିକାଳୀନ ରସାଳ କାବ୍ୟଗୁଡ଼ିକ ଥିଲା ଦୁର୍ବୋଧ ଏବଂ ସଂପୂର୍ଣ୍ଣ ଅନୁପାଦେୟ ।

ଓଡ଼ିଶାର ସାହିତ୍ୟ ସେ ଯୁଗରେ ଗଣଜୀବନ ଠାରୁ ସୁଦୂରକୁ ଅପସୃତ ହୋଇ ଯାଇଥିବା ସ୍ୱାଭାବିକ । ତେଣୁ ଗଣଜୀବନର ଆଲେଖ୍ୟ ସେ ସାହିତ୍ୟରୁ ଆଶା କରିବା ବ୍ୟର୍ଥ ପ୍ରୟାସ ମାତ୍ର । ଯେଉଁ ଦେଶର ସାହିତ୍ୟକୁ ଶାରଳା-ପଞ୍ଚସଖା ଓ ସେମାନଙ୍କର ନିର୍ଗୁଣପନ୍ଥୀ କବିଗୋଷ୍ଠୀ ଗଣ ଜୀବନର ଏକାନ୍ତ ନିଜସ୍ୱ କରାଇ ଦେଇ ବୃହତ୍ତର ସମାଜ ପରିଧି ମଧ୍ୟକୁ ବ୍ୟାପ୍ତ କରାଇ ପାରିଥିଲେ ସେହି ଦେଶର ସାହିତ୍ୟ ଏପରି ଗଣଜୀବନ ପ୍ରତି ବିମୁଖ ହୋଇ କେବଳ ଉପଭୋଗ ପ୍ରବଣ ବିଳାସୀ ରାଜା-ସାମନ୍ତମାନଙ୍କର ଚିତ୍ତ ବିନୋଦନର ସାମଗ୍ରୀ ମାତ୍ର ଭାବରେ ରାଜସଭାର ପରିସୀମା ମଧ୍ୟରେ ଅବରୁଦ୍ଧ ହୋଇ ରହିଯିବା ଓଡ଼ିଶାର ସାଂସ୍କୃତିକ ଇତିହାସରେ ଏକ ମର୍ମନ୍ତୁଦ ଦୁରନ୍ତ ଅଧ୍ୟାୟ ବ୍ୟତୀତ ଅନ୍ୟ କିଛି ନୁହେଁ । ରାଜନୈତିକ ପରାଧୀନତାର ଅସ୍ଥିର ଯୁଗରେ ଯେତେବେଳେ ବିଧର୍ମୀମାନଙ୍କର ବାରମ୍ବାର ଆକ୍ରମଣ, ଲୁଣ୍ଠନ, ଅଗ୍ନିଦାହ, ମୂର୍ତ୍ତିମନ୍ଦିର ବିଧ୍ୱଂସ, ଗଣହତ୍ୟା, ନିର୍ମମ ଅତ୍ୟାଚାର ପ୍ରାୟ ଦୈନନ୍ଦିନତାରେ ପରିଣତ ହୋଇ ଅରାଜକତା ଜନିତ ପ୍ରବଳ ଭୟ, ଆଶଙ୍କା ଓ ଅସ୍ଥିରତା ପ୍ରାୟ ଦୀର୍ଘ ତିନିଶତ ବର୍ଷଧରି ଓଡ଼ିଆ ଜାତିକୁ ଅସମର୍ଥ, ଶକ୍ତିହୀନ, ପଙ୍ଗୁ, ଅଥର୍ବ ଓ ମୂକ-ବଧିରରେ ପରିଣତ କରି ଦେଇଥିଲା, ସେତେବେଳେ ଏ ଦେଶର ଅଙ୍ଗୁଳିମେୟ କାବ୍ୟଶିଳ୍ପୀ, କେବଳ ଅପେକ୍ଷାକୃତ ନିରାପଦରେ ଥିବା ରାଜା ବା ସାମନ୍ତମାନଙ୍କର ଉପଭୋଗର ଚାହିଦା ପୂରଣ ନିମିତ୍ତ ରୀତିଯୁଗୀୟ କାଳ୍ପନିକ ବା ପୌରାଣିକ ପ୍ରେମକାବ୍ୟମାନ ରଚନା କରିବାରେ ମନୋନିବେଶ କରିଥିଲେ । କିନ୍ତୁ ଏହି ଅନ୍ଧକାର ଯୁଗର ନିବିଡ଼ତମ ପର୍ଯ୍ୟାୟରେ କବି କର୍ମରେ ମନୋନିବେଶ କରିଥିବା ଏହି ଦରିଦ୍ର କବି ପଞ୍ଚସଖା ପ୍ରବର୍ତ୍ତିତ ସାହିତ୍ୟଧାରାକୁ ଗଣାଭିମୁଖୀ କରି ରଖିବା ପାଇଁ ସୁକଠିନ ସଂଘର୍ଷ ଜାରି ରଖିଥିଲେ । ତାଙ୍କ ରଚିତ ଏହି ଗ୍ରନ୍ଥମାନଙ୍କର ତାଲିକାରୁ ଦେଖାଯାଏ ଏଗୁଡ଼ିକ କେହି ହେଲେ ସ୍ୱପ୍ନବିଳାସୀ ଧନପତି ବା ସାମନ୍ତତନ୍ତ୍ର ପାଇଁ ଉପାଦେୟ ନୁହନ୍ତି । ଏଗୁଡ଼ିକ ସାମଗ୍ରିକ ଭାବରେ କେବଳ ଓଡ଼ିଶାର ଗଣଜୀବନର ଆବଶ୍ୟକତା ପୂର୍ତ୍ତି ପାଇଁ ଉଦ୍ଦିଷ୍ଟ । ବାହ୍ୟ ଆକ୍ରମଣକାରୀମାନଙ୍କର ଉତ୍ପୀଡ଼ନରେ ବିଭୀତ ଓ ସଂକୁଚିତ ହୋଇଯାଇଥିବା ଏକ ଆଭିଜାତ୍ୟସଂପନ୍ନ ସମାଜକୁ ନାନା ରୂଢ଼ି, କୁସଂସ୍କାର, ଅନ୍ଧବିଶ୍ୱାସ, ଭୟ ଓ ହୀନମନ୍ୟତା ଦୂରୀଭୂତ କରାଇ ସାଧାରଣ ମଣିଷକୁ ନିର୍ଭୟ, ନୀତିସଂପନ୍ନ, ସଂସ୍କାରସଂପନ୍ନ, ଅଭିରୁଚିସମ୍ପନ୍ନ ଓ ଅଧ୍ୟାତ୍ମ ସଚେତନ କରିବା ପାଇଁ ଏସବୁ ଗ୍ରନ୍ଥମାନଙ୍କର ସୃଷ୍ଟି । ଏଗୁଡ଼ିକ ଶାସ୍ତ୍ରସମ୍ମତ, ନିଗୂଢ଼ତତ୍ତ୍ୱ ଆଧାରିତ, ସଖା ସମ୍ମିତ ଓ ଚିତ୍ତାକର୍ଷକ ଗଳ୍ପ କାହାଣୀ ଭିତ୍ତିକ । ତେଣୁ ସାଧାରଣ ଶିକ୍ଷାଦାନ ସହିତ ମାର୍ଜିତ ଅଭିରୁଚି ଓ ସଂସ୍କାର ଶିକ୍ଷାଦାନ ଦ୍ୱାରା ସଭ୍ୟତାର ଅଗ୍ରଗତିରେ ଏସବୁ ସହାୟକ । ସାର୍ବଜନୀନ ମାଙ୍ଗଲ୍ୟ ଓ ସମାଜର ସାମଗ୍ରିକ ବିକାଶ ସାଧନ ଆଭିମୁଖ୍ୟ ନେଇ ଅନନ୍ୟ ଚିତ୍ତରେ କବି କର୍ମରତ ନିରଳସ ସାଧକ ଦୀନକୃଷ୍ଣ ସତେ ଯେପରି ଓଡ଼ିଶାର ତମସାଚ୍ଛନ୍ନ ରାଜନୈତିକ ସାମାଜିକ ଓ ସାଂସ୍କୃତିକ ଅଙ୍ଗନରେ ଏକମାତ୍ର ସମୁଜ୍ଜ୍ୱଳ

ଆଲୋକ ବର୍ତ୍ତିକା । ଏପରି ଜନଶିକ୍ଷାମୂଳକ ଗ୍ରନ୍ଥ ରଚନାର ଶେଷ ପର୍ଯ୍ୟାୟରେ ହୁଏତ କାବ୍ୟରସିକ ବିଦ୍ୱତ୍ ଶ୍ରେଣୀର ସ୍ପର୍ଦ୍ଧିତ ଆହ୍ୱାନର ସମ୍ମୁଖୀନ ହେବାକୁ ଯାଇ ସେ ରଚନା କରିଥିଲେ ତାଙ୍କର ଏହି ଅଳଙ୍କାର ମଣ୍ଡିତ ରୀତିକାବ୍ୟ 'ରସକଲ୍ଲୋଳ' ଯାହାପୁଣି କାଳ୍ପନିକ ନ ହୋଇ କୃଷ୍ଣୋପାଖ୍ୟାନ ମୂଳକ ଏବଂ ଏ ଦେଶର ଗଣଜୀବନର ଚିତ୍ର ସମ୍ବଳିତ, ଗଣମୁଖର କଥିତ ଭାଷା ମିଶ୍ରଣରେ ରଚିତ ଓ ଗଣ ବ୍ୟବହୃତ ସଦୁକ୍ତି-ପ୍ରବଚନରେ ଋଦ୍ଧିମନ୍ତ ।

ସଂସ୍କୃତିର ନିଜସ୍ୱ ଚକ୍ଷୁ ନାହିଁ ଅଥବା ତା'ର ଅଗ୍ରଗତି ପାଇଁ ନିଜସ୍ୱ ହସ୍ତ ପାଦ ନଥାଏ । ଯେକୌଣସି ଜାତିର ସଂସ୍କୃତି ବଞ୍ଚିରହେ ବିଚାରବନ୍ତ, ଦୂରଦ୍ରଷ୍ଟା ବୁଦ୍ଧିଜୀବୀମାନଙ୍କୁ ଆଶ୍ରାକରି । ସେମାନେ ହିଁ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇ ସଂଗ୍ରାମ କରନ୍ତି, ମୂଳ ସଂସ୍କୃତି ପ୍ରବାହକୁ ସମୃଦ୍ଧ ଓ ଜୀବନ୍ତ କରି ପ୍ରବହମାନ କରାନ୍ତି । ଆହୃତ ଉପାଦାନମାନଙ୍କୁ ଆତ୍ମୀକୃତ କରାଇ ତାହାକୁ କ୍ରମବର୍ଦ୍ଧିଷ୍ଣୁ କରାଇବାରେ ସହାୟତା କରିଥାନ୍ତି । ନୈତିକ ମୂଲ୍ୟବୋଧ ଓ ଆଧ୍ୟାତ୍ମିକ ବିଶ୍ୱାସ ହିଁ ବିଶ୍ୱରେ ବଞ୍ଚି ରହିଥିବା ସବୁ ସଂସ୍କୃତିର ମୂଳକେନ୍ଦ୍ର । ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗ ବେଳକୁ ଓଡ଼ିଶା ପରି ଏକ ବିରାଟ ହିନ୍ଦୁ ସାମ୍ରାଜ୍ୟର ଅସଂଖ୍ୟ ଦିଅଁ ଦେବତା, ମଠ, ମନ୍ଦିର ଆଦି ଅନୁଷ୍ଠାନମାନଙ୍କର ବିପୁଳ ଐଶ୍ୱର୍ଯ୍ୟ ଆଡ଼ମ୍ବର ସତ୍ତ୍ୱେ ଶକ୍ତିଶାଳୀ ଏକ ମହାନ୍ ରାଜତନ୍ତ୍ରର ଆତ୍ମମ୍ଭରିତା ମଧ୍ୟ ଦେଇ ନୈତିକତା ଓ ଆଧ୍ୟାତ୍ମିକ ବିଶ୍ୱାସର ଯେଉଁ ଅଧଃପତନ ଘଟିଥିଲା ତାହାଫଳରେ କ୍ଷମତା ପାଇଁ ଗୃହ ଯୁଦ୍ଧ, ଚକ୍ରାନ୍ତ, ବିଶ୍ୱାସ ଘାତକତା ଓ ନୃଶଂସ ହତ୍ୟାକାଣ୍ଡମାନ ଯୋଗୁଁ ଶାସନତନ୍ତ୍ର ସଂପୂର୍ଣ୍ଣ ଦୁର୍ବଳ ହୋଇ ଯାଇଥିଲା । ଏ ଯୁଗରେ ରାଜସଭାର ପଣ୍ଡିତ ବା ବିଦ୍ୱାନ ଗୋଷ୍ଠୀର ଆତ୍ମସନ୍ତୋଷ ଜନିତ ନିଷ୍କ୍ରିୟତା ଓ ଭୀରୁତା ରାଜପୁରୁଷମାନଙ୍କୁ ନିୟନ୍ତ୍ରଣାଧୀନ କରିରଖିବାକୁ ସଂପୂର୍ଣ୍ଣ ଅସମର୍ଥ ହୋଇ ଯାଇଥିଲା । ଗୁରୁ ଗୌରବ ଜ୍ଞାନର ବିଲୋପ ପରି ମୂଲ୍ୟବୋଧମାନଙ୍କର ସମସ୍ତ ମାନବିନ୍ଦୁ ଗୁଡ଼ିକ ପ୍ରାୟ ଲୋପ ପାଇ ଯାଇଥିଲେ । ଏହାର ସୁଦୂରପ୍ରସାରୀ ପ୍ରଭାବରେ ଅରାଜକତା ହେତୁ ସାମାଜିକ ସ୍ଥିତି ଦୋଦୁଲ୍ୟମାନ ହୋଇ ଯାଉଥିବାବେଳେ ପଞ୍ଚସଖାଦି ବିଜ୍ଞବନ୍ତ ସମାଜ ସୁଧାରକମାନେ ଲୋକ ସମାଜରେ ନୈତିକ ମନୋବଳ ଓ ସାମାଜିକ ଶୃଙ୍ଖଳା ରକ୍ଷା ପାଇଁ ସାହିତ୍ୟ ସୃଷ୍ଟି ସହିତ ସମାଜକୁ ରୂଢ଼ି ଓ ଅନ୍ଧବିଶ୍ୱାସ ମୁକ୍ତ କରାଇବା ଲକ୍ଷ୍ୟରେ ଜ୍ଞାନ-ଭକ୍ତିର ଉପଦେଶ ଦେବାକୁ ଗ୍ରାମେଗ୍ରାମେ ପର୍ଯ୍ୟଟନ ଆଧାରିତ ସଂସ୍କୃତିକୁ ଅନାହତ ରଖିବା ପ୍ରୟାସ କରିଥିବାବେଳେ କବି ଦୀନକୃଷ୍ଣଙ୍କ ପରି ଜଣେ ବିଶିଷ୍ଟ ଦୂରଦ୍ରଷ୍ଟାଙ୍କୁ ବୌଦ୍ଧିକ ସ୍ତରରେ ସଂଘର୍ଷ କରିବାକୁ ପଡ଼ିଥିଲା । ନିଜେ ନିକିଞ୍ଚନ ଓ ତଥାକଥିତ ଉଚ୍ଚ ଶ୍ରେଣୀସ୍ଥ ବିଦ୍ୱାନବର୍ଗଙ୍କ ଦ୍ୱାରା ଅବହେଳିତ, ଅନାଦୃତ ଓ ଅପମାନିତ ହୋଇ ମଧ୍ୟ ଉଚ୍ଚମାନର ନୈତିକ ଶିକ୍ଷାଦାନମୂଳକ ଗ୍ରନ୍ଥମାନ ରଚନା କରି ସେହି ଦ୍ରୁତ ପତନମୁଖୀ ସମାଜକୁ ଓ ତା'ର କ୍ଷୟିଷ୍ଣୁ ସାଂସ୍କୃତିକ ଧାରାକୁ ରକ୍ଷାକରିବାର ଅନ୍ତିମ ପ୍ରୟାସ କରିଥିଲେ ।

ଜନସାଧାରଣଙ୍କର ଆଧାତ୍ମିକ ବିଶ୍ୱାସକୁ ଧକ୍କାଦେଇ ଯେତେବେଳେ ବୈଦେଶିକ ବିଧର୍ମୀ ଆକ୍ରମଣକାରୀମାନଙ୍କର ପଶୁଶକ୍ତି ଏ ଦେଶରେ ପ୍ରଭାବ ବିସ୍ତାର କରୁଥିଲା ତା'ର ଏକ ଚିତ୍ରଦେଇ କବି ଦୀନକୃଷ୍ଣ ଲେଖିଛନ୍ତି,

''ଏମନ୍ତେ ଫତେଖାଁ ପଠାଣ । ଜାଣିଲା ଓଡ଼ିଶା ଭିଆଣ ।
ଖଳ ଲୋକମାନଙ୍କୁ ପେଷି । ତାହାଙ୍କୁ ବୁଝାଇଲେ ବସି ।
ଗୁପତେ କଲେ ଯେ ବିଚାର । ବୋଇଲେ ନୃପତିଙ୍କି ମାର ।
ଧନ ଭଣ୍ଡାର ଲାଞ୍ଚ ଦେଇ । ଷ୍ଥାନରେ ଭେଟାଇଲେ ନେଇ ।
ଯୁକତେ ଦନୁଜ ପଠାଣ । ଲାଞ୍ଚ ସେ ନେଲା ଅପ୍ରମାଣ ।
ପୁରୁଷୋତ୍ତମେ ରାଜା ଥିଲେ । ଅଇରି ନେଇ ଭେଟାଇଲେ ।
ତେଣୁ ସେ କୋପ ଭରେ ଆସି । ରାଜାଙ୍କୁ ପକାଇଲା ନାଶି ।
ନୀଳଚକ୍ରକୁ ଦୃଷ୍ଟି ଦେଇ । ପ୍ରାଣ ଛାଡ଼ିଲେ ନୃପ ସାଇଁ ।

x x x x

''ଧର୍ମ କଥାକୁ ମନଦେଇ । ପାପକୁ ନବିଚାର କେହି ।
ଜୀବନ ଥିବା ପରିଯନ୍ତେ । ପାପକୁ ଭୟକର ଚିତେ ।''

ଶୁଦ୍ଧ ବିଚାର ବୁଦ୍ଧିର ଅଭାବ ଓ ନୈତିକ ଅଧୋପତନ ହେତୁ ପରସ୍ପର ଅସହିଷ୍ଣୁ ଗୃହଶତ୍ରୁଗଣ କିପରି ଜାତିର ଦୀର୍ଘପୋଷିତ ସ୍ୱାଧୀନତାର ପତନ ଘଟାଇ ସୀମାହୀନ କଷଣର ଘନ ତମିସ୍ରାକୁ ନିମନ୍ତ୍ରଣ କରି ଆଣନ୍ତି; ତା'ର ପ୍ରକୃଷ୍ଟ ଦୃଷ୍ଟାନ୍ତମାନ ମିଳେ ବିରାଟ ଏକ ସାମ୍ରାଜ୍ୟକୁ ସୁସଂଗଠିତ ଓ ସୁନିୟନ୍ତ୍ରିତ କରି ବିପୁଳ ବିଭବଶାଳୀ ହୋଇ ଉଠିଥିବା ଓଡ଼ିଆ ଜାତିର ପତନକାଳୀନ ଐତିହାସିକ ଘଟଣାମାନଙ୍କରୁ । ସାମାନ୍ୟ-ଲୋକଙ୍କ ଚକ୍ରାନ୍ତ ଫଳରେ ପବିତ୍ର ବଡ଼ ଦେଉଳର ସବୁ ନୀତି ନିୟମ, ନିଯୋଗ ପରଂପରା ଓ ଯାନିଯାତ୍ରାର ଆଟୋପ ଆଡ଼ମ୍ବରକୁ ଛାରଖାର କରିଦେଇ ଯବନ ଆକ୍ରମଣକାରୀମାନେ ଯେତେବେଳେ ସଂଚିତ ସକଳ ଐଶ୍ୱର୍ଯ୍ୟ ଲୁଣ୍ଠନ କରିନେଲେ, ସେତେବେଳେ ଦୁର୍ଭାଗ୍ୟଗ୍ରସ୍ତ ଏ ରୁଗ୍ଣ ଜାତିର ଅବଶିଷ୍ଟମାନଙ୍କର ସମସ୍ତ ମନୋବଳ ଛାଏଁ ଛାଏଁ ଲୋପ ପାଇଯାଇ ତାକୁ ଶୋଚନୀୟ ଭାବେ ଶଙ୍କିତ, କାକୁସ୍ଥ ଓ ରୂଢ଼ିବାଦୀ କରି ଦେଇଥିଲା । ସବୁ ଦିଗଁ ଦେବତାଙ୍କ ଉପରୁ ତୁଟି ଯାଇଥିଲା ସେମାନଙ୍କର ବିଶ୍ୱାସ । ହତାଶା ଜର୍ଜରିତ ଦୁର୍ବଳତା ଓ ଅବଶତା ବଶତଃ ଲୋକେ ସବୁ ନିଷିଦ୍ଧ ଆଚରଣମାନଙ୍କୁ ମଧ ନିର୍ଦ୍ୱନ୍ଦରେ ଗ୍ରହଣ କରିନେଲେ । ଯେଉଁସବୁ ନୈତିକ ବିଧି ବିଧାନ ପ୍ରତି ଶ୍ରଦ୍ଧାଦ୍ୱାରା ଜାତିର ଅଭିରୁଚି ସଂସ୍କାରିତ ହୁଏ ଏବଂ ଆତ୍ମବିଶ୍ୱାସ ଦୃଢ଼ୀଭୂତ ହୁଏ ସେ ସବୁର ଉଲ୍ଲଘନ କରି ଲୋକ ବିପଥଗାମୀ ହେଲେ, ସ୍ଖଳିତ ହେଲେ, ଅକାର୍ଯ୍ୟମାନ ନିର୍ବିଚାରରେ କରିବାକୁ ସାହସ କଲେ । ପରିଣତିକୁ ଭ୍ରୂକ୍ଷେପ ନ କରି ସେମାନଙ୍କର ଏପରି ଅଧୋପତନକୁ ଲୋକେ କଳିଯୁଗ ଲକ୍ଷଣଜନିତ ପାପାଚାର ବୋଲି ବିଚାର

କରି ସତେ ଯେପରି ତାହା ଅନିବାର୍ଯ୍ୟ ବୋଲି ଲଘୁ ଚିତ୍ତରେ ସିଦ୍ଧାନ୍ତ କରିନେଲେ । ବୁଦ୍ଧିଜୀବୀମାନଙ୍କ ସ୍ତରରେ ଏପରି ବିଚାର ବିଭ୍ରାଟ ଓ ଦୁର୍ବଳତା ଦେଖାଦେଇଥିବାବେଳେ ସେମାନଙ୍କ ମଧ୍ୟରୁ କେତେକ ପଳାୟନ ପନ୍ଥୀ କବି ପରିସ୍ଥିତି ପ୍ରତି ସଂପୂର୍ଣ୍ଣ ଉଦାସୀନ ରହି କାଳ୍ପନିକ ଶୃଙ୍ଗାରୀ କାବ୍ୟମାନଙ୍କରେ ଶବ୍ଦ ରାଜିର ମାୟାଜାଲ ସୃଷ୍ଟିରେ ମନୋନିବେଶ ପୂର୍ବକ ପାଣ୍ଡିତ୍ୟ ଚାତୁରୀ ପ୍ରଦର୍ଶନରେ ଆତ୍ମବିଭୋର ଥିଲେ । ପରିସ୍ଥିତିର ଏହି ଶୋଚନୀୟତା ଭିତରେ ଆପଣାର ସଂସ୍କାର ବୁଦ୍ଧିରେ ଅନୁପ୍ରେରିତ ଏହି ଅକିଞ୍ଚନ ଗ୍ରନ୍ଥକାର କୃଷ୍ଣକଥା ସମ୍ବଳିତ ଗ୍ରନ୍ଥମାନ ରଚନା କରିବାରେ ଅବିରତ ମନୋନିବେଶ କରି ଏହି ପତନୋନ୍ମୁଖୀ ସମାଜକୁ ନୈତିକ ମୂଲ୍ୟବୋଧମାନ ଶିକ୍ଷାଦାନ ଦ୍ୱାରା ଅନୁଶାସିତ ଓ ସୁଶୃଙ୍ଖଳିତ କରିବାର ପ୍ରୟାସ ଆରମ୍ଭ କରିଥିଲେ । ଏପରି ଏକ ସାମାଜିକ ଓ ସାଂସ୍କୃତିକ ଆଭିମୁଖ୍ୟ ନେଇ କବି କର୍ମରେ ତତ୍ପର ସ୍ରଷ୍ଟାଙ୍କୁ କୃତ୍ରିମ ଅଳଙ୍କରଣ ଓ ଶାବ୍ଦିକ ମାୟାଜାଲ ନିର୍ମାଣ ପାଇଁ ଆୟାସ କରିବାର ଅବସର ଥିଲା ଏକାନ୍ତ ସଂକୁଚିତ । ସେହି ଆୟାସସାଧ୍ୟ ଶବ୍ଦବିଳାସ, ଅଳଂକରଣ ଓ ଅର୍ଥକ୍ଲୃପ୍ତି ସମ୍ବଳିତ ପଦ ସଂଯୋଜନାରେ ଅଭିନିବିଷ୍ଟ ହୋଇଥିଲେ ପ୍ରୟୋଜନ-ପ୍ରଧାନ ଏତେ ସଂଖ୍ୟକ ଗ୍ରନ୍ଥ କବି କଦାପି ରଚନା କରି ସମାଜର ଏକାନ୍ତ ଆବଶ୍ୟକତାକୁ ପୂରଣ କରିପାରି ନଥାନ୍ତେ । କୃଷ୍ଣକଥା ସମ୍ବଳିତ ଏହି ଗ୍ରନ୍ଥଗୁଡ଼ିକ ଯେ କବିକଳାଗତ ମୂଲ୍ୟବୋଧରୁ ସଂପୂର୍ଣ୍ଣ ଭାବେ ବଂଚିତ ଏକଥା କୁହାଯାଇ ନପାରେ, କିନ୍ତୁ ରୀତି କାବ୍ୟ ସୁଲଭ ବିପୁଳ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରାଦିର ସମାବେଶର ଅଭାବ ଦେଖି ଏବଂ ରସରାଜ ଶୃଙ୍ଗାରଙ୍କର ଅନୁପସ୍ଥିତ ଅନୁଭବ ନେଇ ରାଜସଭାମାନଙ୍କର ଶୋଭା ମଣ୍ଡନକାରୀ ରସାମୋଦୀ ବିଦୂଷଗଣ ଏସବୁ ରଚନାବଳୀକୁ ଅନାଦର ଓ ନିନ୍ଦା କରିଥିବାର ଉଲ୍ଲେଖ କରି କବି ଦୀନକୃଷ୍ଣ ରସକଲ୍ଲୋଳ ରଚନା ଅବକାଶରେ କହନ୍ତି;

''କଲେ ତୁମ୍ଭର ରସରେ ଗୀତ　　　　ରସଇ ନାହିଁ କାହାର ଚିତ୍ତ
ବୋଲନ୍ତି କର୍ଣ୍ଣେ ଶୁଣି ବିଶେଷ ରସନୋହେତ ଯେ ।
କରିତ ଥାନ୍ତି ଜ୍ଞାନକୁ ହିତ　　　　ମୋହ ମଦରେ ହୋଇ ଉନ୍ମତ୍ତ
ମୁଁ ତାଙ୍କୁ କିସ ବୋଲିବି ମୋର ନଥାଇ କୃତ୍ୟ ଯେ ।''

କାଳିଦାସ, ଶ୍ରୀହର୍ଷ, ମାଘ, ଭାରବୀ, ବାଣଭଟ୍ଟ ପ୍ରଭୃତି ସଂସ୍କୃତ ସାହିତ୍ୟର ମହାରଥୀମାନଙ୍କର କାବ୍ୟରୀତି ବୈଚିତ୍ର୍ୟରେ ମୁଗ୍ଧ ତତ୍କାଳୀନ ବିଦୂଷଗଣଙ୍କ ରସପ୍ରଲୁବ୍ଧ ଅଭିରୁଚିକୁ ଦୀନକୃଷ୍ଣଙ୍କର ପ୍ରଗଲ୍ଭ ଲୋକଶିକ୍ଷା ମୂଳକ ସରଳ ପଦାବଳୀ ପରିତୁଷ୍ଟ କରି ନପାରିବା ସ୍ୱାଭାବିକ, କିନ୍ତୁ ସେ ଯୁଗର ବିଶେଷ ପରିସ୍ଥିତିରେ ଦୀନକୃଷ୍ଣଙ୍କର ଗଭୀର ଆତ୍ମପ୍ରତ୍ୟୟ ସମ୍ପନ୍ନ ଉଦ୍ୟମ ଯେ ସମାଜର ବୃହତ୍ତର ଜନଗୋଷ୍ଠୀ ପାଇଁ ଏକାନ୍ତ ଶିକ୍ଷାପ୍ରଦ ଓ ପ୍ରୟୋଜନୀୟ ସେ ବିଷୟରେ କବି ସଂପୂର୍ଣ୍ଣ ନିଶ୍ଚିନ୍ତ ଥିଲେ । ତେଣୁ କବି ଲୋକନାଥ ବିଦ୍ୟାଧର ସେହି ଯୁଗ ଅଭିରୁଚିଠାରେ ଆତ୍ମସମର୍ପଣ କରି ତାଙ୍କର

'ନୀଳାଦ୍ରି ମହୋଦୟ' ପରି ଜଗନ୍ନାଥ ମହିମା ପ୍ରଖ୍ୟାପକ ଏକ ଗ୍ରନ୍ଥରେ ଲକ୍ଷ୍ମୀ-ଜଗନ୍ନାଥଙ୍କ ଦାମ୍ପତ୍ୟ ଲୀଳା ବର୍ଣ୍ଣନ ପ୍ରସଙ୍ଗରେ ସ୍ୱକୀୟ ଅନିଚ୍ଛାସତ୍ତ୍ୱେ ଅଶ୍ଳୀଳ ଶୃଙ୍ଗାର ପରିବେଶ ସୃଷ୍ଟି କରିଥିବା ବେଳେ ଓ ଏକାଧିକ କାଳ୍ପନିକ କାବ୍ୟରେ ଶୃଙ୍ଗାରରସର ବିକଚ ବର୍ଣ୍ଣନା କରିଥିବା ବେଳେ କବି ଦୀନକୃଷ୍ଣ କଦାପି ଏପରି କରିବାକୁ ବାଧ ଅନୁଭବ କରି ନାହାନ୍ତି । ସେ ବାରମ୍ବାର ପ୍ରତିପକ୍ଷମାନଙ୍କର ନିନ୍ଦାରେ ବିଚଳିତ ହୋଇ ଗୋଟିଏ ସ୍ଥାନରେ କହନ୍ତି,

> ''କୃଷ୍ଣକଥାରେ ଯେ ହୁଏ ବିମୁଖ,
> ପଶୁ ସଂଗତରେ ତାହାକୁ ଲେଖ ।''

ପୁନଶ୍ଚ 'ରସକଲ୍ଲୋଳ'ରେ ମଧ କବି କହନ୍ତି,

> ''କ' ଅକ୍ଷରେ କଲିଯେ ଗୀତ
> କେବେ ହେଁ ଏଥି ନଦେବ ହାତ
> କବି ହେଲେ ତ ଜାଣିବ ଏଥି
> ଶ୍ରମ ଯେ ମନ୍ତ ହେ
> କଲେ ନିନ୍ଦା ଏଘେନି ନାସ୍ତିକ ଜନ ହେ
> କାହିଁ ପାଇଁକି ହେବ ମିନ ବିମନ ଯେ ।
> କରିଛି ତାଙ୍କୁ ବିହି ବିଧାନ
> ପର ନିନ୍ଦାରେ ନେବାକୁ ଦିନ
> ମୋହ କହିଲେ ସେ କଥା ନିକି ହୋଇବ ଆନ ଯେ ।''

ଦୀନକୃଷ୍ଣଙ୍କର କୃଷ୍ଣକଥା ଓ କୃଷ୍ଣଭକ୍ତିରେ ଗଭୀର ଆତ୍ମବିଶ୍ୱାସ ତାଙ୍କୁ କେବଳ କୃଷ୍ଣଗାଥା ଭିତ୍ତିକ ଗ୍ରନ୍ଥରଚନା ପାଇଁ ଅନୁପ୍ରେରିତ କରିଥିଲା । ତାହାଛଡ଼ା ଏହି ଗ୍ରନ୍ଥମାନଙ୍କର ପାଠକ ଓ ଉପଭୋକ୍ତାଙ୍କ ସଂଖ୍ୟା ଯେ ଥିଲା ସର୍ବାଧିକ ସେ ସମ୍ବନ୍ଧରେ କବି ମଧ ସଂପୂର୍ଣ୍ଣ ସଚେତନ ଥିଲେ । ତେଣୁ ମୁଷ୍ଟିମେୟ ଶୃଙ୍ଗାର ରସଲୋଲୁପ ବିଦଗ୍ଧ ଗୋଷ୍ଠୀଙ୍କର ନିନ୍ଦା ପ୍ରତି ଆଦୌ ଭ୍ରୂକ୍ଷେପ ନକରି ସେମାନଙ୍କୁ ପଥୋପଯୁକ୍ତ ବ୍ୟଙ୍ଗାତ୍ମକ କଡ଼ା ସମାଲୋଚନା ମାଧମରେ ସ୍ତବ୍ଧକରି ଦେଇଥିଲେ ମଧ ସର୍ବଶେଷରେ ତାଙ୍କର କାନ୍ତ କୋମଳ ପଦାବଳୀ ଖଚିତ, ବିବିଧ ଅଳଙ୍କାର ମଣ୍ଡିତ ଉଜ୍ଜ୍ୱଳ ରସାଶ୍ରିତ 'ରସକଲ୍ଲୋଳ' ରଚନା ହୋଇଛି ପ୍ରତିପକ୍ଷମାନଙ୍କର ସମସ୍ତ ନିନ୍ଦା ଓ ସମାଲୋଚନାକୁ ଚିରଦିନ ପାଇଁ ସ୍ତବ୍ଧ କରି ଦେବାକୁ ସଶକ୍ତ ପ୍ରତ୍ୟୁତ୍ତର ।



**ତୃତୀୟ ପରିଚ୍ଛେଦ**

# ସୃଷ୍ଟିସମ୍ଭାର

## ୧) ଗୁଣସାଗର :

ସମଗ୍ର ଭାରତବର୍ଷର ସାହିତ୍ୟ ସଂଗୀତ, ନୃତ୍ୟ, ଚିତ୍ରକଳା ଓ ଭାସ୍କର୍ଯ୍ୟକୁ ନବଜନ୍ମ ଦେଇ ଋଦ୍ଧିମନ୍ତ କରି ଆସିଅଛି କୃଷ୍ଣ କଥାର ବିବିଧ ପ୍ରସଙ୍ଗ । କୃଷ୍ଣ ଚରିତର ଆବେଦନ କେବଳ ଏ ଦେଶର ଅଗଣିତ ଜନଚିତ୍ତକୁ ଯେ ଆକୃଷ୍ଟ କରିଛି ତାହା ନୁହେଁ ବିଶ୍ୱର ବହୁଦେଶରେ ମଧ୍ୟ କୃଷ୍ଣକଥା ପ୍ରଭାବ ବିସ୍ତାର କରି ଆସିଅଛି । ବିଶେଷତଃ କୃଷ୍ଣକଥାର ଗୋପଲୀଳା ପ୍ରସଙ୍ଗର ବର୍ଣ୍ଣିଳ ଆକର୍ଷଣ ସବୁ ଶ୍ରେଣୀର ଶିଳ୍ପୀଙ୍କୁ ଶିଳ୍ପକଳାର ଅଭ୍ୟାସ ପାଇଁ ଉତ୍ସାହିତ କରିଆସିଅଛି । ଓଡ଼ିଶାର ଲୋକ ଗୋଷ୍ଠୀଙ୍କ ଠାରେ ଏହି ଗୋପାଳକୃଷ୍ଣ ହେଉଛନ୍ତି ସର୍ବାଧିକ ପ୍ରିୟ ଓ ପରିଚିତ । ଦ୍ୱାରକାବାସୀ ଶ୍ରୀକୃଷ୍ଣଙ୍କର ଗମ୍ଭୀର କୂଟନୈତିକ ଭୂମିକା ଯେତେ ଆକର୍ଷଣୀୟ ଓ ପ୍ରଭାବଶାଳୀ ହେଲେ ମଧ୍ୟ ତାଙ୍କର ଉପସ୍ଥିତି ସତେ ଯେପରି ଓଡ଼ିଆ ଜାତିର ମାନସ ପଟ୍ଟରେ ସମ୍ଭ୍ରମ ଓ ଭକ୍ତି ସଂଚାରିତ କରାଏ । କିନ୍ତୁ ଗୋପାଳକୃଷ୍ଣ ସହିତ ଓଡ଼ିଆ ଜାତିର ଅବାଧ ମୁକ୍ତ ବ୍ୟବହାର । ସେ ପ୍ରତି ଘରର ଅଳିଅଳ ସନ୍ତାନ, ସଖା, ସାଥୀ ସହୋଦର ଓ ରସିକ ପ୍ରେମିକ । ସେ ପୁଣି ପରଲୋକର ଶୁଭ ସଂସ୍ଥାପକ ପ୍ରାଣର ଉପାସ୍ୟ ଦେବତା, ''ଗତିର୍ଭର୍ତ୍ତା ପ୍ରଭୁ ସାକ୍ଷୀ, ନିବାସ, ଶରଣଂ ସୁହୃତ'' । ସେ ତା'ର ପ୍ରିୟତମ କଳାଠାକୁର । ତାଙ୍କୁ ନେଇ ଘରେ ଘରେ ସବୁ ଉଦ୍ୟୋଗ ଓ ସବୁ ଆୟୋଜନ । ତା'ର ତୃପ୍ତି ବିଧାନ ପାଇଁ ଓଡ଼ିଆ ଜାତିର ସକଳ ଚେଷ୍ଟା ।

ଏହି କୃଷ୍ଣକଥାରୁ ନୈତିକ ପ୍ରେରଣା ଲାଭ କରାଇ ଓଡ଼ିଶାର ବ୍ୟକ୍ତି ଜୀବନକୁ ସରସ ସୁନ୍ଦର କରି ଗଢ଼ି ତୋଳିବା ଲକ୍ଷ୍ୟରେ କବି ଯେଉଁସବୁ ଗ୍ରନ୍ଥମାନ ରଚନା କରିଛନ୍ତି, ତନ୍ମଧ୍ୟରୁ ମୁଖ୍ୟ କେତେଗୋଟି ଜନପ୍ରିୟ ଗ୍ରନ୍ଥର ପରିଚୟ ନିମ୍ନରେ ପ୍ରଦତ୍ତ ହେଲା;

ଅବତାରୀ କୃଷ୍ଣ ଜଗନ୍ନାଥଙ୍କର ମହିମା କଳନା ଦେବମାନବ ଶକ୍ତିର ବହିର୍ଭୂତ । ସେହି ପ୍ରଭୁର ସାଗରତୁଲ୍ୟ ଗୁଣରାଶିର ଅବତାରଣା କରାଇ ଜନମାନସରେ କୃଷ୍ଣଭକ୍ତିକୁ ଦୃଢ଼ୀଭୂତ କରାଇବା ଲକ୍ଷ୍ୟରେ କବି ରଚନା କରନ୍ତି ଏହି ଗ୍ରନ୍ଥ । ଏହା ବୋଧହୁଏ ତାଙ୍କର ପ୍ରଥମ ରଚନା ବୋଲି କବି ସୂଚନା ଦେଇ 'ରସବିନୋଦ'ରେ କହନ୍ତି ;

"ପ୍ରଥମ ବୋଲୀ ମୋର ସାର । ନାମ ତା'ର ଗୁଣସାଗର ।
ଅତି ଗୁଣରେ ଗୁଣମଣି । ସୁଜନେ ଶାନ୍ତିପାଅ ଶୁଣି ।
ଆଠଶ ଚଉଦ ଯେ ପଦ । ଭକତି ଜ୍ଞାନ ଭାବବୋଧ ।
ଅତି ଦୁର୍ଲ୍ଲଭ ଏହି ଗ୍ରନ୍ଥ । ପାପୀମାନଙ୍କ ପୁଣ୍ୟପଥ ।।"

କୃଷ୍ଣଙ୍କର ମଥୁରାଯାତ୍ରା ପରେ ସୁଦୀର୍ଘ ବିରହ-ଦୁଃଖରେ ଶୋକାକୁଳିତା ଗୋପାଙ୍ଗନାମାନଙ୍କ ସମ୍ମୁଖରେ ଦିନେ ସମବେଦନାରେ ଜର୍ଜ୍ଜରିତ ମାର୍କଣ୍ଡ ଋଷି ଉପସ୍ଥିତ ହୁଅନ୍ତି । ଯେଉଁ କୃଷ୍ଣଙ୍କୁ ସେମାନେ ସାମାନ୍ୟ ମାନବ ଶିଶୁ ଓ ସେମାନଙ୍କର ଏକାନ୍ତ ପ୍ରିୟତମ ସ୍ଥାନରେ ତାଙ୍କ ସହିତ ଏତେ କାଳ ଧରି ଖେଳାଲୀଳା କଲେ, ସେ ଯେ ପରମ ବିଷ୍ଣୁ ଅବତାରୀ ପୁରୁଷ ପୂର୍ଣ୍ଣବ୍ରହ୍ମ ଓ ତାଙ୍କୁ ଯୋଗୀ ଋଷିଗଣ କଳ୍ପ କଳ୍ପାନ୍ତ ଧରି ଯୋଗଧ୍ୟାନ ବଳରେ ମଧ ଉପଲବ୍ଧି କରିପାରନ୍ତି ନାହିଁ ତାହା ମାର୍କଣ୍ଡ ଋଷି ପ୍ରତିପାଦନ କରି ସେହି ହରିର ଅନନ୍ତ ଗୁଣରାଶି ବର୍ଣ୍ଣନା କରିବାକୁ ଲାଗିଲେ । ସପ୍ତବର୍ଷ ବୟସ୍କ-ବାଳକ ଧ୍ରୁବ ଅନନ୍ୟ ଭକ୍ତିରେ ତାଙ୍କୁ ସ୍ମରଣ କରି ପିତୃକୋଳର ଉଚ୍ଚାସନ ପାଇଁ ପ୍ରାର୍ଥନା କରୁକରୁ କୃଷ୍ଣ ତାଙ୍କୁ ଅପହଞ୍ଚ ଅନ୍ତରୀକ୍ଷରେ ସର୍ବୋଚ୍ଚ ଆସନରେ ଅଧିଷ୍ଠିତ କରାଇଲେ । ସେହିପରି ଅନ୍ୟାନ୍ୟ ବହୁ ଆର୍ତ୍ତଙ୍କର କାତର ପ୍ରାର୍ଥନାରେ ସେ ପ୍ରସନ୍ନ ହୋଇ ସେମାନଙ୍କର ଅଭୀଷ୍ଟ ପୂର୍ଣ୍ଣ କରାଇଥିଲେ । ଏହିପରି କୃଷ୍ଣର ଅଶେଷ ମହିମା ଗାନକରି ଋଷି ସେହି ବିରହ ବିଦଗ୍ଧା ଗୋପାଙ୍ଗନା ମାନଙ୍କର ଦୁଃଖ ଲାଘବ କରାଇଥିଲେ । ସରଳ ଭାଷାବିନ୍ୟାସ ଓ ପ୍ରାଣସ୍ପର୍ଶୀ ବର୍ଣ୍ଣନା ଯୋଗୁଁ ଏହା ମଧ୍ୟଯୁଗୀୟ ଓଡ଼ିଶାର ପାଠଶାଳାମାନଙ୍କରେ ପଠିତ ହୋଇ ବ୍ୟାପକ ଲୋକପ୍ରିୟତା ଲାଭ କରିଥିଲା । ତେଣୁ ଏହା ଅଧ୍ୟୟନ କରି ଗ୍ରନ୍ଥ ଲେଖିଥିବା ବହୁ ପ୍ରାଚୀନ କବି ନିଜ ନିଜର ଗ୍ରନ୍ଥମାନଙ୍କରେ ରାଗ ନିର୍ଦ୍ଦେଶ କରି 'ଗୁଣସାଗର ବୃତ୍ତେ' ବୋଲି ଉଲ୍ଲେଖ କରିଥିବାର ଦେଖାଯାଏ । ଗୋଟିଏ ସରଳ ବୃତ୍ତରେ ଗାଥା କାବ୍ୟ ରୀତିରେ ରଚିତ ହୋଇଥିବାରୁ କବି ଏହାର ନାମ 'ଗୁଣସାଗର ବୋଲି' ମଧ ରଖିଥିଲେ । କର୍ମରେ ସ୍ପୃହା ଓ ସାଧନାରେ ଐକାନ୍ତିକତା ସୃଷ୍ଟି କରାଇବା ଲକ୍ଷ୍ୟରେ ଏହି ଗ୍ରନ୍ଥ ଉତ୍ସାହିତ କରେ ।

## ୨) ଭୂତକେଳି :

କୃଷ୍ଣ ଜଗନ୍ନାଥଙ୍କର ନାନା କୌତୁକଲୀଳା ସହିତ ସର୍ବସାଧାରଣଙ୍କୁ ପରିଚିତ କରାଇବାର ଲକ୍ଷ୍ୟରେ କୌତୁକପ୍ରିୟ କବି ଦୀନକୃଷ୍ଣ ଏହି ଗ୍ରନ୍ଥ ରଚନା କରନ୍ତି । ଓଡ଼ିଶାରେ ମହାଭାରତ ରଚନା କରି ପାଣ୍ଡବସଖା କୃଷ୍ଣଙ୍କର ଅଦ୍ଭୁତ କର୍ମମାନ ସାରଳାଦାସ ପ୍ରଚାର କରାଇଥିଲେ ମଧ ତାଙ୍କ ଖଲ୍ୟକାର ଜନ୍ମବୃତ୍ତାନ୍ତ ପ୍ରସଙ୍ଗରେ ଶ୍ରୀକୃଷ୍ଣଙ୍କର ଗୋପାଳୁଣୀ ରାଧାସହିତ ଗୋପନ ପ୍ରଣୟ ରଚନାର ଚିତ୍ରଟିଏ ପ୍ରଦାନ କରିବାର ଲୋଭ ସମ୍ବରଣ କରିପାରି ନଥିଲେ । ଏବେ ତାଙ୍କ ନାମରେ ଭଣିତାଥିବା

'ଭାରତ ହରିବଂଶ'ର ପାଠରୁ ଜଣାଯାଏ ଯେ ଶ୍ରୀକୃଷ୍ଣଙ୍କର ଗୋପଲୀଳାର ପ୍ରଥମ କାବ୍ୟଶିଳ୍ପୀ ହେଉଛନ୍ତି ଓଡ଼ିଶାରେ ସାରଳା ଦାସ । ଅତଏବ ସାରଳା ପୂର୍ବ ଯୁଗରେ ଓଡ଼ିଶାରେ କୃଷ୍ଣଲୀଳାର ବହୁଳ ପ୍ରଚାର ପ୍ରସାର ଘଟିସାରିଥିଲା । ଯାହା ଫଳରେ କୃଷ୍ଣ ଓଡ଼ିଶାର ଘରେ ଘରେ, ଗ୍ରାମେ ଗ୍ରାମେ ଏକାନ୍ତ ପରିଚିତ, ପ୍ରିୟତମ ଓ ଆତ୍ମୀୟ ହୋଇଯାଇଥିଲେ । ଜୟଦେବ ସେହି କୃଷ୍ଣଲୀଳା ସହିତ ସୁପରିଚିତ ଥିବା ହେତୁ 'ଗୀତଗୋବିନ୍ଦ' ପରି ପ୍ରଣୟପ୍ରଧାନ କାବ୍ୟରଚନା କରିଥିଲେ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ । ସାରଳା ଦାସ ବୋଧହୁଏ ସର୍ବପ୍ରଥମେ ସେହି କୌତୁକ ପ୍ରିୟ ଅଦ୍ଭୁତକର୍ମା ଶ୍ରୀକୃଷ୍ଣଙ୍କର ବିବିଧ ଲୀଳାକୁ ଓଡ଼ିଆ ସାହିତ୍ୟରେ ପରିବେଷଣ କଲେ । ଗୋପପୁରର ଗୋପାଳକୃଷ୍ଣଙ୍କୁ ଆଣି ସେ ଓଡ଼ିଶାର ଗୋପାଳ ପଲ୍ଲୀର ଏକ ଚପଳମତି ବାଳକରେ ପରିଣତ କରାଇଦେଲେ । ସେ ଓଡ଼ିଶାରେ ନନ୍ଦରାଜାର ଅଲିଅଳ ପୁଅ ହେଲେ ବି ନନ୍ଦଗୋପାଳର ଅଝଟିଆ ପୁଅଟିଏ । ନନ୍ଦରାଜା ସ୍ନାନ ସାରି ଠାକୁର ପୂଜା ଓ ପ୍ରଣାମ କରୁଥିବାବେଳେ ସେ ଖଟୁଲି ପଛରେ ଲୁଚିରହି ସବୁତକ ପ୍ରସାଦକୁ ଆଗେ ଖାଇ ଦିଅନ୍ତି । ପୁଅର ଏପରି ଦୁଷ୍ଟାମି ଓ କୁକର୍ମରେ କ୍ଷୁବ୍ଧ ନନ୍ଦଗୋପାଳ ତାକୁ ମାଡ଼ ମାରିବାକୁ ଅନୁଧାବନ କରି କରି ଶେଷରେ ନିରସ୍ତ ହୋଇ ଫେରନ୍ତି । ଏପରି ପ୍ରସାଦ ଚୋରି, ଲବଣୀ ଚୋରି ପ୍ରଭୃତି ନାନାବିଧ ଚୌର୍ଯ୍ୟକର୍ମରେ ଓଡ଼ିଶାର ନନ୍ଦଗୋପାଳପୁଅ ଲିପ୍ତ ରହି ଲୋକଙ୍କୁ ଅସ୍ତବ୍ୟସ୍ତ କରୁଥିଲେ ମଧ ତଥାପି ସେ ସମସ୍ତଙ୍କର ପ୍ରିୟତମ ସନ୍ତାନ ଓ ସଖା । ଓଡ଼ିଶାର ଘଟଣାବିହୀନ ନିସ୍ତରଙ୍ଗ ଗ୍ରାମ୍ୟ ଜୀବନରେ ଗୋପାଳପଲ୍ଲୀର ଏହି ଚୋରପିଲାଟି ବରଂ କିଛିଟା ଚାଞ୍ଚଲ୍ୟ ଓ ଚମକ ସୃଷ୍ଟିକରେ, ତେଣୁ ତା'ର ସବୁକିଛି ଦୁଷ୍କର୍ମ ବେଶ୍ ସ୍ଫୂର୍ତ୍ତିକର ଓ ଆନନ୍ଦଦାୟକ ମନେହୁଏ ।

ଓଡ଼ିଶାରେ ଭୂତମାନଙ୍କର ନାନା ଉପଦ୍ରବର ଅନୁଭୂତି ବର୍ଣ୍ଣନା ଏକାନ୍ତ କୌତୂହଳପ୍ରଦ ଓ ଆକର୍ଷଣୀୟ । ତେଣୁ କୃଷ୍ଣ ମଧ ଭୂତ ଭୂମିକାରେ ଅବତୀର୍ଣ୍ଣ ହୋଇ କେଳିକରିବାର କଳ୍ପନା ଅତ୍ୟନ୍ତ ଆମୋଦଦାୟକ । ଗୋପୀମାନଙ୍କୁ ନାନା ଭାବରେ ହଇରାଣ ହରକତ କରି ଶେଷରେ କିଶୋର କୃଷ୍ଣ ଯଦି ଗୋପାଙ୍ଗନା ମାନଙ୍କର ବସ୍ତ୍ରହରଣ କରି ନେଇ ସେମାନଙ୍କୁ ଜଳ ମଧରେ ଉଲଗ୍ନ ଅବସ୍ଥାରେ ଅପଦସ୍ତ କରିପାରନ୍ତି, ତେବେ ସେ ଭୂତ ରୂପ ଧାରଣ କରି ଶ୍ରୀରାଧା ମନ୍ଦିରରେ କେଳିପ୍ରବୃତ୍ତ ହେବାରେ ଅସଙ୍ଗତି କିଛି ନାହିଁ । ଏହିପରି ଆତ୍ମୀୟତା ଭାବ ନେଇ କୃଷ୍ଣଚନ୍ଦ୍ରଙ୍କୁ ରାଧାମନ୍ଦିରରେ ପ୍ରବେଶ କରାଇ ଥିବାବେଳେ କୃଷ୍ଣ ତ୍ରିପଣ୍ଡ କାଳିଆ ଭୂତ ରୂପରେ ସମଗ୍ର ଗୋପମଣ୍ଡଳରେ ଚହଳ ସୃଷ୍ଟି କରିଥିବାର ବର୍ଣ୍ଣନାଟିଏ ସର୍ବପ୍ରଥମେ ସ୍ୱରଚିତ ହରିବଂଶରେ ସାରଳା ଦାସ ପ୍ରଦାନ କରିଥିଲେ । ଏହି ପ୍ରସଙ୍ଗଟି ଭିତ୍ତିରେ ବୋଧହୁଏ ଓଡ଼ିଶାରେ କୁମାର ପୂର୍ଣ୍ଣିମା ରାତ୍ରିର ଶେଷ ଯାମରେ କୁମାରୀମାନଙ୍କର ନୃତ୍ୟଗୀତର କ୍ରୀଡ଼ା ସମାରୋହରେ ତ୍ରିପଣ୍ଡ କାଳିଆ ପାଳଭୂତଟିଏ ପ୍ରବେଶ କରିବାର ବିଧି ଓ

ପ୍ରସିଦ୍ଧି ରହି ଆସିଅଛି । ଏହି ହାସ୍ୟ କୌତୁକ କଥାଭାଷାକୁ ଆଧାର କରି ଦୀନକୃଷ୍ଣ ରଚନା କଲେ 'ଭୂତକେଳି' ।

ଅମାବାସ୍ୟାର ଗଭୀର ଅମାରାତ୍ରି । ସ୍ତ୍ରୀକୁ ଉତ୍ତମ ବେଶଭୂଷାରେ ସୁସଜ୍ଜିତ କରିସାରି ଘଣ୍ଟିଘାଘୁଡ଼ି ପିନ୍ଧି ଚନ୍ଦ୍ରସେଣା ଗଲେ ଗୋଗୋଷ୍ଠକୁ । ପୂର୍ବ ସଂକେତାନୁସାରେ ଚୋରକୃଷ୍ଣ ଆସି ରାଧାଙ୍କର ଶୟନ କକ୍ଷର କବାଟରେ ଆଘାତ କଲେ । ଗୋପନ-ପ୍ରୀତିସୁଲଭ ଦ୍ୱନ୍ଦ୍ୱ ଓ ଆଶଙ୍କାରେ ଶଙ୍କିତା ଓ କମ୍ପିତା ହୋଇ ରାଧା ମନରେ ନାନା ବିପଦ କଳ୍ପନା କଲେ । ବିଶେଷତଃ ସବୁ ଭୟ ଓ ଅପବାଦର ମୂଳ କାରଣ ତା'ର ଅବିବାହିତା ନଣନ୍ଦ ହୁଏତ ହାଟ ଦାଣ୍ଡରେ ଏହା ପ୍ରଘଟ କରାଇ ଦେଇପାରେ । ତଥାପି କୃଷ୍ଣ ସହିତ ମିଳନର ଲୋଭ ସମ୍ବରଣ କରି ନପାରି କୃଷ୍ଣଙ୍କର ଘନ ଘନ କବାଟ ଆଘାତ ଶୁଣି କପଟ କ୍ରୋଧ ସହିତ ତାଙ୍କର ପରିଚୟ ଜିଜ୍ଞାସା କଲେ ।

ରତିଚୋର ଶ୍ରୀକୃଷ୍ଣ ନିଜକୁ ମାଧବ, ଚକ୍ରଧର, ଧରଣୀଧର, ଖଗପତି ଓ ହରି ଇତ୍ୟାଦି ବୋଲି ପରିଚିତ କରାନ୍ତେ, ରାଧା ତହିଁରୁ ବସନ୍ତଋତୁ, କୁରାଳ, ବାସୁକୀ, ଗରୁଡ଼ ଓ ମର୍କଟାଦି ଶ୍ଳେଷାର୍ଥ ପ୍ରୟୋଗ କରି ତାଙ୍କୁ ଅନ୍ୟତ୍ର ଚାଲିଯିବାକୁ ଆଦେଶ ଦେଲେ । ଅବଶେଷରେ ପରାସ୍ତ ହୋଇ କୃଷ୍ଣ ବିବିଧ ପ୍ରକାର ଚାଟୁବାଣୀ ଓ ବିନୟ ବଳରେ ରାଧାଙ୍କର ଚିତ୍ତବିନୋଦନ ପୂର୍ବକ ଶୟନ କକ୍ଷରେ ପ୍ରବେଶ କରି ରାଧାଙ୍କ ସହିତ ରତିକ୍ରୀଡ଼ାରେ ନିମଜ୍ଜିତ ହେଲେ ।

ରତିକ୍ଳାନ୍ତ ଉନ୍ନିଦ୍ର ରଜନୀ ଅତିକ୍ରାନ୍ତ କରି ଦିବା ଦୁଇଘଟିକା ପର୍ଯ୍ୟନ୍ତ ନିଦ୍ରାମଗ୍ନ ଅବସ୍ଥାରେ ଥିବା ରାଧାକୃଷ୍ଣଙ୍କୁ ଚନ୍ଦ୍ରସେଣା ଆସି କବାଟ ଫାଙ୍କରୁ ନିରୀକ୍ଷଣ କଲା । ଉଭୟଙ୍କର ଏପରି ଭୀତି-ସଂକୋଚ ହୀନ ଅବୈଧମିଳନରେ ଚନ୍ଦ୍ରସେଣା କ୍ରୋଧାନ୍ୱିତ ହୋଇ ନାନା ଅକଥ୍ୟ ଭାଷାରେ ତିରସ୍କାର ପୂର୍ବକ କବାଟରେ ପ୍ରବଳ ଆଘାତ କଲେ । ଭୀତତ୍ରସ୍ତା ରାଧା ଶ୍ରୀକୃଷ୍ଣଙ୍କର ହେଲେ ଶରଣାପନ୍ନ । ରାଧାଙ୍କୁ ନିଜ କୋଳରେ ଅଭୟ ଆଶ୍ରୟ ଦେଇ ଅବିଚଳିତ କୃଷ୍ଣ କବାଟ ନ ଖୋଲିବାରୁ ଚନ୍ଦ୍ରସେଣାର କ୍ରୋଧ ଆହୁରି ପ୍ରବଳ ହେଲା । ବହୁ ବିଲମ୍ବିତ ଦୀର୍ଘ ନୀରବତାରେ ଚନ୍ଦ୍ରସେଣା ରାଧାଙ୍କର ମୃତ୍ୟୁ ବା ମୂର୍ଚ୍ଛା ଆଶଙ୍କା କରି କବାଟ ଫାଙ୍କରେ ନିରୀକ୍ଷଣ କରି ଘର ଭିତରେ ଦେଖିଲା ଅତିକାୟ ମହା ଭୟଙ୍କର ଭୂତ । ଏ ଦୃଶ୍ୟରେ ଭୀତତ୍ରସ୍ତ ଚନ୍ଦ୍ରସେଣା ନନ୍ଦଗୃହକୁ ପଳାୟନ କରି ସେଠାରେ ଉଚ୍ଚ ସ୍ୱରରେ ବିଳାପ କରି ଭୂତ କବଳରେ ପଡ଼ି ରାଧା ମୃତା ବା ମୂର୍ଚ୍ଛିତା ହୋଇଥିବାର ଜଣାଇଲା । ଚନ୍ଦ୍ରସେଣାର ଏପରି ଦୁର୍ଦ୍ଦଶାରେ ଯଶୋଦା ସମ୍ବେଦନା ପ୍ରକାଶ କରି ନନ୍ଦ ସହିତ ଗୋପାଳମାନଙ୍କୁ ଭୂତ ଘଉଡ଼ାଇ ରାଧାଙ୍କୁ ଉଦ୍ଧାର କରିବାକୁ ନିବେଦନ କଲା । ନନ୍ଦ ସହିତ ଗୋପାଳମାନେ ଯାଇ ଚନ୍ଦ୍ରସେଣା ଗୃହରେ ଭୂତ ଦେଖିବାକୁ ପ୍ରୟାସ କରନ୍ତେ ଭୂତର ମହାଭୟଙ୍କର ବିକଟାଳ ରଡ଼ିରେ ଛତ୍ରଭଂଗ ଦେଇ ଯତ୍ର ତତ୍ର ଆତ୍ମଗୋପନ କରିବାକୁ ପ୍ରୟାସ କଲେ । ଶେଷରେ ନନ୍ଦର ପ୍ରସ୍ତାବ ମତେ

ସମସ୍ତେ ମିଳିତ ଭାବରେ ଭୂତକୁ ନାନା ଭାବରେ ସ୍ତୁତି ବିନୟ କରିବାରୁ ଭୂତ ନିଜର ପଚାଶ ଭଉଣୀ ଚଣ୍ଡୀ, ଚାମଣ୍ଡା, ଡାକିନୀ, ପିଶାଚିନୀ ପ୍ରଭୃତି ସହିତ ଅଣୀକୋଟୀ ସେବିକା ଚାମଣ୍ଡାଙ୍କ ବଳିପାଇଁ ଲକ୍ଷେଭାର ଅମୃତ ମଣୋହି ଦିବ୍ୟ ପିଠାଦି ଉପଚାର ଲାଭ କଲେ ସେ ତୁଷ୍ଟ ହୋଇ ଚାଲି ଯିବାକୁ ସର୍ତ୍ତ ରଖିଲେ । ଗୋପାଳମାନେ ଅନନ୍ୟୋପାୟ ହୋଇ ତହିଁରେ ସମ୍ମତି ଜଣାଇ ସେ ସବୁ ପଦାର୍ଥ ସମର୍ପଣ କଲେ । ନିର୍ଜନ ରାତ୍ରିରେ ଏହିସବୁ ସମ୍ଭାର ଗ୍ରହଣ କରିବା ସହିତ ଶ୍ରୀକୃଷ୍ଣ ବୃନ୍ଦାବନରେ ରାଧାଙ୍କ ସହିତ ସ୍ୱଚ୍ଛନ୍ଦ ରାସଲୀଳା ସମାପନ କରି ଭୂତଲୀଳା ଶେଷ କଲେ । ରାଧାଙ୍କୁ ଭୂତ କବଳରୁ ଉଦ୍ଧାର କରାଇଥିବାରୁ ଚନ୍ଦ୍ରସେଣା ଆନନ୍ଦିତ ହୋଇ ଗୋପପୁରକୁ ଉତ୍ସବ ମୁଖରିତ କରାଇ ଦେଲେ ।

ହାସ୍ୟରସାତ୍ମକ ଏହି ଦୀର୍ଘ କବିତାଟିର କଥାଭାଗରେ ଚନ୍ଦ୍ରସେଣାର ବିଳାପ, ଗୋପାଳମାନଙ୍କର ଭୟାତୁରତା ଯେପରି କୌତୂହଳ ଉଦ୍ଦୀପକ ସେହିପରି ଶ୍ରୀକୃଷ୍ଣଙ୍କର ଗର୍ଭ ଭିତରେ ବିଶ୍ୱରୂପ ଦେଖି ରାଧା ଭୟାଭିଭୂତା ହେବାର ବର୍ଣ୍ଣନା ମଧ୍ୟ ବିସ୍ମୟ ବ୍ୟଞ୍ଜକ ।

ରାଧାକୃଷ୍ଣଙ୍କ ଉକ୍ତିପ୍ରତ୍ୟୁକ୍ତିରେ ଏକ ସଂସ୍କୃତ ମଙ୍ଗଳ ଗୀତିଶ୍ଳୋକର ଅନୁସରଣ ସତ୍ତ୍ୱେ କୌଣସି ଉଚ୍ଚତର କାବ୍ୟିକ ମୂଲ୍ୟବୋଧର ଗୌରବଲାଭ କରି ନଥିଲେ ମଧ୍ୟ 'ଭୂତକେଳି' ଉତ୍କଳର ଅଗଣିତ ଲୋକମାନସକୁ ଲଘୁ ହାସ୍ୟରସର ଆମୋଦ ଦେଇଆସିଅଛି । ଏପରିକି ଭକ୍ତଚରଣଙ୍କ ପରି ଉଚ୍ଚସ୍ତରର କବିମାନେ ଏହି କଥା-କବିତା ସମ୍ବନ୍ଧରେ ପୂର୍ଣ୍ଣ ଅବହିତ ଥିଲେ । ତେଣୁ ସେ ମଥୁରା ମଙ୍ଗଳର ପଞ୍ଚମ ଛାନ୍ଦରେ ଉଲ୍ଲେଖ କରିଥିଲେ,

''ଭୂତ ଛଡ଼ାଇବ କେ ରାଧାଙ୍କୁ
କେହୁ ହରିବ ଦୁଃଖ ବାଧାକୁ
କେହୁ ବୃନ୍ଦାବତୀ ସଙ୍ଗେ ବିହରିବ,
ବୃନ୍ଦାବନେ ଖୋଜିବୁ କାହାକୁ ହେ ମୋହନ !''

## ୩) ଘାଟବୋଲୀ :

'ଭୂତକେଳି' ପରି 'ନାବକେଳି' ମଧ୍ୟ ଏକ କୌତୁକପୂର୍ଣ୍ଣ ରଚନା । ଏହା ସାଧାରଣରେ ଅଦ୍ୟାବଧି 'ଘାଟବୋଲୀ' ନାମରେ ମଧ ବିଖ୍ୟାତ ହୋଇ ଆସିଅଛି । ପଞ୍ଚଦଶ-ଷୋଡ଼ଶ ଶତାବ୍ଦୀର କବି ଅର୍ଜୁନ ଦାସ ଗୋପାଳକୃଷ୍ଣଙ୍କର ଏହିସବୁ କୌତୁକଲୀଳା ସମ୍ବନ୍ଧରେ ପରିଚିତ ଥିବା ହେତୁ ସେ କୃଷ୍ଣଙ୍କୁ ମାଳାକାରିକା ବେଶରେ ରାଧାଙ୍କୁ ଫୁଲମାଳ ବିକ୍ରୀ କରିବାକୁ ପଠାଇଥିଲେ । ଓଡ଼ିଆରେ ବୋଲୀ ରଚନା ଧାରାରେ ଏହାକୁ ଅଦ୍ୟାବଧି ଆବିଷ୍କୃତ ବୋଲୀମାନଙ୍କ ମଧ୍ୟରେ ପ୍ରଥମ ବୋଲୀ ରଚନା

ଭାବରେ ଅଭିହିତ କରାଯାଇପାରେ । ଏପରି ଦୀର୍ଘ ଗୀତିକାମାନ ବୋଲୀ ଭାବରେ ଅତ୍ୟନ୍ତ ଲୋକପ୍ରିୟ ଥିବା ହେତୁ ବହୁ ବିଷୟରେ ମଧ୍ୟ 'ବୋଲୀ' କବିତାମାନ ରଚିତ ହୋଇଥିଲା । ଏଗୁଡ଼ିକ ମିଳିତ କଣ୍ଠରେ ବୋଲା ଯାଉଥିବାରୁ ଏମାନଙ୍କୁ ବୋଲୀ ନାମରେ ବୋଧହୁଏ ଅଭିହିତ କରାଯାଉଥିଲା । ପ୍ରାୟ ଅଧିକାଂଶ ବୋଲୀ ଏଗାର ଅକ୍ଷର ବିଶିଷ୍ଟ ଚକ୍ରକେଳି ବୃତ୍ତରେ ରଚିତ ।

ଆଲୋଚ୍ୟ 'ନାବକେଳି' ବା 'ଘାଟବୋଲୀ'ରେ ହଟନାଗର ଶ୍ରୀକୃଷ୍ଣ କିଶୋରୀ ଗୋପିକାମାନଙ୍କ ସହିତ ହଟ ସାଧିବାର ଅନ୍ୟ ଗୋଟିଏ କୌତୁକ କାହାଣୀ ପରିକଳ୍ପିତ । ଗୋପାଙ୍ଗଣାମାନେ ଆନନ୍ଦରେ ଦଧିମନ୍ଥନ ଶେଷକରି ମଥୁରା ହାଟରେ ଦଧି ବିକ୍ରି ନିମିତ୍ତ ପସରା ମୁଣ୍ଡେଇ ଯାଇ ଯମୁନା କୂଳରେ ଦେଖନ୍ତି ଯେ ଯମୁନାରେ ଅକାଳରେ ଭୟଙ୍କର ବଢ଼ି । ନଦୀପାର ହେବାକୁ ଡଙ୍ଗା ବା ନାବିକ କେହି ନାହାନ୍ତି । ହାଟ ସମୟ ବିଳମ୍ବ ହୋଇ ଯାଉଥିବାରୁ ନଦୀ ପାର ହେବାକୁ ଉତ୍ସୁକ ହୋଇ ସେମାନେ ସବୁ ଧୈର୍ଯ୍ୟ ହରାଇ ବସନ୍ତି । ଭାଗ୍ୟବଶତଃ ଏକ ଭଙ୍ଗା ଡଙ୍ଗାରେ ଆସନ୍ତି ଜଣେ ଜରାଜୀର୍ଣ୍ଣ ଦୁର୍ବଳ ଶରୀର ମତ୍ସ୍ୟଜୀବୀ ନାବିକ । ଗୋପାଙ୍ଗଣାମାନେ ଅତି ବିନୀତ ଭାବରେ ସେମାନଙ୍କୁ ନଦୀ ପାର କରାଇ ଦେବାକୁ ନିବେଦନ କରନ୍ତି । ଏକାନ୍ତ ଅନିଚ୍ଛା ସତ୍ତ୍ୱେ ବୃଦ୍ଧ ନାବିକଟି ଭଙ୍ଗା ଡଙ୍ଗାରେ ଜଣ ଜଣ କରି ସେମାନଙ୍କୁ ନଦୀ ପାର କରାଇ ଦେବାର ଆଶ୍ୱାସନା ଦେଇ ପ୍ରଥମେ ନିଅନ୍ତି ଡଙ୍ଗାରେ ଶ୍ରୀରାଧାଙ୍କୁ । ନଦୀର ମଧ୍ୟ ଭାଗରେ ଘୋଟି ଆସେ ଅକାଳ କୁହେଳୀ । ଚତୁର୍ଦ୍ଦିଗ ଅନ୍ଧକାରାଚ୍ଛନ୍ନ ହୋଇଯାଇ ଡଙ୍ଗାର ଅପର ପାର୍ଶ୍ୱସ୍ଥ ନାବିକ ବୁଢ଼ା ହୁଏ ଅଦୃଶ୍ୟ । ଭଙ୍ଗା ଡଙ୍ଗା ଭିତରକୁ ହାବୁକା ହାବୁକା ପାଣି ପ୍ରବେଶ କରି ଡଙ୍ଗାକୁ କରେ ବିପନ୍ନ । ଆସନ୍ନ ଜଳମଗ୍ନ ହୋଇଯିବାର ଆଶଙ୍କାରେ ଭୟାତୁରା ରାଧା ଯେତେବେଳେ ତରେଇକୁ ଖୋଜି ନଦୀ ମଧ୍ୟରେ ବିଳାପ କରନ୍ତି, ସେତେବେଳେ ବୃଦ୍ଧ ବଧିର ନାବିକ ରାଧାକୁ ସବୁ ଅଳଙ୍କାର ଯାକ ନଦୀ ଗର୍ଭକୁ ଫିଙ୍ଗିଦେଇ ଜଳଦେବୀଙ୍କୁ ତୁଷ୍ଟ କରିବାକୁ କହେ । କିନ୍ତୁ ଅଳଙ୍କାର ଲୋଭୀ ରାଧିକା ତା'ର ରତ୍ନ ଅଳଙ୍କାର ଗୁଡ଼ିକ ନଦୀକୁ ନଦେଇ ବରଂ ନାବିକ ନେଇଯିବାକୁ କହିବାରୁ ବୃଦ୍ଧ ନାବିକ କହେ,

''ଧନରେ ମୋହର ନାହିଁ ଶରଧା,
ତୁହି ଶୁଭେ ଯେବେ ନିଶ୍ଚିନ୍ତେ ଥିବୁ ।
ତୋ ଦୟାରେ ମୋତେ ମିଳିବ ସବୁ ।।''

ଏକ ଅପରିଚିତ ଅବାଞ୍ଛିତ କୁରୂପ ବୃଦ୍ଧ ବଧିର ନାବିକର ଏପରି ଅପ୍ରତ୍ୟାଶିତ ସମ୍ବେଦନଶୀଳ ଚାଟୂକ୍ତି ଶ୍ରୀରାଧାର ମର୍ମ ଦହନ କଲା । ଆସନ୍ନ ମୃତ୍ୟୁ ଭୟର ଆଶଙ୍କା ଅପେକ୍ଷା ଅସହାୟ ଅବସ୍ଥାରେ ଆଶୁ ମର୍ଯ୍ୟାଦା ହାନୀର ଆଶଙ୍କା ଏହି କୂଳବଧୂକୁ ଅସ୍ଥିର କରି ଦେଇଥିବାର ବର୍ଣ୍ଣନା କରି କବି କହନ୍ତି;

''ଶୁଣି ରାଧିକାର ଉଡ଼ିଲା ମନ ।
ଜିହ୍ୱା କାମୋଡ଼ି ଛୁଇଁଲା ଶ୍ରବଣ ।
ବୋଇଲା ତୁ ଏଡ଼େ ପାମର ମୂଢ଼ା,
କି ଭାଷା ବୋଲୁଛୁ କେଉଟ ବୁଢ଼ା ।
କେଉଟ ହୋଇ ତୋ ଏଡ଼େ ଭରସା,
ଆଉ କେବେ ତାହା ତୁଣ୍ଡେ ନ ବସା ।
ଲୋକେ ଜାଣିଲେ ତ ସହଜେ ମରି ।
ଜାତି ହରାଇବି କେମନ୍ତ କରି ॥
ବଡ଼ ଲୋକର ମୁଁ ଅଟଇ ବୋହୂ ।
କେଉଟ ହୋଇ ତୁ ଏ ଭାଷା କହୁ ॥''

ବଢ଼ି ନଈ ମଝିରେ ଦଦରା ନାବରେ ଆସନ୍ନ ମରଣର ଭୟ ଭୁଲି ରାଧିକା ଆପଣାର ମହତ୍ତ୍ୱ ରକ୍ଷା ପାଇଁ ଅନନ୍ୟୋପାୟ ହୋଇ ଅନ୍ତିମ ପ୍ରୟାସରେ ନାବିକର କୁତ୍ସିତ ରୂପ ଓ ଅଶ୍ଲୀଳ ମନୋବୃତ୍ତିକୁ ସହସ୍ର ଝିଙ୍ଗାସ କରନ୍ତେ ବୃଦ୍ଧ କୈବର୍ତ୍ତ ରୂପ ପରିହାର କରି କୋଟି କନ୍ଦର୍ପ ଜିଣା ଅପରୂପ ଲାବଣ୍ୟ ମୂର୍ତ୍ତିରେ ଉଭା ହେଲେ ନନ୍ଦନନ୍ଦନ କିଶୋର ଚନ୍ଦ୍ର ଗୋପୀନାଥ । ମୁଗ୍ଧା ଚକିତା ଶ୍ରୀରାଧାଙ୍କର ସର୍ବାଙ୍ଗରେ ସୃଷ୍ଟି ହେଲା ଅପୂର୍ବ ବେପଥୁ ଓ ଶିହରଣ । ଆତ୍ମଗ୍ଲାନିରେ ନିସ୍ତବ୍ଧା ହୋଇଯାଇ କ୍ଷଣକାଳ ନୀରବତା ପରେ କାକୁସ୍ଥ ନିବେଦନ ଜଣାଇ କହିଲେ;

''କାମସାଗରୁ ମୋତେ କର ତ୍ରାହି ।
ବେନି ପାଦଧରି ପଡ଼ିଲେ ରାଇ ।
x x x
ଉଠ ଉଠ ସଖୀ ନ ପାଅ ଲାଜ,
କୋଳରେ ଧଇଲେ ଦେବାଧିରାଜ ।''

ତପ୍ରେ ରାଧାଙ୍କୁ କୂଳରେ ପହଞ୍ଚାଇ ମନମୋହନ ବେଶରେ ଗୋପାଙ୍ଗନାମାନଙ୍କୁ ଧୂର୍ତ୍ତ ଇମଟୀ କୈବର୍ତ୍ତର କବଳରୁ ତାଙ୍କର ସୁକୁମାରୀ ମାଇଁ ରାଧିକାଙ୍କୁ ଉଦ୍ଧାର କରିଥିବା କଥା ବର୍ଣ୍ଣନ ସହିତ ସେମାନେ ତାଙ୍କୁ ଏକାକିନୀ ଏପରି ଛାଡ଼ିଦେଇ ଥିବାରୁ ସେମାନଙ୍କୁ ନାନା ଝିଙ୍ଗାସ କଲେ । ଗୋପାଙ୍ଗନାମାନେ ଆପଣାର ଅବିଚାରିତ କର୍ମ ପାଇଁ ହେଲେ ଅନୁତପ୍ତା । ସେମାନେ ନଈବଢ଼ି ହେତୁ ଗୋପପୁରକୁ ବାହୁଡ଼ି ଯିବାକୁ ଉଦ୍ୟତ ହୁଅନ୍ତେ ଗୋପୀନାଥ ଏକ ସର୍ତ୍ତରଖି ନିଜର ଗୁଣୀବିଦ୍ୟା ବଳରେ ନଦୀବଢ଼ି ଅପସାରିତ କରାଇ ଦେଲେ ଓ ଗୋପାଳୁଣୀମାନେ ଆନନ୍ଦରେ ମଥୁରା ହାଟକୁ ଯାତ୍ରାକଲେ । ଏହି ସର୍ତ୍ତାନୁସାରେ ଗୋପୀନାଥ ଷୋଳ ସହସ୍ର ରୂପ ଧାରଣ କରି ଯମୁନା ତୀରରେ ସେମାନଙ୍କ ସହିତ ରାସକ୍ରୀଡ଼ା କରିଥିଲେ । ଯମୁନା

ନଦୀରେ ଜଳବିହାରକୁ ଆଧାର କରି ପ୍ରାକୃତ ଭାଷାମାନଙ୍କରେ ବହୁ କବିତା ସୃଷ୍ଟି ହୋଇଥିଲେ ହେଁ ମୂଳ ଭାଗବତାଦି ଗ୍ରନ୍ଥରେ ଏହାର କୌଣସି ଆଭାସ ନାହିଁ । 'ପ୍ରାକୃତ ପିଙ୍ଗଳ'ରେ ଗୋଟିଏ ମର୍ମରେ ରଚିତ ପଦର ଆଭାସ ମିଳେ;

''ଆରେ ରେ ବାହିବ କାହ୍ନଣ୍ଣନାବ,
ଛୋଡ଼ି ଡଗମଗ କୁଗଇ ଣ ଦେହି ।
ତୁହଁ ଏଖନଇ ସମ୍ଭାର ଦେଇ
ଜୋ ଚାହସି ସୋ ଲେହି ।।''

''ଆରେ କାହ୍ନୁ ନାବବାହି ନିଅ, ନାବ ଟଳମଳ କରାଇ ଆମକୁ ଦୁର୍ଗତି ଦିଅନା, ତୁ ଏକ୍ଷଣି ପାରିକରି ଦେ, ଯାହା ଚାହୁଁଛୁ ତା' ନେ ।''

ଶ୍ରୀଳ ରୂପ ଗୋସ୍ୱାମୀଙ୍କ ପଦ୍ୟାବଳୀରେ ସଂକଳିତ ନୌବିହାର ସମ୍ବନ୍ଧୀୟ ବାରଗୋଟି ଶ୍ଳୋକ ମଧ୍ୟରୁ ଚାରିଗୋଟି ତାଙ୍କର ନିଜ ରଚନା । ଅନ୍ୟ ଆଠଗୋଟି ମଧ୍ୟରୁ ଦୁଇଗୋଟି ରଚନା ଅଜ୍ଞାତ କବିଙ୍କର । ଅନ୍ୟ ଛଅଗୋଟି ରଚନା କରିଥିଲେ ଜଗଦାନନ୍ଦ ରାୟ, କବିଶେଖର, ସୂର୍ଯ୍ୟଦାସ, ମନୋହର, ମୁକୁନ୍ଦ ଭଟ୍ଟାଚାର୍ଯ୍ୟ ପ୍ରମୁଖ ଷୋଡ଼ଶ ଶତାବ୍ଦୀର କବି । ପରବର୍ତ୍ତୀ କାଳରେ ଏହି ନୌବିହାରର ସୂତ୍ରଧରି ବଙ୍ଗଳା ଓ ମୈଥିଳୀ ଭାଷାରେ କେତେକ କବିତା ରଚିତ ହୋଇଥିବାର ଦେଖାଯାଏ ।

ଓଡ଼ିଶାର ସାରଳା ଦାସ ହିଁ ପ୍ରଥମେ ତାଙ୍କର ଅପ୍ରକାଶିତ ଗ୍ରନ୍ଥ 'ଭାରତ ହରିବଂଶ'ରେ ଏପରି ଗୋଟିଏ 'ନାବକେଳି' ଅଧ୍ୟାୟ ସୃଷ୍ଟି କରିଥିଲେ । କିନ୍ତୁ ଦୀନକୃଷ୍ଣଙ୍କର ପରିକଳ୍ପନାକୁ ଏହି ନାବକେଳି ପ୍ରସଙ୍ଗ ଉତ୍ସାହିତ କରିଥିଲେ ମଧ୍ୟ ଏହାର ରହିଛି ଭାବଗତ ନୂତନତା । ମଧ୍ୟଯୁଗୀୟ ବର୍ଣ୍ଣନାସୁଲଭ ଅତିରଞ୍ଜନରୁ ଏହା ମୁକ୍ତ ନ ହେଲେ ବି ଗୋପାଳ ପଲ୍ଲୀମାନଙ୍କର ଦଧିମନ୍ଥନ ବ୍ୟାପାର ଓ ସ୍ତ୍ରୀଲୋକମାନଙ୍କ ଅଳଙ୍କାର ପ୍ରିୟତା ଏଥିରେ ସଂଯତ ଭାଷାରେ ବିବୃତ । ଯମୁନା ନଦୀରେ ଅସମୟରେ ବଢ଼ିର ଦୃଶ୍ୟ ମଧ୍ୟ ଓଡ଼ିଶାର ଯେକୌଣସି ନଈର ବଢ଼ିପରି ଖୁବ୍ ଭୀତି ଉତ୍ପାଦକ । ପ୍ରବଳ ବେଗରେ ପ୍ରବାହିତ ଇଟାଳିଆ ରଂଗର ପାଣିସୁଅ, ପୁଞ୍ଜା ପୁଞ୍ଜା ଫେଣ, ଅତିକାୟ ଲହଡ଼ି, ଭାସମାନ ବଡ଼ ବଡ଼ ଗଛ ଓ ତହିଁରେ ଗର୍ଜ୍ଜନଶୀଳ ବିଷଧର ସର୍ପ, ସମୁଦ୍ର ସମାନ ନଦୀ ଗର୍ଜ୍ଜନ, ଶାଙ୍କୁଚ, ମଗର, କୁମ୍ଭୀରମାନଙ୍କର ଉଲ୍ଲସିତ ବିଳାସ, ଚକ୍ରାକୃତିରେ ଜଳଘୂର୍ଣ୍ଣି, ବାରମ୍ବାର ନଦୀକୂଳରୁ ମୃତ୍ତିକାପିଣ୍ଡମାନଙ୍କର ସ୍ଖଳନ, ପ୍ରଭୃତି ଓଡ଼ିଶାର ସମତଳ ଅଂଚଳରେ ପ୍ରବାହିତ ଯେକୌଣସି ନଦୀର ସାଧାରଣ ବଢ଼ିର ଦୃଶ୍ୟ । ଏହି ଦୃଶ୍ୟକୁ ପ୍ରକୃତିପ୍ରିୟ କବି ଦୀନକୃଷ୍ଣ ଅତି ସଯତ୍ନରେ କାବ୍ୟରୂପ ପ୍ରଦାନ କରିଛନ୍ତି । ଭଙ୍ଗା ନାବରେ କୁତ୍ସିତ ରୂପ ଧୀବରର ବଧିରତାରେ ଅଧୀରା ଅସ୍ଥିରା ବୟସଗର୍ବିଣୀ ଉଦ୍ଧତା ଗୋପାଳୁଣୀମାନଙ୍କର ତାହାପ୍ରତି ନାନା ଜିଜ୍ଞାସ ଓ ଭର୍ତ୍ସନାର

ବର୍ଣ୍ଣନା ଯେପରି ସ୍ୱାଭାବିକ ଓ ହାସ୍ୟୋଦ୍ଦୀପକ ସେହିପରି ସେମାନଙ୍କର ଧୈର୍ଯ୍ୟହୀନ ଅସ୍ଥିର ଅବସ୍ଥା ଓ ଚରମ ଅସହାୟତାକୁ ନିଖୁଣଭାବେ କରେ ପ୍ରକଟିତ । ଉର୍ଦ୍ଧନାର ଭାଷା ଅତ୍ୟନ୍ତ ଗ୍ରାମ୍ୟ, ଓ ଇତର ପ୍ରତୀତ ହେଲେ ହେଁ ପରିବେଶଟିର ସଂହତି ରକ୍ଷା ଦୃଷ୍ଟିରୁ ଏହା ଅତ୍ୟନ୍ତ ବାସ୍ତବ ଓ ସେହି ଅସ୍ଥିରା ଗୋପୀମାନଙ୍କ ମୁଖରୁ ସ୍ୱତଃ ଉଚ୍ଚାରିତ ସ୍ୱର ଅତ୍ୟନ୍ତ ଉପଭୋଗ୍ୟ ମଧ୍ୟ;

''ପଡ଼ି ନ ମଲୁରେ ଝାଡୁଆ ଗୋଟା,
କାଲ ହୋଇଲୁ କି ଆରେ କେଉଟା ।
ଡାକିଡାକି ଆମ୍ଭେ ମରୁଛୁ ଏଣେ,
ସର୍ପ ଖାଉ ତୋର ବେନି ଶ୍ରବଣେ ।
ଦଇବ ଯେମନ୍ତ ହୋଇବ ସତ,
ବୁକୁରେ ତୋ ମାଡ଼ିବସିବ ଭୂତ ।
ନାବମଙ୍ଗ ଖଣ୍ଡି ପଡ଼ିବ ଛିଡ଼ି,
ମଝି ନଈରେ ତୁ ମରିବୁ ବୁଡ଼ି ।
ଅଝାଲ ଦଉଡ଼ି ଛିଡ଼ିଣ ଯାଉ ।
ନାବ ବୁଡୁ ତୋତେ କୁମ୍ଭୀର ଖାଉ ।।''

ଷୋଡ଼ଶ-ସପ୍ତଦଶ ଶତାବ୍ଦୀର ବଙ୍ଗଳା ପଦାବଳୀ ସାହତ୍ୟରେ ଭକ୍ତକବି ଜ୍ଞାନଦାସ ଓ ବଂଶୀବଦନ ଦାସଙ୍କର 'ନାବକେଳି' ସମ୍ବନ୍ଧୀୟ କେତେକ କବିତା ଦେଖାଯାଏ । ସେଥିରେ ଶ୍ରୀକୃଷ୍ଣ ଛଦ୍ମ ନାବିକ ବେଶରେ ଘାଟ ଜଗି ସିଧାସଳଖ ଦେହ ଦାବୀ କରି ଗୋପାଳୁଣୀମାନଙ୍କୁ ନଦୀପାର କରାଇଥିବା କଥା ବର୍ଣ୍ଣିତ । ଯଥା :-

''ନାବିକ କହିଲ ଦେହ ବେତନ ମୋର,
ତବେ ହାମ ଛୋଡ଼ବ ଆଚର ତୋର ।
କହି କହି ଚୁମ୍ବଇ ରାଇ-ବୟାନ,
ପୂରଯେ ମନୋରଥ ନାଗର କାନ ।
x          x          x
ନିଜ ନିଜ ମନ୍ଦିର ସବେ ଚଲିଗେଲ ।
ବଂଶୀବଦନ ଚିତ୍ତେ ଆନନ୍ଦ ଭେଲ ।।''

ଦେଶାଚାର ଓ ସଂସ୍କାର ଅନୁସାରେ ସାହିତ୍ୟର ପ୍ରବୃତ୍ତି ନିୟନ୍ତ୍ରିତ ହୁଏ । ଉତ୍କଳୀୟ ସମାଜରେ ଏକେତ ପରକୀୟାପ୍ରୀତି ଏକ ଘୋର ଜଘନ୍ୟ ଦୁଷ୍କର୍ମ ଭାବରେ ଦଣ୍ଡନୀୟ । ଅପରନ୍ତୁ ତାହା ଅତ୍ୟନ୍ତ ଗୋପନରେ ସଂଘଟିତ ହେଲେ ସଂକେତ ସ୍ଥଳୀ ରୂପେ ନିର୍ଜ୍ଜନତା ଦୃଷ୍ଟିରୁ ନଦୀ ତଟର ନିଭୃତ ସ୍ଥାନ ହୋଇଥାଏ ନିର୍ବାଚିତ । ଆଲୋଚ୍ୟ

ପ୍ରସଙ୍ଗରେ ବ୍ୟାପାରଟିକୁ ଯମୁନାର ନିଭୃତ ପୁଳିନ ଠାରୁ ଆହୁରି ନିରାପଦ ବିବେଚନା କରି କବି ନଈବଢ଼ିଟିଏ ସୃଷ୍ଟିକରି ତା'ର ମଧ ଭାଗକୁ ନିର୍ବାଚନ କରି ନେଇଛନ୍ତି । ଅପରିଚିତ ପୁରୁଷର ନିର୍ଲ୍ଲଜ ଉଚ୍ଛୃଙ୍ଖଳ ଆବେଦନ ଓ ଦେହଦାବୀକୁ ଦୀନକୃଷ୍ଣ ଆଦୌ ସମର୍ଥନ କରିପାରି ନାହାନ୍ତି । ବଢ଼ିନଈରୁ ଉଦ୍ଧାର କରାଇବାରେ ଅଦ୍ଭୁତ ଅଲୌକିକ ଶକ୍ତି ପ୍ରଦର୍ଶନ କରି ପାରିଥିବା ଛଦ୍ମବେଶୀ ଶ୍ରୀକୃଷ୍ଣଙ୍କର ଅଭିନବ କୈଶୋର କାନ୍ତିରେ ମୁଗ୍ଧା ହୋଇ ପ୍ରଥମେ ଆତ୍ମସମର୍ପଣ କରି ଦେହଦାନ କରନ୍ତି ଶ୍ରୀରାଧା ଓ ପରେ ନଦୀ କୂଳରେ ନୀପବୃକ୍ଷ ତଳେ ଅନ୍ୟାନ୍ୟ ଗୋପାଙ୍ଗନାଗଣ । କୃଷ୍ଣ ଗୋପାଙ୍ଗନାଙ୍କର ଏହି ମିଳନ ଲୀଳା ଏକ ପରିମିତ ପରିବେଶ ମଧ୍ୟରେ ବର୍ଣ୍ଣିତ ହୋଇଥିବାବେଳେ ଏଥିରେ ଅଶ୍ଳୀଳ ଭାବ, ଅଶୋଭନୀୟ ଅଙ୍ଗଭଙ୍ଗୀ ଅଥବା ଉଚ୍ଛୃଙ୍ଖଳ ଦେହବିକାର ମାନଙ୍କର ଆଭାସ ମାତ୍ର ନାହିଁ; ସରଳ ସୁବୋଧ ଭାଷାରେ କେବଳ ଅଭିବ୍ୟକ୍ତ ହୋଇଛି ଏକ ମନୋରଂଜନଧର୍ମୀ କୌତୁକପୂର୍ଣ୍ଣ ଆଖ୍ୟାନ ।

## ୪) ଅଳଙ୍କାର ବୋଲୀ :

ଓଡ଼ିଆ ଭାଷାରେ ବୋଲୀ ରଚନାର ଧାରା ଅତି ପ୍ରାଚୀନ । ଏଥିରେ ଗୋଟିଏ ଗୋଟିଏ ଘଟଣା ବା କାହାଣୀ ପ୍ରାୟ ବର୍ଣ୍ଣିତ ହୋଇଥାଏ । ଗୋପପୁରରେ ଶ୍ରୀକୃଷ୍ଣଙ୍କର କୌତୁକ ବିଳାସମାନ ସଂକ୍ଷେପରେ ଗୋଟିଏ ଗୋଟିଏ 'ବୋଲୀ' କବିତାରେ ଦୀନକୃଷ୍ଣଙ୍କର ପୂର୍ବବର୍ତ୍ତୀ କବିମାନେ ବର୍ଣ୍ଣନା କରିଥିଲେ । କବି ମଧୁଆ ତାଙ୍କର ଖୋଷାକଟା ବୋଲୀରେ ଶ୍ରୀକୃଷ୍ଣଙ୍କୁ ମୂଷା, ମହାଦେବ ଦାସଙ୍କର କାଚବୋଲୀରେ କାଚରା, ଆଉ କେତେକ କବି ତାଙ୍କୁ ମାଳୀ, ମାର୍ଜାର ରୂପେ ଗୋପାଳୁଣୀମାନଙ୍କ ସହିତ ହଠ କରିଥିବାର କୌତୂହଳପ୍ରଦ ହାସ୍ୟ ଉତ୍ପାଦକ ବର୍ଣ୍ଣନାମାନ ଦେଖାଯାଏ । ଦୀନକୃଷ୍ଣ ଏହିସବୁ ବୋଲୀ ପାଠକରି ଥିବାର ତାଙ୍କର ଏହି ଆଲୋଚ୍ୟ ଅଳଙ୍କାର ବୋଲୀ କବିତାରୁ ଜଣାଯାଏ । ଏହି ଧାରାରେ କବି କୃଷ୍ଣଙ୍କର ଘାଟୁଆଳ ଓ ଭୂତଲୀଳା ବର୍ଣ୍ଣନା କରିସାରିବା ପରେ ଏହି କବିତାରେ ତାଙ୍କୁ ସୁନାରୀ ବେଶରେ ଉଭା କରାଇଦେଲେ ।

ଶ୍ରୀରାଧାଙ୍କ ନାମରେ ନାନା ଅପବାଦ ରଟିବାରୁ ଶାଶୁ ନଣନ୍ଦ ତାଙ୍କୁ ଯମୁନାକୁ ଯାଇ ଜଳ ଆଣିବାକୁ ନିଷେଧ କରିଦେଲେ । ତେଣୁ ବିରହାତୁର ଶ୍ରୀକୃଷ୍ଣ ସୁନାରି ବେଶରେ ନାନାବିଧ ଆକର୍ଷଣୀୟ ଅଳଙ୍କାର ସମ୍ଭାର କରି ବିକ୍ରି ନିମିତ୍ତ ଗୋପପୁରରେ ପ୍ରବେଶ କଲେ । ଅଳଙ୍କାର ଲୁବ୍ଧା ଗୋପାଳୁଣୀମାନେ ଅତି ଉତ୍ସାହରେ ତାଙ୍କୁ ବେଷ୍ଟନ କରି ନିଜ ନିଜର ପସନ୍ଦ ମୁତାବକ ବହୁ ଅଳଙ୍କାର କ୍ରୟ ପୂର୍ବକ ନିଜ ନିଜକୁ ମଣ୍ଡିତ କରି ଅଳଙ୍କାରର ମୂଲ୍ୟ ବିବେଚିତ କଉଡ଼ି ପାଇଁ ସ୍ୱ ସ୍ୱ ଗୃହକୁ ଯିବାବେଳେ ସୁନାରି ପ୍ରତାରିତ ହୋଇ ଯିବାର ଆଶଙ୍କା କରି ଅନ୍ତତଃ କୌଣସି ଜଣଙ୍କୁ ବନ୍ଧାରଖି ଯିବାକୁ ଜିଦ ଧରିଲେ । କିନ୍ତୁ ଗ୍ରାମ ସୀମାନ୍ତର ଏକ ନିଭୃତ ସ୍ଥାନରେ ଜଣେ ଅପରିଚତ

ପରଦେଶୀ ସୁନାରି ପାଖରେ ଜଣେ କୁଳବଧୂଙ୍କୁ ଏକାକିନୀ ଛାଡ଼ିଦେଇ ଯିବାର ବିପଦ ପ୍ରତି ସଚେତନ ହୋଇ ଏଥିରେ ସମ୍ମତ ନ ହେବାରୁ ସୁଚତୁର ସୁନାରି କହନ୍ତି

''ଜଣେ ବନ୍ଧାଥିଲେ ଭଲ ହୋଇବ,
ତୁମ ନ ଆସିବା ମତ ନୋହିବ ।
ସଖୀ କେହି ତ ଘେନିଯିବ ନାହିଁ,
ଆମ୍ଭେ ଘେନିତ ନ ଯିବୁ ପଳାଇ ।।'''

ଏପରି ଏକ ପ୍ରତ୍ୟୟପୂର୍ଣ୍ଣ କଥାରେ ଭରସା ରଖି ସୁନାରିର କଟାଳ ଯୋଗୁଁ ତାହା ପାଖରେ ରାଧା ସହିତ ତା'ର ଦୂତୀକୁ ବନ୍ଧାରଖି କଉଡ଼ି ପାଇଁ ନିଜ ନିଜ ଘରକୁ ଗଲେ । ଏହି ସୁଯୋଗରେ ଶ୍ରୀକୃଷ୍ଣ ସୁନାରି ବେଶ ବର୍ଜ୍ଜନ କରି ରାଧାଙ୍କୁ ନେଇ କୁଞ୍ଜବନକୁ ଚାଲିଗଲେ । ରାଧାଙ୍କ ସହିତ ବିବିଧ ବିଳାସ କ୍ରୀଡ଼ା ସମାପନାନ୍ତେ ନାନାବିଧ ମୂଲ୍ୟବାନ ଅଳଙ୍କାରରେ ତାଙ୍କୁ ଭୂଷିତ କରାଇ ଦେଇ ଅନ୍ତର୍ଦ୍ଧାନ ହେଲେ । ଗୋପୀମାନେ କଉଡ଼ି ନେଇ ସୁନାରିକୁ ଖୋଜନ୍ତେ, ଦୂତୀ ସୁନାରିର ଉଦାରତା, ବଦାନ୍ୟତାଦି ମହତ୍ ଗୁଣମାନଙ୍କର ବର୍ଣ୍ଣନ କରି କହିଲେ,

''ସେ ଗୋ ଏହି ବୃନ୍ଦାବନେ ପଶିଲେ,
ଯେତେ ଡାକିଲେ ଆଉ ନ ଆସିଲେ ।''

ଚତୁରୀ ଗୋପାଙ୍ଗନାମାନେ ରହସ୍ୟ ବୁଝିପାରି ସ୍ମିତ ହସ ହସି କୃଷ୍ଣ ଗୁଣ ସ୍ମରଣ କଲେ ।

ନାରୀମାନଙ୍କର ସର୍ବଦେଶୀୟ ଓ ସର୍ବକାଳୀନ ଅଳଙ୍କାର ପ୍ରିୟତାଜନିତ ଦୁର୍ବଳତାର ପୃଷ୍ଠଭୂମି ଉପରେ ଏହି ଘଟଣାଟି କଳ୍ପିତ ହୋଇଅଛି । ଆମୋଦ-ପ୍ରମୋଦ ପାଇଁ କୌଣସି ପ୍ରକାର ସାଧନ ବା ସୁଯୋଗ ନଥିବା ଯୁଗରେ ଘଟଣା ବିହୀନ ଗତାନୁଗତିକ ସରଳ ସାମାଜିକ ଜୀବନରେ ନାଟକୀୟ ରୀତିରେ ବାକ୍‌ଚାତୁରୀ ମାଧ୍ୟମରେ ଏପରି ଗୋଟିଏ ଗୋଟିଏ କବିତାର ପୌନପୁନିକ ଆବୃତ୍ତି ସେ ଯୁଗରେ ଅବଶ୍ୟ ଏକ ଉତ୍କଣ୍ଠାପୂର୍ଣ୍ଣ ଉତ୍ତମ ଉପଭୋଗର ସାମଗ୍ରୀ ହୋଇ ପାରିଥିବ । ତେଣୁ ଏହା ଅଦ୍ୟାବଧି ଏ ଦେଶର ପୁରାତନ ସାହିତ୍ୟ ସାମଗ୍ରୀ ଭିତରେ ବଞ୍ଚି ରହିବାର ଯୋଗ୍ୟତା ବହନ କରି ଆସିଅଛି ।

## ୫) ପ୍ରସ୍ତାବ ସିନ୍ଧୁ :

ଓଡ଼ିଆ ପରି ବିକାଶୋନ୍ମୁଖୀ ଏକ ଦେଶୀ ଭାଷାକୁ ବିଭିନ୍ନ ଉପାଦାନରେ ସମୃଦ୍ଧ କରାଇ ଏହାକୁ ପଠନୋପଯୋଗୀ ଏକ ଭାଷା ଭାବରେ ବା ଶିକ୍ଷାଦାନର ଯୋଗ୍ୟ ଏକ ଭାଷାଭାବରେ ପରିପୁଷ୍ଟ କରାଇବା ପାଇଁ କବି ଦୀନକୃଷ୍ଣଙ୍କର ସର୍ବତୋମୁଖୀ ଉଦ୍ୟମକୁ ସୂଚିତ କରାନ୍ତି କେତେକ ଅମୂଲ୍ୟ ଗ୍ରନ୍ଥ । ଆଜିର

ପରିପ୍ରେକ୍ଷୀରେ ସେହି ଉଦ୍ୟମ ଆପାତତଃ ସାଧାରଣ ବା ନଗନ୍ୟ ପ୍ରତୀତ ହେଉଥିଲେ ହେଁ ତତ୍କାଳୀନ ପରିପ୍ରେକ୍ଷୀରେ ତାଙ୍କର ଆନ୍ତରିକତା ପୂର୍ଣ୍ଣ ସଯତ୍ନ ପ୍ରୟାସକୁ ବିଚାର କଲେ ତାଙ୍କର ସୁଦୂର ପ୍ରସାରୀ ଦୃଷ୍ଟିଭଙ୍ଗୀ, ଅଧ୍ୟବସାୟ ଓ ନିଷ୍କପଟ ନିଷ୍ଠା ତାଙ୍କୁ ଏ ଦେଶର ସଂସ୍କୃତି ସଂରଚନା ଓ ସାହିତ୍ୟ ସୃଷ୍ଟି କ୍ଷେତ୍ରରେ ସ୍ୱତନ୍ତ୍ର ଜଣେ କର୍ମଠ କବି ପୁରୁଷ ଭାବରେ ଉଦ୍ଭାସିତ କରାଇଦିଏ । ଧର୍ମଶାସ୍ତ୍ର, ନୀତିଶାସ୍ତ୍ର, ଆଚାରଶାସ୍ତ୍ର, ଅର୍ଥଶାସ୍ତ୍ର ପ୍ରଭୃତିର ସାରତତ୍ତ୍ୱମାନ ଆହରଣ କରି ବିବିଧ ଆକର୍ଷଣୀୟ ଗଳ୍ପ ବା ଗାଥା ମାଧ୍ୟମରେ ଛନ୍ଦୋବଦ୍ଧ ରଚନା କରିବାରେ ସେ ତାଙ୍କର କବି ଜୀବନର ବହୁଭାଗ ବିନିଯୋଗ କରିଛନ୍ତି । ତାଙ୍କର ଏହିସବୁ ଗ୍ରନ୍ଥ ଉତ୍ତମ ସାମାଜିକ ଜୀବନକୁ ସଂସ୍କୃତି ସଂପନ୍ନ କରାଇବା ପାଇଁ ଅଭିପ୍ରେତ । ଏହା ଜିଜ୍ଞାସାପ୍ରବଣ ତରୁଣ ମାନସରେ ଉତ୍କଣ୍ଠା ଓ କୌତୁହଳ ସଂଚାର କରାଏ ଏବଂ ଜ୍ଞାନପିପାସାକୁ ତୀବ୍ରତର କରାଏ । ଅଭିରୁଚିକୁ ମାର୍ଜିତ କରାଇ ଉତ୍ତମ ବ୍ୟକ୍ତିତ୍ୱ ନିର୍ମାଣରେ ସର୍ବାଧିକ ଭାବେ ସହାୟକ ହୁଏ । ଅତିରଂଜିତ ବର୍ଣ୍ଣନା ବା କଳ୍ପନା ବିଳାସରୁ ମୁକ୍ତ, ଅଳଙ୍କାର ସଂଭାର ରହିତ ସରଳ ସ୍ୱଚ୍ଛନ୍ଦ ରୀତିରେ ବାସ୍ତବ ବ୍ୟାବହାରିକ ଜୀବନାଭିମୁଖୀ ହେବା ସହିତ ନିବିଡ଼ ଭାବରେ ସଂଶ୍ଳିଷ୍ଟ ଏହି ଗ୍ରନ୍ଥମାନଙ୍କର ପଦଗୁଡ଼ିକ ଗୋଟିଏ ଗୋଟିଏ ଅମୂଲ୍ୟ ସୂକ୍ତି ବଚନ ପରି ସ୍ମରଣଯୋଗ୍ୟ । ତେଣୁ ଏସବୁ ଗ୍ରନ୍ଥ ଏ ଦେଶର ଶିକ୍ଷିତ ସମାଜରେ ଲାଭକରି ଆସିଛି ବ୍ୟାପକ ଆଦୃତି । ପ୍ରସ୍ତାବ ସିନ୍ଧୁ ଏହିପରି ଏକ ଗ୍ରନ୍ଥ, ଯହିଁରେ ବଶିଷ୍ଠ-ଦଶରଥଙ୍କ ପରି ଗୁରୁଶିଷ୍ୟଙ୍କ ସଂବାଦ ବା ପ୍ରସ୍ତାବ ରୀତିରେ ପରିବେଷିତ ।

ଗୋଟିଏ ଗୋଟିଏ ନୀତି ବଚନକୁ ଦୃଷ୍ଟାନ୍ତ ବା ପ୍ରସ୍ତାବରୂପୀ କାହାଣୀମାନଙ୍କର ମାଧ୍ୟମରେ ଶିକ୍ଷାଦାନ କରାଯାଇଅଛି । ବାନର ମକର କଥା, ମର୍କଟ ରତ୍ନହାର କଥା ପରି କେତେକ ଗଳ୍ପମାନଙ୍କୁ ସଂସ୍କୃତ ସାହିତ୍ୟରୁ ଆହରଣ କରି ନିଜସ୍ୱ ଭଂଗୀରେ ପରିବେଷଣ କରିଥିବା ବେଳେ ଚନ୍ଦ୍ରାବତୀ ରାଣୀ-ଭଣ୍ଡ ସନ୍ନ୍ୟାସୀ, ଅସାଧୁ ବଣିକ ପ୍ରଭୃତି କେତେକ ଗଳ୍ପ ସେ ଲୋକମୁଖରୁ ଆହରଣ କରିଥିବା ପରି ମନେହୁଏ । କେତେକ ନୀତିଶ୍ଳୋକକୁ ଉପସ୍ଥାପନ କରି ତା'ର ସରଳ ଅନୁବାଦ ମଧ୍ୟ କରି ଦେଇଛନ୍ତି । ଏହା ତାଙ୍କର ସଂସ୍କୃତ ଭାଷାରେ ଉତ୍ତମ ଦକ୍ଷତା ଓ ଓଡ଼ିଆ ଭାଷାରେ ରଚନା ସାମର୍ଥ୍ୟର ପରିଚୟ ଦିଏ । ଚଳିତ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଓଡ଼ିଶାର ପାରଂପରିକ ଚାଟଶାଳୀମାନଙ୍କରେ ଏହା ପାଠ୍ୟପୁସ୍ତକ ରୂପେ ପ୍ରଚଳିତ ହୋଇ ଆସିଅଛି, ଏବଂ ବହୁ ଶିକ୍ଷିତ ବା ଅଶିକ୍ଷିତ ଲୋକଙ୍କ ମୁଖରୁ ମଧ୍ୟ ପ୍ରସ୍ତାବସିନ୍ଧୁର ଗଳ୍ପମାନଙ୍କ ସହିତ ନୀତିଶ୍ଳୋକମାନ ଅଦ୍ୟାବଧି ଶୁଣାଯାଏ ।

## ୬) ଧର୍ମସାଗର :

ପୁରାତନ କେତେକ ପୋଥିରେ ଏହି ଗ୍ରନ୍ଥର ନାମ 'ଧର୍ମସାଗର' ଥିବାବେଳେ ଅନ୍ୟ କେତେକରେ ଏହା ଧର୍ମପୁରାଣ ନାମରେ ମଧ୍ୟ ନାମିତ । ଭାରତବର୍ଷରେ

ଯୁଗଯୁଗ ଧରି ଧର୍ମ ଯେଉଁ ବ୍ୟାପକ ଅର୍ଥରେ ପ୍ରଚଳିତ, ସେହି ଅର୍ଥରେ କର୍ତ୍ତବ୍ୟବୋଧ ଓ ନୈତିକ ଶିକ୍ଷା ଦେବା ପାଇଁ କବି ଏହି ଗ୍ରନ୍ଥ ରଚନା କରିଛନ୍ତି । ପୁରାଣର ପ୍ରଗଳ୍ଭ ରୀତିରେ ବିଂଶାକ୍ଷରୀ ପଦମାନଙ୍କଠାରେ ସମଗ୍ର ଗ୍ରନ୍ଥଟି ରଚିତ ହୋଇଥିବାରୁ ବୋଧହୁଏ କେତେକ ଲେଖନକାର ଏହାକୁ 'ଧର୍ମପୁରାଣ' ନାମରେ ଅଭିହିତ କରିଥିଲେ । ଭାରତର ସ୍ମୃତିଗ୍ରନ୍ଥ ଓ ଧର୍ମଶାସ୍ତ୍ରମାନଙ୍କରେ ମନୁଷ୍ୟକୁ କର୍ତ୍ତବ୍ୟାକର୍ତ୍ତବ୍ୟର ବିବିଧ ଓ ବିପୁଳ ଶିକ୍ଷାଦାନର ପ୍ରୟାସ କରାହୋଇ ଆସିଅଛି । କବି ଦୀନକୃଷ୍ଣ ଏହିସବୁ ଶାସ୍ତ୍ରମାନଙ୍କୁ ଅଧ୍ୟୟନ କରି ନୀତିତତ୍ତ୍ୱମାନଙ୍କୁ ଆୟତ୍ତ କରି ପାରିଥିଲେ । କିନ୍ତୁ ସାଧାରଣ ଲୋକଙ୍କ ପକ୍ଷେ ଏହି ଶୁଷ୍କ ନୀରସ ନୀତିଚର୍ଚ୍ଚାର କୌଣସି ପ୍ରଭାବ ଅନୁଭବ କରି ନପାରି ସେ କେତେକ କାହାଣୀ ମାଧ୍ୟମରେ ଲୋକଙ୍କୁ ନୀତିଶିକ୍ଷା ପ୍ରତି ଆକୃଷ୍ଟ କରିବା ପାଇଁ ଏହି ଗ୍ରନ୍ଥର ପରିକଳ୍ପନା କରିଛନ୍ତି ।

ଅନାବୃଷ୍ଟି ହେତୁ ଦେଶରେ ଦୁର୍ଭିକ୍ଷର କରାଳ ପରିସ୍ଥିତିରେ ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞପାଇଁ ଶ୍ରୀକୃଷ୍ଣଙ୍କ ଅନୁରୋଧରେ କୃପଣ ଧନପତି କୁବେର ଭୀମଙ୍କ ମାରଫତରେ ଧାନ ଋଣ ଦାନ, 'ବିହାଇ ମାଇପ ସଜା' ନ୍ୟାୟର ବିଶ୍ଳେଷଣ କ୍ରମେ ବେଙ୍ଗବତୀ-ମନ୍ଦୋଦରୀ କନ୍ୟାପାଇଁ ବାଳୀ-ରାବଣଙ୍କର ଦ୍ୱନ୍ଦ୍ୱ ଏବଂ ଅଙ୍ଗଦ ଜନ୍ମ ବୃତ୍ତାନ୍ତ, ରାଜସୂୟ ଯଜ୍ଞରେ କର୍ଣ୍ଣ-ଦୁର୍ଯ୍ୟୋଧନଙ୍କର ଈର୍ଷାର ପରିଣାମ ସ୍ୱରୂପ ଅପମାନ ଓ ଗ୍ଲାନି, ପ୍ରଭୃତି କେତେଗୋଟି ଗଳ୍ପମାନଙ୍କର ଅବତାରଣାକ୍ରମେ ବହୁ ନୀତିକଥା ଓ ଉପଦେଶ ବଚନମାନଙ୍କର ସମାବେଶ ଏହି ଗ୍ରନ୍ଥକୁ ପ୍ରକୃତରେ ଏକ ଧର୍ମଗ୍ରନ୍ଥର ଗାମ୍ଭୀର୍ଯ୍ୟ ଦାନ କରିଅଛି । ସମାଜରେ ବିଭିନ୍ନ ଲୋକଙ୍କର ଧର୍ମ ବା କର୍ତ୍ତବ୍ୟ-ନୀତି ସମ୍ବନ୍ଧରେ ଗଳ୍ପ ମାଧ୍ୟମରେ ବିସ୍ତାରିତ ବ୍ୟାଖ୍ୟାମାନ କରାଯାଇ ଥିବା ହେତୁ ଏବଂ ଧର୍ମ ନାମରେ ଚଳୁଥିବା ଅନୀତି ଅଧର୍ମ ଠାରୁ ପ୍ରକୃତ କର୍ତ୍ତବ୍ୟବୋଧ ଓ ନୀତିଗୁଡ଼ିକୁ ସ୍ୱତନ୍ତ୍ର କରାଇ ଦେଇଥିବା ହେତୁ ଏହି ଗ୍ରନ୍ଥର ଏପରି ନାମକରଣ କରାଯାଇଅଛି ।

ସମାଜରେ ବୈଶ୍ୟ-କୁବେରଙ୍କର ମହନୀୟ କାର୍ଯ୍ୟ ପାଇଁ ଉତ୍ସର୍ଗ ଭାବନା ଥିବାବେଳେ ଉଚ୍ଚକୁଳ ଜାତ ପ୍ରତିପତ୍ତିଶାଳୀ ଲୋକେ ବେଳେବେଳେ ମହତ୍ କାର୍ଯ୍ୟରେ ବିଘ୍ନ ସୃଷ୍ଟି କରିବାକୁ ଷଡଯନ୍ତ୍ର କରି କିପରି ବିଫଳ ଓ ଅପମାନିତ ହୋଇଥାନ୍ତି ତାର ଏକ ଚିତ୍ର ମଧ୍ୟ ଏହି କାହାଣୀରୁ ମିଳିଥାଏ । କୀର୍ତ୍ତି ବିଦ୍ୱେଷୀ କର୍ଣ୍ଣ ଓ ଦୁର୍ଯ୍ୟୋଧନ ଯୁଧିଷ୍ଠିରଙ୍କ ଯଜ୍ଞର ସାଫଲ୍ୟରେ ଈର୍ଷା ପରାୟଣ ହୋଇ ବିଘ୍ନ ଘଟାଇବା ଲକ୍ଷ୍ୟରେ ଭଣ୍ଡାର ଗୃହରେ କୃତ୍ରିମ ଅଭାବ ସୃଷ୍ଟି କରି ଦାନ କାର୍ଯ୍ୟକୁ ବିଡ଼ମ୍ବିତ କରାଇବାର ପ୍ରୟାସ କରିଥାନ୍ତି । ଏମାନଙ୍କର ଏହି ମନୋଭାବ କଥା ଜାଣିପାରି ଦୁର୍ଯ୍ୟୋଧନକୁ ହିଁ ଭାଣ୍ଡାଗାରିକର ଦାୟିତ୍ୱ ଦିଅନ୍ତି ଶ୍ରୀକୃଷ୍ଣ । ଭଣ୍ଡାର ଦ୍ରବ୍ୟକୁ ଅପଚୟ କରାଇ ଶେଷରେ ସବୁ ପଦାର୍ଥ ଅଭାବ ବୋଲି ପ୍ରଚାର କରିବା ଅଭିପ୍ରାୟରେ ଥିବାବେଳେ ସେହି ଭଣ୍ଡାର ସଦାପୂର୍ଣ୍ଣ ରହିଥିଲା, ଅଥଚ ଦୁର୍ଯ୍ୟୋଧନଙ୍କର ଦାନ ଦେବାରେ ଅପଚୟ ପ୍ରୟାସ

ଯୋଗୁଁ ଦାନ ଗ୍ରହୀତାମାନଙ୍କର ପୂର୍ଣ୍ଣସନ୍ତୋଷ ବିଧାନ ସମ୍ଭବ ହୋଇ ପୁଣ୍ୟାର୍ଜ୍ଜନରେ ସହାୟକ ହୋଇଥିଲା । ଏହି ସମୟରେ କର୍ଣ୍ଣ ଆସି ଏକଶତ ରଥପୂର୍ଣ୍ଣ ସ୍ୱର୍ଣ୍ଣ ଦାନଭିକ୍ଷା ଲାଭ ପାଇଁ କଟାକ୍ଷ କରନ୍ତେ ଯୁଧିଷ୍ଠିରଦେବ ଚିନ୍ତିତ ହୋଇ ପଡ଼ିଲେ । କିନ୍ତୁ ଭଣ୍ଡାର ଘରେ ଯାହାଥିବ ତାହା ସବୁ ସଂଗ୍ରହ କରିଆଣି ଦେବାକୁ ଶ୍ରୀକୃଷ୍ଣ ଦୁର୍ଯ୍ୟୋଧନଙ୍କୁ ଅନୁରୋଧ କରନ୍ତେ, ଦୁର୍ଯ୍ୟୋଧନ ସେହି ଗୃହର ଅନ୍ଧକାରାଚ୍ଛନ୍ନ ଗୃହର ନିମ୍ନାଂଶରେ ହାତ ବୁଲାଇ ଆଣନ୍ତେ ସେଠାରେ ଥିବା ବଡ଼ବଡ଼ ପଥର ଖଣ୍ଡଗୁଡ଼ିକ ସୁବର୍ଣ୍ଣରେ ପରିଣତ ହୋଇ ଝଲସି ଉଠିଲେ । ସେସବୁକୁ କର୍ଣ୍ଣଙ୍କୁ ଦାନ କରାଯିବା ଦ୍ୱାରା କର୍ଣ୍ଣ ନିଜକୁ ପରାସ୍ତ ମନେକରି ଲଜ୍ଜିତ ଅନୁଭବ କଲେ ଏବଂ ଦୁର୍ଯ୍ୟୋଧନ ମଧ୍ୟ ଏହି ଷଡ଼ଯନ୍ତ୍ରରେ ସଂପୃକ୍ତ ଥିବା ହେତୁ ଲଜ୍ଜିତ ହେଲେ । କାରଣ ଦୁର୍ଯ୍ୟୋଧନଙ୍କର ସ୍ପର୍ଶରେ ମୃତ୍ତିକା ପ୍ରସ୍ତରାଦି ସୁବର୍ଣ୍ଣ ହୋଇଯିବାର ମହତ୍ତ୍ୱ ସମ୍ବନ୍ଧରେ ଶ୍ରୀକୃଷ୍ଣ ପୂର୍ଣ୍ଣ ଅବଗତ ଥିଲେ । ତେଣୁ ମହତ କାର୍ଯ୍ୟରେ ବିଘ୍ନ ଘଟାଇବାର ପ୍ରୟାସ କରୁଥିବା ଲୋକେ କିପରି ଅପମାନିତ ଓ ଲଜ୍ଜିତ ହୁଅନ୍ତି ତାହା ଏହି ଘଟଣା ମାଧ୍ୟମରେ ଚେତେଇ ଦିଆଯାଇଅଛି । ଏତଦ୍‌ବ୍ୟତୀତ କର୍ତ୍ତବ୍ୟ ଚେତନା, ଧର୍ମନୀତି, ସମାଜନୀତି, ରାଜନୀତି, ଅର୍ଥନୀତି ସମ୍ବନ୍ଧୀୟ ଅମୂଲ୍ୟ ନୀତି ନିୟମ ଓ ମୂଲ୍ୟବୋଧ ପ୍ରତିଷ୍ଠା-ସହାୟକ ଏହିସବୁ ଗଳ୍ପଗୁଡ଼ିକ ସଂସ୍କୃତ ସାହିତ୍ୟର ଅଦ୍ୟାବଧି ଜ୍ଞାତ କୌଣସି ଗ୍ରନ୍ଥରେ ଥିବାର ଦେଖାଯାଏ ନାହିଁ । ମହାଭାରତରେ ରାଜସୂୟ ଯଜ୍ଞ କଥା ଥିଲେ ମଧ୍ୟ ଧାନ ଋଣ ପ୍ରସଂଗ ନାହିଁ; ଓଡ଼ିଶାର ଶାରଳା ମହାଭାରତାଦି କୌଣସି ଗ୍ରନ୍ଥରେ ମଧ୍ୟ ଦେଖାଯାଏ ନାହିଁ । ଏହା ଓଡ଼ିଶାର ଲୋକ ଶ୍ରୁତିରୁ ଗୃହୀତ ଅଥବା ଦୀନକୃଷ୍ଣଙ୍କର ସ୍ୱପରିକଳ୍ପିତ କାହାଣୀ, ତାହା କେବଳ ତାଙ୍କୁ ହିଁ ଜଣା । କିନ୍ତୁ ଏକ ମହତ୍ କାର୍ଯ୍ୟ ପାଇଁ **ସଂଚିତ** ଧନର ଉପଯୋଗ ବେଳେ କୁତ୍ସିତ କୃପଣ ଧନପତି ଯକ୍ଷରାଜ କୁବେରଙ୍କର ନିର୍ଲୋଭ, ଅକୁଣ୍ଠିତ ବଦାନ୍ୟତା ଉତ୍କଳୀୟ ସମାଜଧର୍ମ ଓ ମାନସିକତାକୁ ହିଁ ଉଦ୍‌ଘାଟିତ କରାଇ ଦେଇଥାଏ ।

ଉତ୍କଳର ପ୍ରାଚୀନ କୃଷି ଅର୍ଥନୀତିରେ ଧାନର ବିଶେଷ ଭୂମିକା, ଋଣ କାରବାରରେ ମହାଜନ-ଖାତକ ସଂବନ୍ଧ ଓ ଋଣନୀତି ପ୍ରଭୃତି ଯେପରି ଏଥିରେ ବର୍ଣ୍ଣିତ ତହିଁରୁ ମନେହୁଏ କବି ଦୀନକୃଷ୍ଣ ସତେ ଯେପରି ଆଧୁନିକ ବ୍ୟାଙ୍କିଙ୍ଗ ବିଦ୍ୟା ଓ ଋଣଦାନ ସଂବନ୍ଧୀୟ ନୀତି ନିୟମ ସମ୍ବନ୍ଧରେ ଯଥେଷ୍ଟ ଅଭିଜ୍ଞ ଥିଲେ । ମଣିମାଣିକ୍ୟ ଖଚିତ ବିରାଟ ଏକ ସୌନ୍ଦର୍ଯ୍ୟ ମଣ୍ଡିତ ପ୍ରାସାଦପୂର୍ଣ୍ଣ ପୁର ମଧ୍ୟରେ କର୍ଦ୍ଦମାକ୍ତ ସ୍ଥାନମାନଙ୍କରେ ପଡ଼ି ଯାଇଥିବା ଧାନଟିମାନଙ୍କୁ ବସି ସଂଗ୍ରହ କରୁଥିବା ଅର୍ଦ୍ଧନଗ୍ନ କୁତ୍ସିତ ରୂପ ଲୋକଟିକୁ ଭୀମ କୁବେରଙ୍କ ସମ୍ବନ୍ଧରେ ପଚାରନ୍ତେ ସେ ନିଜେ ଧନପତି କୁବେର ବୋଲି ପରିଚୟ ଦେବାରୁ ଭୀମ ଯେତିକି ଆଶ୍ଚର୍ଯ୍ୟ ଚକିତ ହେଲେ, ତାହାର ଧନ ଲୋଲୁପତା ପ୍ରତି ମଧ୍ୟ ତଦପେକ୍ଷା ଅଧିକ ଘୃଣା ଜର୍ଜ୍ଜରିତ ହୋଇ ନିଜର ଆଗମନକୁ ବ୍ୟର୍ଥ ଜ୍ଞାନ କଲେ ।

ତଥାପି ଭୀମ ନିଜ ଦେଶର ପରିସ୍ଥିତିର ଭୟାବହତା ଦୃଷ୍ଟିରୁ ସେ ଧାନ ଋଣ ନେବାପାଇଁ ଆସି ଥିବାର ପ୍ରକାଶ କଲେ । କିନ୍ତୁ କୁବେର ମହାଜନୀ ଋଣ କାରବାର ପଦ୍ଧତି ଓ ଋଣ ପରିଶୋଧ ସର୍ତ୍ତ, ସୁଧ ହାର ପ୍ରଭୃତିର ବିସ୍ତୃତ ବ୍ୟାଖ୍ୟାନ କରିବା ସତ୍ତ୍ୱେ ଭୀମ ଏସବୁର ନିର୍ଦ୍ଦିଷ୍ଟ ଭାବରେ କୌଣସି ସର୍ତ୍ତ ବା ସୁଧହାର ସମ୍ବନ୍ଧରେ ପ୍ରତିଶ୍ରୁତି ଦେଇ ନପାରି ସେ ଜଗନ୍ନାଥ-ଶ୍ରୀକୃଷ୍ଣଙ୍କର ନିର୍ଦ୍ଦେଶରେ ଆସିଥିବାର କଥା ବ୍ୟକ୍ତ କଲେ । ତେଣୁ କୁବେର ତାଙ୍କୁ ଧାନ ନଦେଇ ଜଗନ୍ନାଥଙ୍କୁ ଡାକି ଦେବାକୁ ରୋକଠୋକ ବତାଇ ଦେଲେ । ଅନନ୍ୟୋପାୟ ଭୀମ ବିରକ୍ତି ପ୍ରକାଶ କରି ଫେରି ଆସି କୃଷ୍ଣ-ଜଗନ୍ନାଥ ଓ ଯୁଧିଷ୍ଠିରଙ୍କ ଠାରେ ଏହି କୁତ୍ସିତ କୃପଣ ବ୍ୟକ୍ତିର ରୂପ, ବେଶଭୂଷା, ଧାନ ସଂଗ୍ରହ ଓ ସଂଚୟର ଇତର ଲାଳସା ଏବଂ କଳନ୍ତର ପାଇଁ ଦୃଢ଼ତା କଥା ବର୍ଣ୍ଣନା କରି କୃଷ୍ଣ-ଜଗନ୍ନାଥ ନିଜେ ଯାଇ ସେ ସବୁର ସର୍ତ୍ତ ସମାଧାନ କରିବା ପରେ ହିଁ ତାହାଠାରୁ ଧାନ ଆସିପାରିବ ବୋଲି ଜଣାଇଦେଲେ । ଧନପତି କୁବେରର ଋଣଦାନ ନୀତିର ଯଥାର୍ଥତା ଅନୁଭବ କରି ଅନନ୍ୟୋପାୟ ହୋଇ ସ୍ୱୟଂ ଜଗନ୍ନାଥ ସେଠାକୁ ଯାଇ ରାଜ୍ୟରେ ଦୁର୍ଭିକ୍ଷଜନିତ ଲୋକଙ୍କର ଦୁରବସ୍ଥା, ଯଜ୍ଞ ପାଇଁ ଧାନର ବିଶେଷ ଆବଶ୍ୟକତା ପ୍ରଭୃତି ଜଣାଇବା ସହିତ କଳନ୍ତର ହାର ଓ ପରିଶୋଧର ସମୟ ପ୍ରଭୃତି ନିର୍ଦ୍ଧାରିତ ହେବା ପରେ କୁବେର ପ୍ରତ୍ୟୟ ପୋଷଣ କରି ଲକ୍ଷେ ଭରଣ ଧାନ କରଜ ଦେବାକୁ ସମ୍ମତ ହେଲେ । ତତ୍‌ସହିତ ଯଜ୍ଞ ପାଇଁ ଅନ୍ୟାନ୍ୟ ଆବଶ୍ୟକୀୟ ସାମଗ୍ରୀମାନ ଯେକୌଣସି ଅସମୟରେ ଆବଶ୍ୟକତାନୁସାରେ ଦେବାପାଇଁ ରାତ୍ରଦିନ ଦ୍ୱାର ମୁକ୍ତ ରଖିବାକୁ ଶ୍ରୀକୃଷ୍ଣ ତାଙ୍କୁ ନିବେଦନ କରି ଆସିଲେ । ଓଡ଼ିଶାରେ ମୌସୁମୀ ବାୟୁ ପ୍ରବାହର ଅନିଶ୍ଚୟତା ହେତୁ ବାରମ୍ବାର ଅନାବୃଷ୍ଟି ଓ ଦୁର୍ଭିକ୍ଷଜନିତ ଖାଦ୍ୟାଭାବର ଚିତ୍ର ଏଥିରେ ଯେପରି ପ୍ରତିଫଳିତ ସେହିପରି ବିଭିନ୍ନ ସାମାଜିକ ଉତ୍ସବାନୁଷ୍ଠାନ ବେଳେ ବ୍ୟବସାୟୀ ଦୋକାନୀମାନଙ୍କ ସହିତ ସର୍ତ୍ତାଦି ନିର୍ଦ୍ଧାରଣର ଚିତ୍ର ମଧ୍ୟ ଏଥିରେ ପ୍ରତିବିମ୍ବିତ । ଏହି ସବୁ ଚିରାଚରିତ ସାଧାରଣ ବ୍ୟବସ୍ଥା ମଧ୍ୟରେ ଆହୁରି ଏକ ଅସାଧାରଣ ଚିତ୍ରଟିଏ ବର୍ଣ୍ଣିତ ଯାହାକି ମହତ୍ କାର୍ଯ୍ୟରେ ସିଦ୍ଧି ପାଇଁ ଯେକୌସି ମୂଲ୍ୟ ଦେବାକୁ ଦୁଃସାହସର ସହିତ ଅଗ୍ରଗତି କରିଯିବା ପରି ଉତ୍କଳୀୟ ମନୋଭାବଟି ପରୋକ୍ଷ ଭାବରେ ହୋଇଛି ପ୍ରକଟିତ ।

ଋଣ ପରିଶୋଧର ସର୍ତ୍ତାବଳୀ ଶ୍ରୀକୃଷ୍ଣ ନିର୍ଦ୍ଧାରିତ କରିଦେଇ ଯିବା ପରେ ଧନପତି କୁବେର ନିଜେ କାଠି ଗୌଣୀ ଧରି ଲକ୍ଷେ ଭରଣ ଧାନ ଶତ ଶତ ଶକଟରେ ବୋଝେଇ କରାଇ ମାର୍ଗ ପ୍ରଦର୍ଶନ କରିବାକୁ ଭୀମକୁ ସର୍ବାଗ୍ରେ ପ୍ରେରଣ କରିଦେଲେ । କିନ୍ତୁ କିଛିଦୂର ପରେ ପଥ ମଧ୍ୟରେ ଅର୍ଦ୍ଧଶୁଷ୍କ ଏକ ପ୍ରଶସ୍ତ ଗଭୀର ପଙ୍କୁଆ ନଦୀ ନିକଟରେ ଶକଟମାନ ଅବରୁଦ୍ଧ ହୋଇଯିବାରୁ କୁବେରପୁର ଠାରୁ ଶକଟମାନ ଚଳି ନପାରି ମଧ୍ୟ ପଥ ଅବରୁଦ୍ଧ ହେଲା । ଏପରି ଏକ ପରିସ୍ଥିତି ବିଷୟରେ ଭୀମ ଆସି

କୁବେରକୁ ଜଣାଇବାରୁ କୁବେର କିଛିକ୍ଷଣ ଚିନ୍ତାକରି ନଦୀର ଗଭୀରତା ଯେତେ ହେଉ ମଧ ଦୁଇଲକ୍ଷ ଭରଣ ଧାନ ସାହାଯ୍ୟରେ ପଙ୍କୁଆ ନଦୀ ପୋତି ତାହା ଉପରେ ଧାନବାହୀ ଶକଟମାନଙ୍କ ପାଇଁ ପ୍ରଥମେ ଏକ ରାସ୍ତା ନିର୍ମାଣ କରାଇ ତାହା ଉପରେ ଶକଟ ଚଳାଇ ନେବାକୁ କୁବେର ଆଦେଶ ଦେଲେ । କୃପଣ କୁବେରଙ୍କର ଏହି ଆଦେଶରେ ଭୀମ ବିସ୍ମୟରେ ସ୍ତମ୍ଭୀଭୂତ ହୋଇ ଅବିଳମ୍ବେ ତାହା ହିଁ କଲା ଓ ଧାନ ଶକଟମାନ ସ୍ୱଚ୍ଛନ୍ଦରେ ଲକ୍ଷେ ଭରଣ ଧାନ ବୋହିନେଇ ଯୁଧିଷ୍ଠିରଙ୍କ ରାଜ୍ୟରେ ଯଥା ସମୟରେ ପହଞ୍ଚି ପାରିବାରୁ ଦୁର୍ଭିକ୍ଷଜନିତ ଅବସ୍ଥା ମଧ ଆୟାତ୍ତାଧୀନ ହେଲା ।

ଧାନ ଖୁଣ୍ଟି ଖୁଣ୍ଟି ସଂଗ୍ରହ ଓ ସଂଚୟ କରୁଥିବା କଳନ୍ତର ଲୋଭୀ କନିଷ୍ଠ ଜାତିର କୃପଣ କୁବେର ଲକ୍ଷେ ଭରଣ ଋଣ ଦେବାକୁ ଯାଇ, ଅକୃପଣ ଚିତ୍ତରେ ଦୁଇଲକ୍ଷ ଭରଣ ଧାନ ନଷ୍ଟକରି ପଙ୍କୁଆ ନଦୀରେ ରାସ୍ତା ନିର୍ମାଣ କରାଇ ଏକ ମହତ କାର୍ଯ୍ୟକୁ ସାଫଲ୍ୟମଣ୍ଡିତ କରିବାର ଭାବନା ଭିତରେ ସତେ ଯେପରି ଏ ଦେଶର ଧନପତିମାନଙ୍କର ଅତୁଳନୀୟ ଉଦାର ହୃଦୟବତ୍ତା ପ୍ରତିଫଳିତ । ଧନଲୋଭୀ ଅନ୍ୟମାନଙ୍କ ପାଇଁ ଏହା ମଧ ଏକ ଉତ୍କୃଷ୍ଟ ଶିକ୍ଷଣୀୟ ପ୍ରସଙ୍ଗ ।

ଏହି ଗ୍ରନ୍ଥର ଗଚ୍ଛାଂଶ ସହିତ ପ୍ରାସଙ୍ଗିକ ଭାବେ କବି ପରିମଳତତ୍ତ୍ୱ, ସତ୍ୟର ମହତ୍ତ୍ୱ, ଦାନ ମହତ୍ତ୍ୱ ଏବଂ ଛଦ୍ମବେଶୀ ଧର୍ମନେତମାନଙ୍କର ଇତର ମନୋବୃତ୍ତି ବିଷୟରେ ବିସ୍ତୃତ ଆଲୋଚନା କରି ଲୋକ ମାନସକୁ ସଂସ୍କାରିତ, ନୀତିନିଷ୍ଠ ଓ ସତ୍ୟନିଷ୍ଠ କରାଇବାର ପ୍ରୟାସ କରିଛନ୍ତି । ବହୁ ଉପଦେଶରେ ଏହା ସମୃଦ୍ଧ । ବିବିଧ ନୀତି ଶିକ୍ଷା ପାଇଁ ଛଦ୍ମବେଶର ଅନ୍ତରାଳରୁ ଭଣ୍ଡ ଧାର୍ମିକ ନୀତିହୀନ-ପ୍ରତାରକମାନଙ୍କୁ ଲୋକଲୋଚନକୁ ଆଣି ସେମାନଙ୍କର ସ୍ୱରୂପ ଉଦ୍‌ଘାଟନ ସହିତ ସେମାନଙ୍କ ପ୍ରତି କଠୋର ଭର୍ତ୍ସନା ଓ ବ୍ୟଙ୍ଗ ବହୁ ସ୍ଥଳରେ ଅତ୍ୟନ୍ତ ତୀବ୍ର ଓ ଶାଣିତ । ଅତ୍ୟନ୍ତ ସରଳ ଓ ଲୋକ କଥିତ ଭାଷାରେ ରଚିତ ଏହି ଗ୍ରନ୍ଥରେ ଥିବା ବିଷୟଗୁଡ଼ିକ ନିବିଡ଼ ମନୋଜ୍ଞ ଗମ୍ଭୀର ପରିଶୀଳନର ଅପେକ୍ଷା ରଖେ ।

## ୭) ନାମରତ୍ନ ଗୀତା :

ଏହା ମୂଳତଃ ଦୁଇ ସହସ୍ର ପାଞ୍ଚ ପଦରେ ରଚିତ ହାଇଥିବା କଥା କବି 'ରସବିନୋଦ'ରେ ଉଲ୍ଲେଖ କରିଥିଲେ ମଧ ଏହାର ପୋଥି ଓ ମୁଦ୍ରିତ ସଂସ୍କରଣମାନଙ୍କରେ ବହୁ ଅଧିକ ପଦଯୁକ୍ତ ହୋଇଥିବାର ଦେଖାଯାଏ । ଏହା ଶ୍ରୀକୃଷ୍ଣ-ଅର୍ଜୁନଙ୍କ ମଧରେ ପ୍ରଶ୍ନୋତ୍ତର ବା ସଂବାଦ ପଦ୍ଧତିରେ ରଚିତ । ଏଥିରେ ହରିନାମ ମାହାତ୍ମ୍ୟ, ଗୁରୁ ମାହାତ୍ମ୍ୟ, ଧର୍ମାଧର୍ମ ଓ କର୍ମଫଳ ନିର୍ଣ୍ଣୟ, ସାହୁଖାତକ ସଂବନ୍ଧ, ପାପପୁଣ୍ୟ ବିଚାର, ପବନ ବା ନାଡ଼ୀସାଧନ ଏବଂ ଯୋଗସାଧନ ପ୍ରଣାଳୀ, ଦାସ ରାଜାଙ୍କ କନ୍ୟାଗର୍ଭରୁ ବେଦବ୍ୟାସଙ୍କର ଜନ୍ମ ଓ ପୁରାଣ ରଚନା, ଗଜ ନିସ୍ତାରଣ

କଥା, ଶ୍ରୀକୃଷ୍ଣଙ୍କର ବିଦ୍ୟାଶିକ୍ଷା ଓ ଗୁରୁପୁତ୍ର ଉଦ୍ଧାର କଥା, କୁମ୍ଭୀର ମର୍କଟ କଥା, ତୁଳସୀ ମାହାତ୍ମ୍ୟ ଓ ଲୋକାଚାର ସମ୍ବନ୍ଧରେ ବିସ୍ତୃତ ଆଲୋଚନା କରାଯାଇଅଛି । ଏହାକୁ ନୀତିଶାସ୍ତ୍ର ସଂବଳିତ ଏକ ଗ୍ରନ୍ଥ ଭାବରେ ମଧ୍ୟ ଗ୍ରହଣ କରାଯାଇପାରେ । ଗଳ୍ପାଂଶଗୁଡ଼ିକ ମାଧ୍ୟମ ମାତ୍ର ହେଲେ ହେଁ, ଲୋକଶିକ୍ଷା ବା ଆଚାର ଶିକ୍ଷାଦାନ ହେଉଛି ଏହାର ଅନ୍ତିମ ଲକ୍ଷ୍ୟ । ଏହା ମଧ୍ୟ ପାଠଶାଳାମାନଙ୍କରେ ପାଠ୍ୟ ପୁସ୍ତକ ରୂପେ ବହୁକାଳ ପଠିତ ହୋଇ ଆସିଥିଲା ।

ପ୍ରାଚୀନ ଓଡ଼ିଶାରେ ଶିକ୍ଷାର ପ୍ରସାର ଘଟାଇବାକୁ ଓଡ଼ିଆ ଭାଷାର କବିମାନେ ସକ୍ରିୟ ପ୍ରୟାସ କରିଥିବା ପରି ମନେହୁଏ । ଶିକ୍ଷାବୃତ୍ତି ଓ ସଂସ୍କୃତ ଭାଷାକୁ ସମାଜର ଉପର ସ୍ତରରେ ଅବରୁଦ୍ଧ କରି ରଖିଥିବା ରକ୍ଷଣଶୀଳ ବ୍ରାହ୍ମଣ-ପଣ୍ଡିତ ବା ପୁରୋହିତମାନଙ୍କ ମନୋଭାବ ବିରୁଦ୍ଧରେ ଓଡ଼ିଶାର ପଞ୍ଚସଖାଗଣ ଖୋଲାଖୋଲି ଭାବେ ରାଜସଭାଠାରୁ ଧର୍ମସଭା ପର୍ଯ୍ୟନ୍ତ ସର୍ବତ୍ର ପ୍ରତିବାଦ ଜଣାଇ ଓଡ଼ିଆ ଭାଷାରେ ଧର୍ମ, ସାହିତ୍ୟ ଓ ଗଣିତ ପ୍ରଭୃତି ବିଷୟ ମାନଙ୍କୁ ଆବ୍ରାହ୍ମଣ-ଚାଣ୍ଡାଳ ସମସ୍ତଙ୍କୁ ଶିକ୍ଷାଦାନ ଦେବାକୁ ବ୍ୟାପକ ପ୍ରୟାସ କରିଥିଲେ । ପାଠ୍ୟ ସାମଗ୍ରୀ ଭାବରେ କମଳଲୋଚନ ଚଉତିଶା ଠାରୁ ଆରମ୍ଭ କରି ଭାଗବତ, ରାମାୟଣ, ହରିବଂଶ ପ୍ରଭୃତିକୁ ମଧ୍ୟ ଓଡ଼ିଆରେ ଅନୁବାଦ କରିଥିଲେ । କବି ଦୀନକୃଷ୍ଣ ଏ ଦିଗରେ ସର୍ବାଧିକ ଉଦ୍ୟମଶୀଳ ଥିବା ପରି ଜଣାଯାଏ । ତାଙ୍କର 'ଗୁଣସାଗର', 'ଧର୍ମସାଗର', 'ରସବିନୋଦ' ଓ ଆଲୋଚ୍ୟ 'ନାମରତ୍ନ ଗୀତା' ତଥା 'ପ୍ରସ୍ତାବସିନ୍ଧୁ' ପ୍ରଭୃତି ବିଦ୍ୟାଳୟମାନଙ୍କର ପାଠ୍ୟ ସାମଗ୍ରୀର ଚାହିଦା ପୂରଣ କରିବା ଉଦ୍ଦେଶ୍ୟରେ ରଚିତ ହୋଇଥିଲା ଏବଂ ସେସବୁ ମଧ୍ୟ ଭାଷାର ସରଳତା ଓ ଭାବରାଜିର ମହନୀୟତା ତଥା ପ୍ରୟୋଜନୀୟତା ଦୃଷ୍ଟିରୁ ଦୀର୍ଘକାଳ ବ୍ୟବହୃତ ହୋଇଆସିଥିଲା । ଏହି ଶିକ୍ଷାର ଗୁରୁତ୍ୱ ଓ ମାନବଜୀବନରେ ଏହାର ଅତ୍ୟନ୍ତ ଆବଶ୍ୟକତା ବିଷୟ ଉଲ୍ଲେଖ କରି କବି ଲେଖିଛନ୍ତି;

''ବିଦ୍ୟା ହିଁ ପ୍ରାଣୀଙ୍କୁ ଯେ ବିପରିକାଳେ ସଖା,
ବିଦ୍ୟା ନ ପଢ଼ିଲେ ସେ ପଶୁରେ ହୁଏ ଲେଖା ।
ବିଦ୍ୟାବନ୍ତ ପ୍ରାଣୀଙ୍କି ଯେ ସବୁଠାରେ ପୂଜା ।
ବିଦ୍ୟାହୀନ ହୋଇଲେ ରାଜା ହିଁ ନୋହେ ରାଜା ।
ବିଦ୍ୟାଥିଲେ ଭକତି ମୁକତି ଲଭିପାରି ।
ବିଦ୍ୟା ପ୍ରଶଂସାରୁ ମହା ବିପତ୍ତିରୁ ତରି ।
ବିଦ୍ୟା ପ୍ରସଂଗରେ ଯେ ପବିତ୍ର ହୁଏ କନ୍ଧ,
ବିଦ୍ୟା ନ ପଢ଼ିଲେ ତାକୁ ବୋଲନ୍ତି ଯେ ଅନ୍ଧ ।
ବିଦ୍ୟା ନ ପଢ଼ିଲା ଲୋକ ଲକ୍ଷ୍ମୀହୀନ ହୋଇ,
ବିଦ୍ୟା ଥିଲେ ଯେଣେ ଯିବ ତେଣେ ଯଶ ପାଇ ।'' ଇତ୍ୟାଦି

ବିଦ୍ୟାବନ୍ତ ମନୁଷ୍ୟ ତ୍ରିପୁର ଜୟକରେ, ହର ବ୍ରହ୍ମା ବିଷ୍ଣୁ ହେଲେ ବି ବିଦ୍ୟାହୀନ ହେଲେ ଶୋଭାହୀନ, ଇତ୍ୟାଦି ବିଦ୍ୟାର ବହୁ ମହିମା ଗାନ କରି କରି ବହୁ ଦୂରକୁ ଚାଲିଯାଇ କହନ୍ତି;

''ବିଦ୍ୟାହୀନ ହୋଇ ସେ ବର୍ତ୍ତନ୍ତି ଯେଉଁ ପ୍ରାଣୀ ।
ମୃତ ଶବ ବୋଲି ତାଙ୍କୁ ମନୁଷ୍ୟରେ ଗଣି ।''

ସାଂପ୍ରତିକ କାଳରେ ସାର୍ବଜନୀନ ଶିକ୍ଷାଲାଭ ପାଇଁ ସଚେତନତା ସୃଷ୍ଟି ନିମିତ୍ତ ସରକାରୀ ସ୍ତରରେ ବିପୁଳ ଅର୍ଥ ବିଭିନ୍ନ ଦିଗରେ ବ୍ୟୟ କରାଯାଇ ସୁଦ୍ଧା ଆଶାନୁରୂପ ଉପସ୍ଥାନ ବିଦ୍ୟାଳୟମାନଙ୍କରେ ସମ୍ଭବ ହୋଇ ପାରୁ ନାହିଁ । କିନ୍ତୁ ଦୀନକୃଷ୍ଣଙ୍କ ପରି ଜଣେ ଦୀନହୀନ କବିଙ୍କର ସାର୍ବଜନୀନ ଶିକ୍ଷାଦାନ, ସାହାଯ୍ୟରେ ମନୁଷ୍ୟ ସମାଜକୁ ଶୃଙ୍ଖଳିତ, ସଭ୍ୟ, ସଂସ୍କୃତିସମ୍ପନ୍ନ ଓ ଜ୍ଞାନବାନ କରି ତୋଳିବା ନିମିତ୍ତ ଏପରି ବ୍ୟଗ୍ରତା ଓ ବ୍ୟାକୁଳତା ବସ୍ତୁତଃ ଅତ୍ୟନ୍ତ ପ୍ରଣିଧାନର ବିଷୟ । ବିଦ୍ୟାଶିକ୍ଷା ପାଇଁ ଯେତେ କଷଣ ସହିବାକୁ ହେଲେ ମଧ ଜଗତର ନାଥ ସ୍ୱୟଂ କୃଷ୍ଣ-ବିଷ୍ଣୁ ମଧ କିପରି ସାନ୍ଦିପନୀ ଋଷି ଆଶ୍ରମରେ କୃଚ୍ଛ ବିଦ୍ୟାର୍ଥୀ ଜୀବନ ଅତିବାହିତ କରି ଶିକ୍ଷାଲାଭ କରିଥିଲେ ତାହା ସେ ଏହି ପ୍ରସଙ୍ଗରେ ମଧ ଚେତେଇ ଦେଇ ସର୍ବ ସାଧାରଣଙ୍କୁ ବିଦ୍ୟାଶିକ୍ଷା ପ୍ରତି ଅନୁପ୍ରେରିତ କରିଅଛନ୍ତି । ଓଡ଼ିଶାରେ କୌଣସି ରାଜା ବା ଶାସକ ସାର୍ବଜନୀନ ଶିକ୍ଷାଦାନ ପାଇଁ କେବେ କୌଣସି ଉଦ୍ୟମ କରିଥିବାର ଦୃଷ୍ଟାନ୍ତ କୌଣସି ସୂତ୍ରରୁ ଉପଲବ୍ଧ ହେଉ ନଥିଲେ ମଧ ଓଡ଼ିଶାର ଏହି କବି ଓ ଲେଖକ ଗୋଷ୍ଠୀ ଯେ ସମାଜର ଶିଶୁମାନଙ୍କୁ ଶିକ୍ଷାଦାନ ପାଇଁ ଯଦ୍‌ପରୋନାସ୍ତି ପ୍ରୟାସ କରିଥିଲେ ତାହାର ପ୍ରମାଣ ଏହିସବୁ ଗ୍ରନ୍ଥମାନଙ୍କରୁ ସୁଲଭ ହୋଇଥାଏ । ଫଳସ୍ୱରୂପ ଓଡ଼ିଶାରେ ସର୍ବାଧିକ ସଂଖ୍ୟକ କବି ଓ ଲେଖକ ବ୍ରାହ୍ମଣେତର ଜାତିମାନଙ୍କ ଭିତରେ ହିଁ ସୃଷ୍ଟି ହୋଇ ଓଡ଼ିଶାର ଭାଷା ଓ ସାହିତ୍ୟକୁ ଋଦ୍ଧିମନ୍ତ କରି ଗଢ଼ି ତୋଳିଥିଲେ । ଏପରିକି ସେ ଯୁଗରେ ଅସ୍ପୃଶ୍ୟ ବିବେଚିତ ବାଲିଗାଁ ଦାସ, ଭୀମଭୋଇ, ଶାଲବେଗ, ଅଥବା ଭୀମା ଧୀବର, ଧୀବର ଲୋହୀନାଥ, କିମ୍ବା ପର୍ଶୁରାମ ମହାରଣା ପ୍ରମୁଖ ବିଶିଷ୍ଟ କବିଗଣ ମଧ ଓଡ଼ିଆ ଭାଷା ସାହିତ୍ୟର ଅଭିବୃଦ୍ଧି ସାଧନରେ ସକ୍ରିୟ ସହଯୋଗ କରି ଉଚ୍ଚକୋଟୀର ଗ୍ରନ୍ଥମାନ ରଚନା କରି ଯାଇଛନ୍ତି । ତେଣୁ ବ୍ରିଟିଶ ଶାସିତ ଭାରତବର୍ଷରେ ଅନ୍ୟାନ୍ୟ ପ୍ରାନ୍ତ ଅପେକ୍ଷା ଓଡ଼ିଶାରେ ଶିକ୍ଷିତ ଲୋକଙ୍କର ପ୍ରତିଶତ ସର୍ବାଧିକ ଥିବାର ସ୍ୱର୍ଗତ ବିଜୟ ଚନ୍ଦ୍ର ମଜୁମଦାର ପ୍ରକାଶ କରିଥିଲେ ଯାହାକି ତତ୍କାଳୀନ ଇଂଲଣ୍ଡର ଶିକ୍ଷିତ ପ୍ରତିଶତ ଅପେକ୍ଷା ମଧ ଅଧିକ ଥିବାର ଜଣାଯାଏ । ତେବେ କବି ଦୀନକୃଷ୍ଣଙ୍କର ଉଦ୍ୟମ ଏହି ଶିକ୍ଷାବିକାଶ ଦିଗରେ ସର୍ବାଧିକ ଥିବା ପରି ପ୍ରତୀତ ହୁଏ ।

ଚାଟଶାଳୀ ଗୁରୁ ପ୍ରଣାମ, ଶ୍ରୀୟା ଲିଖନ, ଅକ୍ଷର ଶିକ୍ଷାଦିଠାରୁ ଆରମ୍ଭ କରି ଗୁରୁବନ୍ଦନା, ବିଭୁବନ୍ଦନା, ହରଣ ଗୁଣନାଦି, ଜ୍ୟୋତିଷ, ନବଦୀପିକା,

(ବ୍ୟାକରାଣାଦି) ଚଉରାଶି ଯନ୍ତ, ସାରାବଳୀ, ଜାରଣ, ବାରଣ, କାଣ୍ଡଖଣ୍ଡା ଧନୁବିଦ୍ୟା, ଚିତ୍ରବିଦ୍ୟା, ନୃତ୍ୟବିଦ୍ୟା, ସଂଗୀତ, ରାଗ-ତାଳ-ଲୟ, ଭୂତଭବିଷ୍ୟ ବିଦ୍ୟା, ଅଷ୍ଟାଙ୍ଗ, କଲ୍ଲୋଳ ଧାରଣ, ତରଙ୍ଗଣ, ପୂତବିଦ୍ୟା, ନାଗରବିଦ୍ୟା ପ୍ରଭୃତି ଶିକ୍ଷାଲାଭ ପରେ ବିଦ୍ୟାର୍ଥୀ ଗୁରୁଦକ୍ଷିଣା ଦେଇ ନାରିକେଳ ମାଧମରେ ଗୁର୍ବାଶୀଷ ଲାଭ କରି ବିଦ୍ୟାଶିକ୍ଷା ସମାପ୍ତ କରେ । ଶ୍ରୀକୃଷ୍ଣ ଏସବୁ ବିଦ୍ୟା ଗୁରୁ ଗୃହରେ ପାଠ କରିଥିଲେ ବୋଲି କବି ଉଲ୍ଲେଖ କରିଥିଲେ ମଧ ତାଙ୍କ ସମସାମୟିକ ଯୁଗରେ ଏତେ ପ୍ରକାର ବିଦ୍ୟା ଗୋଟିଏ ପାଠଶାଳାରେ ହୁଏତ ସମ୍ଭବ ନଥିଲା । ତଥାପି ବହୁ ବିଷୟରେ ଧୁରୀଣ ନ ହେଲେ ସେ ଯୁଗରେ ଜଣେ କେହି ବିଦ୍ୱାନ ଏକକ ବିଦ୍ୟାଳୟ ଆରମ୍ଭ କରିବାକୁ ସାହସ କରି ନଥିଲେ, ବା ଲୋକେ ତାଙ୍କୁ ଶିକ୍ଷକ ଭାବରେ ଗ୍ରହଣ କରି ନଥିଲେ ।

ସବୁ ଶିକ୍ଷା ସତ୍ତ୍ୱେ ଜଣଙ୍କୁ ନିରଭିମାନ ବିନୀତ ବା ଶୃଙ୍ଖଳିତ ସଚ୍ଚରିତ୍ର ନୀତିଦୀପ୍ତ ଜୀବନ ଅତିବାହିତ କରିବାକୁ ହେଉଥିଲା ।  ତାହା ନ ହେଲେ ସବୁ ବିଦ୍ୟାଶିକ୍ଷା ମଧ ବ୍ୟର୍ଥ । ଏକଥା ପ୍ରମାଣିତ କରିବାକୁ ଯାଇ କବି ଜଣେ ଅଭିମାନୀ ଇନ୍ଦ୍ରଙ୍କର ଗର୍ବ ଗଞ୍ଜନ କରାଇବା ଅଭିପ୍ରାୟରେ ରୋମାଞ୍ଚ ଋଷିଙ୍କର ପାଳିଙ୍କୁର ସମ୍ବନ୍ଧୀୟ ଶିକ୍ଷଣୀୟ ଗଳ୍ପଟିଏ ବର୍ଣ୍ଣନ କରିଛନ୍ତି ।

ଅନନ୍ତ ସମୟ ପ୍ରବାହର ନିତ୍ୟତା, ଯୋଗ ଓ ଷଟ୍‌ଚକ୍ର ସାଧନ, ପରିମଳ ବିବରଣ, ସାଂସାରିକ ଜୀବନଯାତ୍ରାର ନୀତିନିୟମ, ପ୍ରଭୃତି ବହୁ ଶିକ୍ଷଣୀୟ ତଥ୍ୟମାନଙ୍କରେ ଏହା ପୂର୍ଣ୍ଣ । ଅନ୍ନଦାନର ମହତ୍ୱ ପ୍ରତିପାଦନ କରିବା ପ୍ରସଙ୍ଗରେ ଅମ୍ବିକା ହାଡ଼ିର ବଶିଷ୍ଠ ଋଷିଙ୍କୁ ଧାନ୍ୟ ଦାନ ସହିତ ଅରୁନ୍ଧତୀ କନ୍ୟାଦାନ କଥା ମଧ ସେ ବର୍ଣ୍ଣନା କରିଛନ୍ତି । ଏହିସବୁ ଗଳ୍ପ କବିଙ୍କର ସ୍ୱକଳ୍ପିତ ଅଥବା କୌଣସି ପୁରାତନ ପୁରାଣଦି ଗ୍ରନ୍ଥରୁ ସେ ସଂଗ୍ରହ କରିଥବେ; ଏହା ଜାଣିବା ଏବେ କଠିନ ।

ତତ୍ତ୍ୱପ୍ରଧାନ ଏହି ଗ୍ରନ୍ଥରେ କବିଙ୍କର କବିତ୍ୱ ମଧ ଲୁକ୍କାୟିତ ନୁହେଁ । ବିବିଧ ପ୍ରସଙ୍ଗ ବର୍ଣ୍ଣନା ବେଳେ ପଦମାନଙ୍କରେ ଉପମା, ବକ୍ରୋକ୍ତି ପ୍ରଭୃତିର ଅଳଙ୍କରଣ ମଧ ସର୍ବତ୍ର ପରିଦୃଷ୍ଟ । ଅବଶେଷରେ ଗ୍ରନ୍ଥର ଦୀର୍ଘ ଫଳଶ୍ରୁତି ବର୍ଣ୍ଣନା ସହିତ କବି କହନ୍ତି;

''ନାନାବନ୍ଧେ ବିଚାର କରୁଛି ଏହା ଯୋଡ଼ି,
ଦଧିଭାଣ୍ଡ ଭିତରୁ ଲବଣୀ ଯେହ୍ନେ କାଢ଼ି ।
ଜାତିପୁଷ୍ପ ସଙ୍ଗ ହୋନ୍ତେ କଦଳୀର ପଟ,
ଜଗନ୍ନାଥ ଶିରେ ଲାଗି ନୋହିଲା କି ଶ୍ରେଷ୍ଠ ।
ସବୁ ଶାସ୍ତ୍ରମାନଙ୍କର ବୀଜ ଖୋଜି ଆଣି,
ନାମରତ୍ନ ଭୂମିରେ ଅଛଇ ଏହା ବୁଣି ।।''

ବହୁ ପୌରାଣିକ ବିଷୟମାନ କବି ଏହି ଅମୂଲ୍ୟ ଗ୍ରନ୍ଥରେ ଅତ୍ୟନ୍ତ ମର୍ମସ୍ପର୍ଶୀ ସରଳଭାଷାରେ ପରିବେଷଣ କରିଛନ୍ତି । ଏହା ଏକ ବିଶୁଦ୍ଧ ସାହିତ୍ୟ ସୃଷ୍ଟି ନହେଲେ ମଧ କାବ୍ୟିକ ଆବେଦନରୁ କଦାପି ବଞ୍ଚିତ ନୁହେଁ । ନିଜସ୍ୱ କଳ୍ପନା ବିଳାସ, ପରିମିତ ସୀମା ଭିତରେ ଅତି ରଂଜନ ରହିତ ବର୍ଣ୍ଣନା, ସଖା ସମ୍ମତ ରୀତିରେ ଉପଦେଶ ଦାନ ସାବଲୀଳ ସରଳ ନୈସର୍ଗିକ ଭାଷା ବିନ୍ୟାସ ଏହି ଗ୍ରନ୍ଥକୁ ଆକର୍ଷଣୀୟ ଓ ସୁଖପାଠ୍ୟ କରାଇ ପାରିଅଛି ।

## ୮) ଜଗମୋହନ ଛାନ୍ଦ :

ଓଡ଼ିଆ ଜାତିର ପ୍ରାଣକେନ୍ଦ୍ର ବା ହୃତ୍‌ପିଣ୍ଡ ରୂପେ ବିବେଚିତ ଶ୍ରୀକ୍ଷେତ୍ର-ପୁରୁଷୋତ୍ତମର ଅଧିଷ୍ଠାତ୍ରୀ ଦେବତା ଶ୍ରୀ ଜଗନ୍ନାଥଙ୍କର ମହିମା ଓ ଭକ୍ତିକୁ ବାରମାସରେ ଅନୁଷ୍ଠିତ ଦ୍ୱାଦଶ ଯାତ୍ରାମାନଙ୍କର ବର୍ଣ୍ଣନା ମାଧମରେ ପ୍ରକାଶ କରିବାକୁ କବି ଦୀନକୃଷ୍ଣ ଏହି ଗ୍ରନ୍ଥ ରଚନା କରିଛନ୍ତି । ଏହା ଛାନ୍ଦବନ୍ଦିରେ ଓ ବିବିଧ ରାଗ ରାଗିଣୀରେ ରଚିତ ହୋଇ ଥିବାରୁ କବି ଏହାର ନାମ 'ଜଗମୋହନ ଛାନ୍ଦ' ରଖିଛନ୍ତି । ଏହାର ପ୍ରଥମ ଦୁଇ ଛାନ୍ଦରେ କବି ଶ୍ରୀଜଗନ୍ନାଥଙ୍କର ନିତ୍ୟ ନୈମିତ୍ତିକ ସେବା ଓ ଅବକାଶମାନଙ୍କର ବର୍ଣ୍ଣନା କରିଛନ୍ତି । ତୃତୀୟ ଛାନ୍ଦରେ ବର୍ଣ୍ଣନା କରନ୍ତି ବଡ଼ ସିଂହାର ଲୀଳାବକାଶ । ଚତୁର୍ଥ ଛାନ୍ଦରେ ନୀଳାଦ୍ରିନାଥ ଜଗତନାଥଙ୍କର ମହିମା ବର୍ଣ୍ଣିତ । ତତ୍ପରେ ଶୀତଋତୁରେ ବସ୍ତ୍ର ଓଢ଼ଣୀ, ପୁଷ୍ପାଭିଷେକ, ନବାନ୍ନ ଓ ମକରଯାତ୍ରା ପ୍ରଭୃତିର ବର୍ଣ୍ଣନା କରାଯାଏ ପଞ୍ଚମ ଛାନ୍ଦରେ । ପରବର୍ତ୍ତୀ ତିନିଛାନ୍ଦମାନଙ୍କରେ ବର୍ଣ୍ଣିତ ହୁଏ ଚର୍ଚ୍ଚରୀ ଉତ୍ସବ, ଓ ଦୋଳଝୁଲଣ ଯାତ୍ରା, ଏବଂ ଗ୍ରୀଷ୍ମ କାଳରେ ଚନ୍ଦନ ଓ ସ୍ନାନଯାତ୍ରା । ନବମ ଛାନ୍ଦ ଠାରୁ ଦ୍ୱାଦଶ ଛାନ୍ଦ ପର୍ଯ୍ୟନ୍ତ ଦୀର୍ଘ ଚାରିଛାନ୍ଦ କେବଳ ରଥଯାତ୍ରାର ବର୍ଣ୍ଣନା ଆଧାରିତ । ତ୍ରୟୋଦଶ ଛାନ୍ଦରେ ବର୍ଣ୍ଣିତ ହୁଏ ଲକ୍ଷ୍ମୀ ନାରାୟଣ ମିଳନ ଏବଂ ଚତୁର୍ଦ୍ଦଶ ଛାନ୍ଦର ବିଷୟବସ୍ତୁ ହେଉଛି ହରିଶୟନ ଓ ଦେବୋତ୍‌ଥାନର ବର୍ଣ୍ଣନା । ଏହି ଛାନ୍ଦ ଗ୍ରନ୍ଥଟି ଅଗଣିତ ଜିଜ୍ଞାସୁ ଓ କୌତୁହଳୀ ଭକ୍ତ-ତୀର୍ଥଯାତ୍ରୀମାନଙ୍କର ଜିଜ୍ଞାସା ଚରିତାର୍ଥ କରିବାକୁ ସମର୍ଥ ଏକ କମନୀୟ କାବ୍ୟଗ୍ରନ୍ଥ ।

ଏହି ଛାନ୍ଦମାନଙ୍କରେ ବିବିଧ ଋତୁମାନଙ୍କରେ ବୈଚିତ୍ର୍ୟମୟୀ ପ୍ରକୃତିର ଚିତ୍ରଣ ସହିତ ଯାତ୍ରା ଉତ୍ସବମାନଙ୍କର ଆଡ଼ମ୍ବରାଦି ବର୍ଣ୍ଣିତ ଥିବାବେଳେ ସର୍ବତ୍ର ପ୍ରମୁଖ ସ୍ଥାନ ଲାଭ କରିଛି ନୀଳାଦ୍ରିନାଥର ମହିମା । ଶ୍ରୀଜଗନ୍ନାଥ ଜଗତର ବା ଅଶେଷ ବ୍ରହ୍ମାଣ୍ଡର ଅଧୀଶ୍ୱର । ତାଙ୍କ ତେଜରୁ ପ୍ରତି ମୁହୂର୍ତ୍ତରେ ଅଶେଷ ବ୍ରହ୍ମାଣ୍ଡ ସୃଷ୍ଟି ହେଉଥିବାବେଳେ ପ୍ରତି ମୁହୂର୍ତ୍ତରେ ଅଶେଷ ବ୍ରହ୍ମାଣ୍ଡ ମଧ ବିଚ୍ଛୁରିତ ଅଗ୍ନିକଣା ତୁଲ୍ୟ ବିଲୁପ୍ତ ହୋଇଯାଏ । ସେ ଅପାଣିପାଦ ହେଲେ ମଧ 'ଜବନୋ ଗ୍ରହୀତା', ସେ 'ପଶ୍ୟତ୍ୟ ଚକ୍ଷୁଃ ସ ଶୃଣୋତ୍ୟକର୍ଣ୍ଣଃ । ସବେତ୍ତି ବେଦ୍ୟଂ ନ ଚ ତସ୍ୟାସ୍ତି ବେତ୍ତା', ସେହି 'ପୁରୁଷଂ

ମହାନ୍ତମ୍'କୁ ଓଡ଼ିଆ ଜାତି ନୀଳାଦ୍ରିରେ ସପରିବାର ସ୍ଥାପନା କରି ତାକୁ ଆପଣାର 'ଗତିର୍ଭର୍ତ୍ତା ପ୍ରଭୁ, ସାକ୍ଷୀ, ନିବାସ, ଶରଣଂ ସୁହୃଦ୍' ରୂପେ ବ୍ୟବହାର କରେ । ସେ ଏଠାରେ ଭକ୍ତମାନଙ୍କର ଗହଣରେ ଜଣେ ସଖାବିଶେଷ, ଜଣେ ସାଧାରଣ ଓଡ଼ିଆ ଘରର ବ୍ୟକ୍ତିବିଶେଷ । ତା'ର ପ୍ରାକୃତ ହସ୍ତପାଦାଦି ନଥିଲେ ମଧ ସେ ସର୍ବେନ୍ଦ୍ରିୟ ବିବର୍ଜିତ ହେଲେ ମଧ ତାହାଠାରେ ସର୍ବେନ୍ଦ୍ରିୟର ଗୁଣାଭାସ ଦେଖି ଓଡ଼ିଆ ଜାତି ତାକୁ କେଉଁ ସ୍ମରଣାତୀତ କାଳରୁ ରାଜବିଧିରେ ସେବାପୂଜାଦି କରି ତା'ର ତୃପ୍ତିବିଧାନ କରି ଆସୁଅଛି । ତା'ର ଏହି ବାରମାସୀ ଯାତ୍ରାବିଳାସାଦିର କାବ୍ୟମୟ ବର୍ଣ୍ଣନା ଶୁଣିବାକୁ ସମଗ୍ର ଓଡ଼ିଆ ଜାତି ଚିର ଉତ୍ସୁକ । ତେଣୁ କବି ଏ ସବୁର ପ୍ରତୁଳ ଆକର୍ଷଣୀୟ ବର୍ଣ୍ଣନା କରିଥିବାବେଳେ ବଡ଼ ସିଂହାର ବର୍ଣ୍ଣନାକୁ ସର୍ବାଧିକ ଲୋଭନୀୟ କରି ଦେଇଛନ୍ତି । ଏହି ସେବା କାର୍ଯ୍ୟରେ ଦେବତାଙ୍କର ମନୋରଂଜନ ସେବାର ଅଧିକାର ଲାଭ କରିଥିବା ଦେବଭୋଗ୍ୟା ଦେବଦାସୀମାନଙ୍କର ରୂପସୌନ୍ଦର୍ଯ୍ୟକୁ ଅପ୍ରାକୃତ ଜ୍ଞାନରେ ବର୍ଣ୍ଣନା କରି କବି ଲେଖିଛନ୍ତି;

''ନ ଉଚ୍ଚ ନ ଖର୍ବ ନ ପାତଦୃଶା,
ନ ସ୍ଥୂଳା ନ କୃଶା ଅପୂର୍ବାଳସା ।
ଉଚ୍ଚକୁଚ ଭାରେ ସଭିଏଁ ଭାରୀ
ନିତମ୍ବବତୀ ଅତି ମନୋହାରୀ ।
ସୁନେତ୍ରୀ ସୁଚାରୁ ସୁପଦ୍ମମୁଖୀ,
ସର୍ବାଙ୍ଗ ସୁଭଗା ବକ୍ରକଟାକ୍ଷୀ ।
ସୁକେଶୀ ସୁବେଶୀ କେ ମଦାଳସୀ,
କେ କନ୍ଦର୍ପ କେଳି କଳା ଲାଳସୀ ।।''

ନୃତ୍ୟଗୀତ ସେବାରେ ନିମନ୍ତ୍ରିତା ଏହି ଦେବଦାସୀମାନଙ୍କର ମୁଗ୍ଧା, ମଧ୍ୟା, ପ୍ରଗଲ୍ଭାବସ୍ଥାମାନଙ୍କର ବର୍ଣ୍ଣନା ସହିତ କୃଷ୍ଣଭାବରେ ଆବିଷ୍ଟା ସେହି ସୁଭଗାମାନଙ୍କର ହାବଭାବାଦିର କମନୀୟ ବର୍ଣ୍ଣନା କରନ୍ତି ସୌନ୍ଦର୍ଯ୍ୟ ପିପାସୁ କବି ଦୀନକୃଷ୍ଣ । ଏହିସବୁ ଆନନ୍ଦ ମୁଖରିତ ଉତ୍ସବ ଓ ସୌନ୍ଦର୍ଯ୍ୟ ବିଳାସର ବର୍ଣ୍ଣନା ଶେଷରେ ଏହାର ଶ୍ରବଣ ଦ୍ୱାରା ଭବବ୍ୟଥାକୁ ଉପଶମିତ କରାଇବାକୁ ଅବେଦନ ଜଣାଇ କବି କହନ୍ତି,

''ଏ ଶରୀର ଇନ୍ଦ୍ରଜାଲ ସମାନ,
ଦଣ୍ଡକେ ହୋଇଯିବ ଆନଆନ ।
ଚିତ୍ରକର ଚିତ୍ରପଟ ପରାୟେ,
ହୋଇଅଛି ଏ କ୍ଷଣଭଙ୍ଗ ଦେହେ ।
ପାଣି ଫୋଟକା ପ୍ରାୟ ଫାଟିଯିବ,
ଭସ୍ମ କୃମି ବିଷ୍ଠା ତିନିହେଁ ହେବ ।

ଅନେକ ରୂପେ ଏହା ଯେ ବିପରି
ଏଥିକି ଏକା ଜଗନ୍ନାଥ ଗତି ।
ଦେଖ ଦୁସ୍ତର ସଂସାର ସାଗର,
ଏହା ତରିବାକୁ ଉପାୟ କର ।

ବସ୍ତୁର ସୌନ୍ଦର୍ଯ୍ୟ ହୁଏତ ଚିରନ୍ତନ ହୋଇପାରେ, କିନ୍ତୁ ବସ୍ତୁଟି ଅସ୍ଥିର । ଦୁର୍ଲ୍ଲଭ ନର ଦେହଟି ଚିତ୍ରପଟ ତୁଲ୍ୟ ସୁନ୍ଦର ହେଲେ ମଧ ଏହା କ୍ଷଣଭଙ୍ଗୁର ହୋଇଥିବା ହେତୁ ଏଥିରେ ପ୍ରକୃତ ସୌନ୍ଦର୍ଯ୍ୟ ସଂପାଦନ କରି ତାକୁ ପୂର୍ଣ୍ଣତା ଓ ଚିରନ୍ତନତ୍ୱରେ ମଣ୍ଡିତ କରାଇବାକୁ ହେଲେ ସବୁ ସମ୍ଭୋଗ ଓ ଉଲ୍ଲାସର ମୁହୂର୍ତ୍ତଗୁଡ଼ିକୁ ଉଚ୍ଛୃଙ୍ଖଳିତ କରି ଉଜାଡ଼ି ନ ଦେଇ ତାହାକୁ ବିଭୁ ଚେତନାରେ ସୁସଂଯତ ଓ ତନ୍ମୟ ତଲ୍ଲୀନ କରାଇ ଦେବାକୁ ହେବ । ଜୀବନର ଉପଭୋଗକୁ ଅର୍ଥପୂର୍ଣ୍ଣ କରିବା ପାଇଁ ନିବେଦନ କରି କବି କହନ୍ତି;

''ସବୁଠାରେ ସମହୃଦୟ ହୁଅ,
ସନ୍ତୋଷେ ଦୀନଜନେ ଦାନ ଦିଅ ।।
କୋମଳ ପ୍ରିୟ ବଚନକୁ କହି,
ଜୀବରେ ମାତ୍ର ଦୟାଥିବ ବହି ।।''

ଏସବୁ ଉପଦେଶାତ୍ମକ ବାକ୍ୟ ଶୁଦ୍ଧ କାବ୍ୟରସ ପ୍ରତିଷ୍ଠାର ଏକାନ୍ତ ଅନୁକୂଳ ନହେଲେ ମଧ ଜଗନ୍ନାଥଙ୍କ ଲୀଳା ଦର୍ଶନ ଓ ଶ୍ରବଣ ପାଇଁ ଉଦ୍‌ବିଗ୍ନ ଏକ ଭାବତନ୍ମୟ ଜାତି ପାଇଁ ବିଶେଷ ଉପାଦେୟ । ଏପରି ବହୁ ପଦମାନଙ୍କ ମଧରେ ଜଗନ୍ନାଥଙ୍କର ଅତୁଳ ମହିମା ମଧ ବର୍ଣ୍ଣିତ । ଜଗନ୍ନାଥ-ଭକ୍ତି ଆଧାରରେ ଏହି କାବ୍ୟରେ କବି କହନ୍ତି,

''ନାଗନରସୁର ଲୋକ ମଧେ କେହି ସମାନ ନୁହନ୍ତି ତାହାଙ୍କୁ,
ରୂପଗୁଣ ପରାକ୍ରମେ ନିରୂପଣ କରିଣ ଲକ୍ଷିବା କାହାକୁ,
ଯେଉଁ ପ୍ରଭୁଙ୍କ, ଚରଣ ରୂପ ଗୁଣ କୀର୍ତ୍ତି ।
କହିବସିଲେ ଗଣେଶ, ଆଦି, ସରସ୍ୱତୀ ହିଁ ରହିବେ ନିବର୍ତ୍ତି ।''

ତଥାପି ସେହି ଚରଣ ମହିମାକୁ ସଂକ୍ଷେପ ପଦଟିରେ ସୂଚିତ କରିବାର ଲୋଭ ସମ୍ବରଣ କରି ନପାରି କବି ଲେଖିଛନ୍ତି;

''ଯେଉଁ ପାଦପଦ୍ମ ପ୍ରସାଦରେ ପୂର୍ବେ ପାଷାଣ ହୋଇଲା ଅବଳା,
ଯେଉଁ ପାଦପଦ୍ମ ମହିମାରୁ ଧ୍ରୁବ ଧ୍ରୁବଲୋକରେ କରେ ଲୀଳା,
ଯେଉଁ ପୟର, ବନ୍ଦିଲେ ବଳୀନର ପତି,
ତୁଚ୍ଛ ପ୍ରାୟମଣି ପଛ କରିଦେଲେ ମହାସୁଖ ରାଜ ସମ୍ପତ୍ତି ।''

ଏହି ପଂକ୍ତିର ଭାବସାମ୍ୟ କୁରେଶସ୍ୱାମୀଙ୍କ ରଚିତ ଆର୍ତ୍ତତ୍ରାଣାଷ୍ଟକର ସପ୍ତମ ପଦର ସମୀପବର୍ତ୍ତୀ ମନେହୁଏ । ପ୍ରାକୃତ ପାଦ ପାଣି ବିହୀନ ସେହି ନୀଳାଦ୍ରିନାଥର ଅପ୍ରାକୃତ ପୟର ପଦ୍ମରୁ ମଧୁପାନ କରି ଜୀବନ କୃତାର୍ଥ କରିବାକୁ ନିବେଦନ କରି କବି ଏହି କାବ୍ୟର ଉପସଂହାର କରନ୍ତି । ଓଡ଼ିଆ ସାହିତ୍ୟରେ ଶ୍ରୀକ୍ଷେତ୍ର ଜଗନ୍ନାଥ ମହିମା ଆଧାରିତ ଅସଂଖ୍ୟ ରଚନାକୁ ଦୀନକୃଷ୍ଣଙ୍କର ଏହି ଅମୂଲ୍ୟ କାବ୍ୟଟି ପ୍ରଥମ ଶୁଭେଚ୍ଛା ବର୍ଷଣ କରିଯାଇଅଛି । ଭକ୍ତିରସାତ୍ମକ ଏହି କାବ୍ୟଟି ଅଳଙ୍କାରାଦି ବିବିଧ ଅଙ୍ଗସଜ୍ଜା ଓ ସାଙ୍ଗୀତିକ ମୂର୍ଚ୍ଛନାର ଐଶ୍ୱର୍ଯ୍ୟରେ ଓଡ଼ିଆ ସାହିତ୍ୟାଙ୍ଗନକୁ ଝଙ୍କାରିତ କରିଥାଏ ।

## ୯) ନାମବ୍ରହ୍ମ ଗୀତା :

ଉତ୍କଳରେ ବୌଦ୍ଧ ଓ ନାଥ ଯୋଗୀମାନଙ୍କର ଶୂନ୍ୟ ଉପାସନା ସହିତ ଯୋଗସାଧନା ଯେପରି ପ୍ରମୁଖ ସ୍ଥାନ ଲାଭକରି ଆସିଥିଲା, ତହିଁରେ ଶଙ୍କର ଓ ରାମାନୁଜାଚାର୍ଯ୍ୟ ପ୍ରଭୃତିଙ୍କ ଦ୍ୱାରା ପ୍ରଚାରିତ ଅଦ୍ୱୟବ୍ରହ୍ମତତ୍ତ୍ୱ ଏବଂ ପଞ୍ଚରାତ୍ରାଗମ ପ୍ରଭାବିତ ଭକ୍ତିତତ୍ତ୍ୱ ସମ୍ମିଳିତ ହୋଇ ଜ୍ଞାନାଶ୍ରୟ ଭକ୍ତି ସାଧନର ପ୍ରକ୍ରିୟା ଏକ ସ୍ୱତନ୍ତ୍ର ରୂପ ପରିଗ୍ରହ ଲାଭ କରିଥିଲା । ସାରଳା ଓ ପଞ୍ଚସଖା ଏହି ଜ୍ଞାନାଶ୍ରୟୀ ଭକ୍ତି ଧାରାର ଥିଲେ ମୁଖ୍ୟ ପ୍ରବକ୍ତା । କିନ୍ତୁ ପ୍ରାଚୀନ କାଳରୁ ବ୍ରଜଭାବ ପ୍ରଧାନ ଶୁଦ୍ଧାଭକ୍ତି ଧାରା ଅପ୍ରକଟ ଭାବରେ ଜୟଦେବ ଓ ରାୟରାମାନନ୍ଦ ପ୍ରଭୃତିଙ୍କ ପରି ସାଧକ ମାନଙ୍କର ପରଂପରାରେ ବିଦ୍ୟମାନ ଥିଲେ ମଧ ଲୋକ ପ୍ରଚାରିତ ହୋଇପାରି ନଥିଲା । ଷୋଡ଼ଶ ଶତାବ୍ଦୀରେ ଶ୍ରୀଚୈତନ୍ୟ ଦେବଙ୍କ ଦ୍ୱାରା ଏହା ସୁସଂଗଠିତ ଭାବରେ ପ୍ରଚାଗିତ ହେବାରୁ କ୍ରମେ ତାହା ଜ୍ଞାନମିଶ୍ରା ପ୍ରବାହକୁ ମଧ ବହୁ ଭାବରେ ପ୍ରଭାବିତ କରିଥିଲା । ଅଷ୍ଟାଙ୍ଗ ଯୋଗସାଧନ, ବା ପିଣ୍ଡ ବ୍ରହ୍ମାଣ୍ଡ ପରିକଳ୍ପନାରେ ଏହି ଶୁଦ୍ଧାଭକ୍ତିବାଦର ପ୍ରଭାବ ସ୍ୱରୂପ ସହସ୍ରାର ଚକ୍ରରେ ରାଧାକୃଷ୍ଣଙ୍କ ଅଦ୍ୱୟ ଯୁଗଳ ଲୀଳାକୁ ଲୟ କରିବାକୁ ଜ୍ଞାନମିଶ୍ରା ଭକ୍ତି ସାଧକଗଣ ଅଭ୍ୟାସ ଆରମ୍ଭ କରିଥିଲେ । ଏହିପରି ଶରୀର ତତ୍ତ୍ୱ ଭିତ୍ତିକ ସାଧନାକୁ ଉପଜୀବ୍ୟ କରି କବି ରଚନା କରିନ୍ତି 'ନାମବ୍ରହ୍ମ ଗୀତା' ।

ଏଥିରେ ଶୂନ୍ୟତତ୍ତ୍ୱରୁ ପଞ୍ଚମହାଭୂତ, ମନବୁଦ୍ଧି ଅହଂକାର ପ୍ରଭୃତିର ଉତ୍ପତ୍ତି, ଆଦିଶକ୍ତିର ବିରାଟ ଗର୍ଭରେ ରାଧାକୃଷ୍ଣଙ୍କର ଜନ୍ମ ପ୍ରଭୃତି ବିଷୟ ବର୍ଣ୍ଣିତ । ଲଲାଟକମଳ ବା ଆଜ୍ଞାଚକ୍ରରେ ରାଧାକୃଷ୍ଣଙ୍କର ଅବସ୍ଥାନ, ତଦୁପରି ଅଛନ୍ତି ୬୪ ଦଳରେ ୬୪ ଗୋପିକା ।

ତାହାପରେ ରହିଛି ନିରଂଜନ ପୁରୁଷ । ତଦୁପରି ଥାଏ ଷୋଳକଳା ସ୍ଥାନ । ଏହା ନାମବ୍ରହ୍ମ ନାମରେ ଖ୍ୟାତ ।

ସିନ୍ଧୁଡ଼ା ରାଗରେ ୩୫ ପଦ ବିଶିଷ୍ଟ ଏହି ଗୀତାରେ ଯୋଗସାଧନା ରହସ୍ୟ ଓ ସୃଷ୍ଟିତତ୍ତ୍ୱ ବର୍ଣ୍ଣିତ । ପୁରାତନ ପୁରାଣ ବା ଧର୍ମଶାସ୍ତ୍ରାଦିରେ ରାଧାକୃଷ୍ଣ ଉପାସନାର

ସଂକେତ ନଥିବାରୁ, ଅଥଚ ରାଧାଭାବ ସମ୍ବଳିତ ଭକ୍ତିସାଧନର ବ୍ୟାପକ ପ୍ରଚାର ଘଟିବାରୁ ରାଧାକୃଷ୍ଣଙ୍କର ଉପାସନା ସମ୍ବନ୍ଧରେ ସବିଶେଷ ଜାଣିବା ପାଇଁ ଲୋକ ବା ବିଦଗ୍ଧ ସ୍ତରରେ ଯେଉଁ କୌତୁହଳ ସୃଷ୍ଟି ହୋଇଥିଲା, ତା'ର ନିରାକରଣ ନିମିତ୍ତ ଏପରି ନାମ କଳ୍ପନା ଜଳ୍ପନା ସାହାଯ୍ୟରେ ରାଧାକୃଷ୍ଣ ଉପାସନାକୁ ସେହି ଯୋଗମାର୍ଗରେ ସାଧନ କରିବା ପାଇଁ ବିବିଧ ଗ୍ରନ୍ଥରଚନାର ପ୍ରୟାସ ହୋଇଥିଲା । କିନ୍ତୁ ଏହିସବୁ ଗ୍ରନ୍ଥମାନ ବ୍ୟକ୍ତିବିଶେଷଙ୍କ ଦ୍ୱାରା ରଚିତ ହୋଇଥିବା ହେତୁ ଏସବୁ ଭିତରେ କୌଣସି ସାମଞ୍ଜସ୍ୟ ବା ସମାନତା ପରିଦୃଷ୍ଟ ହୋଇନଥାଏ । ତେବେ ପଞ୍ଚସଖାଙ୍କୁ ଅନୁସରଣ କରି ଦୀନକୃଷ୍ଣ ଏହି ଯୁଗଳମୂର୍ତ୍ତିଙ୍କୁ ଲଲାଟ ବା ଆଜ୍ଞାଚକ୍ରର ଦୁଇ ଦଳ ବିଶିଷ୍ଟ ପଦ୍ମରେ ଅବସ୍ଥାପିତ କରାଇ ଦେଇ ନିଶ୍ଚିନ୍ତ ହୋଇଥିଲେ ।

ଏହିସବୁ ନୀରସ ଯୋଗସାଧନ ତତ୍ତ୍ୱକୁ ସଂଗୀତମୟ କରି କବି ଆଲୋଚ୍ୟ ଗ୍ରନ୍ଥଟି ରଚନା କରି ନିଜ ଜ୍ଞାନର ପରିଚୟ ଦେଇଛନ୍ତି । ପିଣ୍ଡବ୍ରହ୍ମାଣ୍ଡ ସାଧନା ସମ୍ବଳିତ ବ୍ରହ୍ମଜ୍ଞାନମୂଳକ କବିତାବଳୀ ଭଜନ ରୀତିରେ ରଚିତ ହୋଇ ଆଦୃତ ହେଉଥିବାରୁ ବୋଧହୁଏ କବି ସେହି ବିଷୟମାନଙ୍କର ଆଧାରରେ ବହୁ ଭଜନଗୀତିକା ରଚନା କରିଥିଲେ । ଏହା ସେମାନଙ୍କ ମଧ୍ୟରୁ ଅନ୍ୟତମ । ଭାଷା ବିନ୍ୟାସ ଶିଳ୍ପରେ ଦୀନକଷ୍ଣଙ୍କର ଉତ୍ତମ ଦକ୍ଷତାଥିବାହେତୁ ଏହା ବ୍ରହ୍ମଜ୍ଞାନ ସାଧନା ପ୍ରଧାନ ହେଲେ ମଧ୍ୟ ସୁପାଠ୍ୟ ଓ ସୁଗେୟ । ତେଣୁ ଦୀର୍ଘକାଳ ଧରି ଏହା ଲୋକ ମୁଖରେ ଜୀବିତ ରହି ଶ୍ରୁତିରୁ ଶ୍ରୁତିକୁ ପ୍ରସାରିତ ହୋଇ ଆସିଛି । କବି କହନ୍ତି ଗୀତା ଭାଗବତ ଶ୍ରବଣ ବା ଦିଅଁ ଦେବତାଙ୍କର ପୂଜା ପାର୍ବଣ ଅପେକ୍ଷା ଯୋଗ ମାଧମରେ ଯୁଗଳ ମୂର୍ତ୍ତିର ଲୟସାଧନା ଅଧିକ ଶ୍ରେୟ । ଗୋଟିଏ ପଦରେ ସେ ଲେଖିଛନ୍ତି;

''ଗୀତା ଭଗବତ ଯେତେକ ବିଷୟ ଦେଉଳ, ପୂଜନ, ଦେବତା
ଦୀନକୃଷ୍ଣ ଦାସ ଏଥିରେ ଭାବଇ ନଭଜି ନପୂଜି ତାହିଁଥା ।
ମନ ତାହାଁରେ,
ପୂର୍ଣ୍ୟଗିରି ପୂର୍ଣ୍ୟ ଶିଖରେ,
ହରେକୃଷ୍ଣ ଯହିଁ ଆଲଟଚାମର କି ଉପମା ଦେବା ତହିଁରେ ।''

ଏହା ନିର୍ଗୁଣ ଗୀତିକବିତା ପର୍ଯ୍ୟାୟଭୁକ୍ତ ଏକ ଗମ୍ଭୀର ତତ୍ତ୍ୱ ଆଧାରିତ ଭଜନ ବ୍ୟତୀତ ଅନ୍ୟକିଛି ନୁହେଁ ।

## ୧୦) ରସବିନୋଦ :

ଜଗନ୍ନାଥ ଦାସଙ୍କ ଭାଗବତର ଲୋକପ୍ରିୟ ନବାକ୍ଷରୀ ଛନ୍ଦରେ ସୁଦୀର୍ଘ ୪୨ ଅଧ୍ୟାୟରେ ରଚିତ ଏହି ଗ୍ରନ୍ଥଟି ନିଜର ପୌରାଣିକ ଗାଥା ଓ ନୀତି ଉପଦେଶାଦି କଥନ ପାଇଁ ଓଡ଼ିଶାର ଜନମାନସରେ ବ୍ୟାପକ ପ୍ରଭାବ ବିସ୍ତାର କରିଆସିଛି ।

ଭାଗବତ ବର୍ଣ୍ଣିତ ରାସଲୀଳା ଯେତେବେଳେ ବ୍ୟାପକ ଲୋକପ୍ରିୟତା ଲାଭ କରୁଥିଲା ଏବଂ ପରକୀୟା ରାଧାଭାବ ପ୍ରଧାନ ଭକ୍ତି ସାଧନ ଯେତେବେଳେ ଶ୍ରୀକୃଷ୍ଣ ଚୈତନ୍ୟଙ୍କ ଦ୍ୱାରା ଲୋକରେ ପ୍ରଚାରିତ ହୋଇ ଶ୍ରୀକୃଷ୍ଣଙ୍କୁ ଅବତାରୀ ପରମେଶ୍ୱର ଭାବରେ ପ୍ରତିପାଦନ କରାଗଲା, ସେତେବେଳେ ଶ୍ରୀଜଗନ୍ନାଥଙ୍କୁ ନିତ୍ୟତତ୍ତ୍ୱ ଅବତାରୀ ଭାବେ ବିଶ୍ୱାସ କରିଆସୁଥିବା ଯୋଗପ୍ରଧାନ ଜ୍ଞାନମିଶ୍ରା ଭକ୍ତମାନଙ୍କ ମଧ୍ୟରେ ଏ ସମ୍ବନ୍ଧରେ ଯେଉଁ ସବୁ ସଂଶୟ ଦେଖାଦେଇଥିଲା ତା'ର ନିରାକରଣ କରି ଉଭୟ ଜ୍ଞାନମିଶ୍ରା ଓ ଶୁଦ୍ଧାଭକ୍ତମାନଙ୍କ ମଧ୍ୟରେ ଏକ ସାମଞ୍ଜସ୍ୟ ପ୍ରତିଷ୍ଠା ଆରମ୍ଭ କରିଥିଲେ ବଳରାମ, ଜଗନ୍ନାଥ ଓ ଅଚ୍ୟୁତାନନ୍ଦ ପ୍ରଭୃତି ପଞ୍ଚସଖାଗଣ । ସେମାନଙ୍କ ପଥ ଅନୁସରଣ କରି 'ରହସ୍ୟମଞ୍ଜରୀ'ର କବି ଦେବଦୁର୍ଲ୍ଲଭ ଦାସ, 'ଜ୍ଞାନସାଗର' ରଚୟିତା ବ୍ରଜ ଭାବୀୟା ଦାସ, 'ରାଧାରସାମୃତ'ର କବି ଶିବ ଦାସ ପ୍ରଭୃତି ସ୍ୱ ସ୍ୱ ଚିନ୍ତା ଓ କଳ୍ପନାର ଉପଯୋଗ କରି ଶ୍ରୀଜଗନ୍ନାଥ କୃଷ୍ଣଙ୍କୁ ନିତ୍ୟ ନିର୍ଗୁଣ ନିରାକାର ବିଷ୍ଣୁ ଓ ତଦୀୟଧାମ ଶ୍ରୀକ୍ଷେତ୍ରକୁ ନିତ୍ୟ ଗୋଲୋକ ବ୍ରଜଧାମ ବୋଲି ପ୍ରତିପାଦିତ କରାଇ ଭାଗବତ ବର୍ଣ୍ଣିତ କୃଷ୍ଣଙ୍କୁ, ବିଷ୍ଣୁ ମାନିବା ଓ ବ୍ରଜ ପ୍ରଭୃତିର ଲୀଳାକୁ ଅପ୍ରାକୃତ ଲୀଳା ଭାବରେ ପ୍ରତିଷ୍ଠା ଦେବାର ପ୍ରୟାସ କରିଥିଲେ । ଏହି ଭାବନାକୁ ସମର୍ଥନ ଜଣାଇଥିଲା ଶ୍ରୀପୁରୁଷୋତ୍ତମ ତାପିନୀ ବା ଜଗନ୍ନାଥ ତାପିନୀ ପରି ଅଥର୍ବ ବେଦୀୟ ପୈପ୍ପଳାଦ ଶାଖାନ୍ତର୍ଗତ ତାପିନୀ ସାହିତ୍ୟ । ପୁନଶ୍ଚ ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କର ଗୁଣ୍ଡିଚା ଯାତ୍ରା ପୂର୍ବରୁ ଗୁଣ୍ଡିଚା ମନ୍ଦିର ମାର୍ଜ୍ଜନ ପରେ ଉଦ୍ୟାନ ଭୋଜନ ବେଳେ ଶ୍ରୀଚୈତନ୍ୟଙ୍କର ବୃନ୍ଦାବନର ପୁଳିନ ଭୋଜନାବିଷ୍ଟତା, ଗୁଣ୍ଡିଚାଯାତ୍ରା ବେଳେ କୁରୁକ୍ଷେତ୍ରରେ ଶ୍ରୀକୃଷ୍ଣ ଦର୍ଶନ କରି ରାଧା ପ୍ରଭୃତି ଗୋପୀକାମାନଙ୍କର ଭାବାବେଗରେ ଆବିଷ୍ଟତା ଆଦି ପ୍ରସଙ୍ଗମାନଙ୍କରୁ ଶ୍ରୀଜଗନ୍ନାଥଙ୍କୁ ଯଦୁପତି ବା ଦ୍ୱାରକାପତି ଶ୍ରୀକୃଷ୍ଣ ଭାବରେ ଅନୁଭବ କରିଥିଲେ ହେଁ ଶ୍ରୀଜଗନ୍ନାଥଙ୍କର ବ୍ରଜପ୍ରୀତି ଓ ବ୍ରଜ ପ୍ରତ୍ୟାବର୍ତ୍ତନର ପ୍ରତିଶ୍ରୁତି ବୋଧହୁଏ, ଏହି ଧାମରେ ନିତ୍ୟ ବ୍ରଜଧାମ କଳ୍ପନାକୁ ଅଧିକ ଉତ୍ସାହିତ କରିଥିଲା । ତେବେ ଯାହାହେଉ ଏହିସବୁ କବିମାନଙ୍କର ବ୍ରଜ କଳ୍ପନା ଭିତରେ କୌଣସି ସମାନତା ବା ସାମଞ୍ଜସ୍ୟ ନଥିଲେ ମଧ୍ୟ ଜଗନ୍ନାଥଙ୍କୁ ନିତ୍ୟ ନିରାକାର କୃଷ୍ଣ ଓ ବୃନ୍ଦାବନର କୃଷ୍ଣଙ୍କୁ ମାନବା କୃଷ୍ଣ କଳ୍ପନା କରିବା ସହିତ ବ୍ରଜର ରାସଲୀଳାଠାରୁ ଜଗନ୍ନାଥ କୃଷ୍ଣଙ୍କର ନିତ୍ୟ ଗୋଲୋକରେ ନିତ୍ୟ ରାହାସ ଲୀଳାକୁ ଉତ୍କୃଷ୍ଟ ବିବେଚନା କରି ବର୍ଣ୍ଣନା କରିଛନ୍ତି । ପୁନଶ୍ଚ ଏହି ନିତ୍ୟ ରାହାସ ଲୀଳା ସର୍ବଜୀବ ଦେହରେ ନିତ୍ୟ ଅନୁଷ୍ଠିତ ହୁଏ ଏବଂ ଯୋଗୀଗଣ ଅଷ୍ଟାଙ୍ଗ ଯୋଗ ସାଧନା କ୍ରମରେ ଷଟ୍‌ଚକ୍ର ଉପରେ ଥିବା ସହସ୍ରାର ଚକ୍ର ଭିତରେ ଏହି ଲୀଳାର ଆସ୍ୱାଦନ କରିଥାନ୍ତି । ଜଗନ୍ନାଥଙ୍କର ଶ୍ରୀକ୍ଷେତ୍ରରେ ଏହି ନିତ୍ୟ ବ୍ରଜ ବା ଗୋଲୋକଧାମ ପ୍ରତିପାଦନ ଉପରେ ସାଧାରଣ ଲୋକଙ୍କର ପ୍ରତ୍ୟୟକୁ ଦୃଢ଼ୀଭୂତ କରାଇବା ଅଭିପ୍ରାୟରେ କବି ଏହି ଗ୍ରନ୍ଥରେ ବହୁ ଅଧ୍ୟାୟରେ ପ୍ରୟାସ କରିଛନ୍ତି । ଶ୍ରୀକ୍ଷେତ୍ର ମାହାତ୍ମ୍ୟ ବିଷୟରେ ୯ମ-୧୦ମ ଅଧ୍ୟାୟରେ ସୁନ୍ଦର

ବ୍ୟାଖ୍ୟାମୂଳକ ବର୍ଣ୍ଣନା ପ୍ରଦାନ କରିଛନ୍ତି । ଚତୁର୍ଦ୍ଧାମୂର୍ତ୍ତି ଶ୍ରୀଜଗନ୍ନାଥଙ୍କ ଠାରେ ରାଧାକୃଷ୍ଣ ଯୁଗଳ ମୂର୍ତ୍ତିର ପରିକଳ୍ପନା ଓ ପ୍ରତିପାଦନ, ଉତ୍କଳର ବୈଷ୍ଣବ ଧର୍ମର ଇତିହାସରେ ବସ୍ତୁତଃ କୌତୁହଳୋଦ୍ଦୀପକ ଏକ ବିଶିଷ୍ଟ ଘଟଣା । ଏହି ଗ୍ରନ୍ଥର ୭ମରୁ ୧୭ଶ ଅଧ୍ୟାୟ ମଧ୍ୟରେ କବି, କ୍ଷେତ୍ର ମାହାତ୍ମ୍ୟ, ଚତୁର୍ଦ୍ଧା ମୂର୍ତ୍ତି ତତ୍ତ୍ୱ, ଦେବଦେବୀଙ୍କର ମହିମା, ନିରାକାରଙ୍କର ଲୀଳା ରହସ୍ୟ, ପିଣ୍ଡ ବ୍ରହ୍ମାଣ୍ଡରେ ନିତ୍ୟସ୍ଥଳୀ, ଦେବନାଶନ ବଟ ପ୍ରଭୃତି ବହୁ ତଥ୍ୟ ବର୍ଣ୍ଣିତ । ଓଡ଼ିଆ ସାହିତ୍ୟରେ ଶ୍ରୀକ୍ଷେତ୍ର ବର୍ଣ୍ଣନାଭିତ୍ତିକ ଏତେ ବ୍ୟାପକ ତଥ୍ୟ ପୂର୍ଣ୍ଣ ବର୍ଣ୍ଣନା ଅନ୍ୟ କୁତ୍ରାପି ଦେଖାଯାଏ ନାହିଁ । ପୌରାଣିକ ନାନା ଉପାଖ୍ୟାନମାନଙ୍କ ସହିତ ବହୁ ବର୍ଣ୍ଣନାର ପୁନରାବୃତ୍ତି ସତ୍ତ୍ୱେ ଏଥିରୁ ଶ୍ରୀଜଗନ୍ନାଥଙ୍କର ଧର୍ମ ବା ଦର୍ଶନ ସମ୍ବନ୍ଧରେ ନିର୍ଦ୍ଦିଷ୍ଟ କିଛି ସୁସ୍ପଷ୍ଟ ବା ସୁସଙ୍ଗତ ସିଦ୍ଧାନ୍ତ ମିଳେ ନାହିଁ । ବରଂ ନାନା ସଂଶୟ ଓ ନାନା ଖଣ୍ଡିତ ମଣ୍ଡିତ ତଥ୍ୟ ଭିତରେ କବିଙ୍କର ଦ୍ୱନ୍ଦ୍ୱାକୁଳିତ ଚିତ୍ତରେ ଉଦ୍‌ବେଳନ ସହଜ ଲକ୍ଷିତ ହୋଇଥାଏ ।

ଏହି ଗ୍ରନ୍ଥରେ ବହୁ ପୌରାଣିକ ଓ କାଳ୍ପନିକ ବା ଲୋକ ପ୍ରଚଳିତ କାହାଣୀମାନଙ୍କର ସମାବିଷ୍ଟ ହୋଇ ଏହାର ପାଠ ନିମିତ୍ତ ଲୋକ ଚିତ୍ତକୁ ଆକୃଷ୍ଟ କରିଥାନ୍ତି । କେତେକ କାହାଣୀ ସେ ନିଜର ଅନ୍ୟାନ୍ୟ ଗ୍ରନ୍ଥମାନଙ୍କରେ ମଧ୍ୟ ଲିଖିତ କରିଛନ୍ତି । 'ପ୍ରସ୍ତାବସିନ୍ଧୁ' ଗ୍ରନ୍ଥରେ ଥିବା ରାଣୀ ରତ୍ନାବତୀ କଥା ଏଥିରେ ମଧ୍ୟ ବିସ୍ତାରିତ ଭାବେ ବର୍ଣ୍ଣିତ । ବୃନ୍ଦାବତୀ ଚରିତ୍ର, ମୟଦୈତ୍ୟ ଯୁଦ୍ଧ, ରକ୍ଷ-ଭକ୍ଷଙ୍କର ଯୁଦ୍ଧ, ମହାଭାରତର ବୀରମାନଙ୍କର ପୂର୍ବଜନ୍ମ ବୃତ୍ତାନ୍ତ, ବାଳୀ-ସୁଗ୍ରୀବ ଯୁଦ୍ଧ, ରାମାୟଣ ଚରିତ ପ୍ରଭୃତି ବହୁ ପୌରାଣିକ କଥା ସଂକ୍ଷିପ୍ତ ଓ ସୁସଙ୍ଗତ ଭାବରେ ଏଥିରେ ବର୍ଣ୍ଣିତ । ପୁରାଣ ବର୍ଣ୍ଣନା ରୀତିରେ ଏହି ଗ୍ରନ୍ଥରେ ବିଷ୍ଣୁପଦ ଲାଭ ପାଇଁ ଚନ୍ଦ୍ର-ପବନ ପ୍ରଭୃତିଙ୍କର ଉଗ୍ର ତପସ୍ୟା, ତପଭଙ୍ଗ ଓ ବିରୂପ ଧାରଣ, ରାମାୟଣର ସଂକ୍ଷେପ କଥା, ମଦନ ଭସ୍ମ, ତୁଳସୀ ମହିମା, କବିକର୍ମର ବୈଶିଷ୍ଟ୍ୟ, ଭକ୍ତିର ଉତ୍କର୍ଷ, ଗୁରୁ ମହିମା, ସୁଧର୍ମା ସତ୍ୟର ବର୍ଣ୍ଣନା, ଦୀର୍ଘ ଦଶ ଅଧ୍ୟାୟ ବ୍ୟାପୀ ମହାଭାରତ କଥାଭାଗର ସଂକ୍ଷିପ୍ତ ବର୍ଣ୍ଣନା ସହିତ ଭାଗବତ କଥା ମଧ୍ୟ ବର୍ଣ୍ଣିତ । ଭୂଷଣ୍ଡକାକ ଚରିତ, ବିଷ୍ଣୁଙ୍କର ଅବତାର ବର୍ଣ୍ଣନା, ସୃଷ୍ଟି ସର୍ଜନା, ବ୍ରହ୍ମ ପ୍ରଳୟ ଓ ବଶିଷ୍ଠ ଭୂଷଣ୍ଡ କାକ କଥା ମଧ୍ୟ ବର୍ଣ୍ଣିତ । ଅଷ୍ଟାଦଶ ପୁରାଣମାନଙ୍କର ନାମ ଓ ଶ୍ଳୋକ ସଂଖ୍ୟା, ଯୋଗସାଧନ ପ୍ରଣାଳୀ, ପରମ ଆତ୍ମା ଓ ପବନ ବା ନାଡ଼ୀସାଧନ ପ୍ରଭୃତି ବିସ୍ତାରିତ ଭାବରେ ବର୍ଣ୍ଣିତ । କବି ନିଜର ଜନ୍ମ ସ୍ଥାନ ଜଳେଶ୍ୱର କଟକସ୍ଥ ତଣିଆ ଠାରୁ ଓଡ୍ର ଦେଶ ନାମରେ ବିଖ୍ୟାତ ଖୋର୍ଦ୍ଧାର ଶ୍ରୀକ୍ଷେତ୍ର ପୁରୁଷୋତ୍ତମକୁ ଆସିଥିବାର ବର୍ଣ୍ଣନା ପ୍ରସଙ୍ଗରେ ଖୋର୍ଦ୍ଧାର ରାଜା ରାମଚନ୍ଦ୍ର ଦେବଙ୍କ ଠାରୁ ଦିବ୍ୟସିଂହ ଦେବ ପ୍ରଥମଙ୍କ ପର୍ଯ୍ୟନ୍ତ ରାଜାମାନଙ୍କର ପ୍ରସଙ୍ଗମାନ ବର୍ଣ୍ଣନା କରିଛନ୍ତି । ଗ୍ରନ୍ଥ ଶେଷରେ ଫଳଶ୍ରୁତିର ଦୀର୍ଘ ବର୍ଣ୍ଣନା ଦେଇ ଗ୍ରନ୍ଥ ମାହାତ୍ମ୍ୟ ପ୍ରସଙ୍ଗରେ କହନ୍ତି ;

''ଯେଉଁ ଶାସ୍ତ୍ରରେ ସୁଖଯେତେ, ସବୁରି ବୀଜ ଅଛି ଏଥେ ।
ଏ ଗ୍ରନ୍ଥ ଶୁଣିବ ଯେ ଜିତା । ଅମୃତ ମଣିବ ସେ ପିତା ।
x x x
ମୂର୍ଖ ହିଁ ଶୁଣିଲେ ଏ ପାଠ । ଜାଣଇ ଧର୍ମଶାସ୍ତ୍ର ବାଟ ।''

ବସ୍ତୁତଃ ପୁରାଣାଦିର କଥା କାହାଣୀମାନଙ୍କ ସହିତ ଏଥିରେ ପ୍ରଦତ୍ତ ବିପୁଳ ନୀତି, ସଦାଚାର ମୂଳକ ଉପଦେଶମାନଙ୍କର ଶ୍ରବଣ ଦ୍ୱାରା ମନୁଷ୍ୟକୁ ସଭ୍ୟ ଓ ସଂସ୍କାରିତ ଜୀବନଯାପନ ପାଇଁ ଯଥେଷ୍ଟ ପ୍ରେରଣା ମିଳିପାରେ । କାହାଣୀ ପ୍ରିୟ ଦୀନକୃଷ୍ଣ ଆପଣାର କଳ୍ପନା ବଳରେ କେତେକ କାହାଣୀ କଳ୍ପନା କରି ଏଥିରେ ସନ୍ନିବେଶିତ କରାଇଛନ୍ତି । କାହାଣୀ ମାଧ୍ୟମରେ ନୈତିକ ଓ ଧର୍ମମାର୍ଗୀୟ ଶିକ୍ଷାଦାନ କରି ସାମାଜିକ ଜୀବନକୁ ଅନୁଶାସିତ, ଶୃଙ୍ଖଳିତ ଓ ସନ୍ମାର୍ଗଗାମୀ କରାଇବାର ପ୍ରୟାସ କରିଅଛନ୍ତି । ପୁରାଣ ଶୈଳୀରେ ରଚିତ ଏହି ଗ୍ରନ୍ଥରେ ବହୁ ଆହୃତ ଉପାଦାନମାନଙ୍କର ସମାବେଶ ଭିତରେ ବହୁ ମୌଳିକ ବିଷୟ ମାନଙ୍କର ପରିକଳ୍ପନା କବିଙ୍କର ସୃଜନଶୀଳ ପ୍ରତିଭାର ପରିଚୟ ମିଳିଥାଏ । ଉଭୟ ଭାଷାବିନ୍ୟାସ ବିଷୟମାନଙ୍କର ନୂତନତା ଓ ଉପାଦେୟତା ଯୋଗୁଁ ଏହା ଉତ୍କଳର ପାଠକ ମହଲରେ ଆଦୃତ ହୋଇ ଆସିଅଛି । ଆଧୁନିକ କାଳରେ ମଧ ଶ୍ୟାମସୁନ୍ଦର ରାଜଗୁରୁଙ୍କ ପରି ଆଲୋଚକମାନଙ୍କର ଏହା ଦୃଷ୍ଟି ଆକର୍ଷଣ କରି ପାରିଥିଲା ଏବଂ ସେତେବେଳେ ସେ ଏହାର କବିଙ୍କୁ 'ରସକଲ୍ଲୋଳ' ରଚୟିତା ଦୀନକୃଷ୍ଣଙ୍କ ଠାରୁ ଭିନ୍ନ ବୋଲି ଅନୁମାନ କରିଥିଲେ । କିନ୍ତୁ 'ଜଗମୋହନ ଛାନ୍ଦ' ଗ୍ରନ୍ଥର ଆବିଷ୍କାର ପରେ ଏ ସଂବନ୍ଧୀୟ ଆଲୋଚନାମାନଙ୍କର ଅବସାନ ଘଟିଲା ।

**ବୌଦବ୍ରହ୍ମ ଲେଖନ :** ଏହି କ୍ଷୁଦ୍ର ରଚନାରେ କବି ବୁଦ୍ଧ ଜଗନ୍ନାଥଙ୍କୁ ଶୂନ୍ୟ-ନିର୍ଗୁଣ ନିରାକାର ବୋଲି ପ୍ରତିପାଦିତ କରାଇ ଦେଇଛନ୍ତି । ଉତ୍କଳରେ ଦୀର୍ଘ ପ୍ରଭାବ ବିସ୍ତାର କରି ଆସିଥିବା ଶୂନ୍ୟବାଦୀ ବଜ୍ରଯାନୀମାନଙ୍କର ଧାର୍ମିକ ସଂସ୍କାର ଓ ମତବାଦ କ୍ରମେ କିପରି ବିବର୍ତ୍ତିତ ହୋଇ ଶୂନ୍ୟ ବ୍ରହ୍ମ ନିରାକାରରେ ରୂପାନ୍ତରିତ ହୋଇ ଲୋକ ମାନସକୁ ଆଚ୍ଛନ୍ନ କଲା ତା'ର ଏକ ସୁନ୍ଦର ତଥ୍ୟପୂର୍ଣ୍ଣ ସଂକେତ ମିଳିଥାଏ ଏହି କ୍ଷୁଦ୍ରାବୟବ ଗ୍ରନ୍ଥରୁ (ଆମ୍ଭର 'ଓଡ଼ିଆ ସାହିତ୍ୟରେ ଦୀନକୃଷ୍ଣ' ଗ୍ରନ୍ଥ ଦ୍ରଷ୍ଟବ୍ୟ) ।

## ଚତୁର୍ଥ ପରିଚ୍ଛେଦ

# ଦୀନକୃଷ୍ଣଙ୍କ ଗୀତି କବିତା

କାବ୍ୟଶିଳ୍ପ ଗତ ସୌନ୍ଦର୍ଯ୍ୟ ଓ ଭାଷାଶିଳ୍ପରେ ଯାଦୁ ସୃଷ୍ଟି କରିଥିବା ଏହି କବି ଦୀନକୃଷ୍ଣଙ୍କ ଭଣିତାରେ 'ସୁଭଦ୍ରାହରଣ' ପ୍ରଭୃତି ଏକାଧିକ ଗୌଣ କାବ୍ୟମାନଙ୍କର ପାଣ୍ଡୁଲିପି ପରିଦୃଷ୍ଟ ହେଉଥିଲେ ମଧ ତାଙ୍କର କବିତ୍ୱର ପ୍ରକୃତ ସ୍ୱାକ୍ଷର ମିଳେ ତାଙ୍କ ରଚିତ ଗୀତି କବିତାମାନଙ୍କରୁ । ବହୁ ଭଜନ, ଜଣାଣ, ଚଉପଦୀ, ଚଉତିଶା ଓ ଅନ୍ୟାନ୍ୟ ଗୀତିକା ରଚନା କରିଥିବା ଏହି କବିଙ୍କର ବହୁ କବିତାର ଲୋକପ୍ରିୟତା ସେମାନଙ୍କୁ ବହୁ ସଂସ୍କରଣରେ ଆତ୍ମ ପ୍ରକାଶର ସୁଯୋଗ ଦେଇଅଛି । 'ଆର୍ତ୍ତତ୍ରାଣ ଚଉତିଶା' ପରି ବହୁ ଗୀତିକବିତା ଲୋକପ୍ରିୟତାରେ ଅନନ୍ୟ ସିଦ୍ଧିଲାଭ କରିଛନ୍ତି । ଦୀନକୃଷ୍ଣଙ୍କ ସମ୍ବନ୍ଧରେ ଆଧୁନିକ କାଳରେ ଆଲୋଚନାର ସୂତ୍ରପାତ ହେବାବେଳେ 'ରସବିନୋଦ' ଗ୍ରନ୍ଥର ପୌରାଣିକ ରୀତି, ଜ୍ଞାନ ଭକ୍ତିଚେତନା, ଗ୍ରନ୍ଥ ରଚନା ସମ୍ବନ୍ଧୀୟ କେତେକ ବିବୃତି ଓ ସ୍ୱରଚିତ ଗ୍ରନ୍ଥମାନଙ୍କର ତାଲିକାରେ 'ରସକଲ୍ଲୋଳ'ର ନାମୋଲ୍ଲେଖ ନଦେଖି ଦୁଇଜଣ ପୃଥକ୍ ଦୀନକୃଷ୍ଣ ତତ୍ତ୍ୱମାନଙ୍କ ସମ୍ବନ୍ଧରେ ବହିରଙ୍ଗ ଆଲୋଚନାମାନ ଆଲୋଡ଼ନ ସୃଷ୍ଟି କରିଥିଲା । କିନ୍ତୁ 'ଜଗମୋହନ ଛାନ୍ଦ'ର ଆବିଷ୍କାର ପରେ ପଦ୍ମଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି 'ରସକଲ୍ଲୋଳ'ର ମୁଖବନ୍ଧରେ ଏହି ମତବାଦର ନିରାକରଣ ଘଟାଇଥିଲେ । ଆମେ ମଧ ଆମର 'ଦୀନକୃଷ୍ଣ ସାହିତ୍ୟ ସମୀକ୍ଷା' ଗ୍ରନ୍ଥର ପରିଶିଷ୍ଟ ଅଧାୟରେ ଦୀନକୃଷ୍ଣଙ୍କର ଗୀତିକବିତାମାନଙ୍କର ଆଧାରରେ ସ୍ୱର୍ଗତ ମହାନ୍ତିଙ୍କର ମତକୁ ପରିପୁଷ୍ଟ କରାଇଥିଲୁ । ବସ୍ତୁତଃ ଏହି ଗୀତିକବିତାଗୁଡ଼ିକ ହିଁ 'ରସବିନୋଦ'ର କବିଙ୍କୁ 'ରସକଲ୍ଲୋଳ' ରଚୟିତା ବୋଲି ପ୍ରମାଣିତ କରାଇବାରେ ଯଥାର୍ଥ ସହାୟତା କରିଥାନ୍ତି । କାରଣ 'ରସବିନୋଦ' ରଚନା କାଳକୁ କବି ଜଗମୋହନ ଛାନ୍ଦ ଓ ବହୁ ଗୀତି କବିତାମାନ ରଚନା କରି ସାରିଥିଲେ କିନ୍ତୁ 'ରସ କଲ୍ଲୋଳ' ରଚନା କରି ନଥିବାର ସଂକେତ ତାଙ୍କର ଉକ୍ତିରୁ ଜଣାଯାଏ । ସେ ଲେଖିଥିଲେ,

''ଆବର ଚଉତିଶାମାନ, ଯେତେକ ହୋଇଛି ଲେଖନ ।
ଗୋଟିଏ ଗୋଟିଏକ କରି । କେତେ ହେଁ ଲେଖିବା ବିଚାରି ।''

ଓଡ଼ିଆ ସାହିତ୍ୟକୁ ବହୁ ଦିଗରୁ ସମୃଦ୍ଧ କରାଇବାରେ ଦୀନକୃଷ୍ଣ ଥିଲେ ଆଜୀବନ ବ୍ରତୀ ଜଣେ ମହାନ୍ ସାରସ୍ୱତ ସାଧକ । ବିଭିନ୍ନ ରୀତିରେ ଓ ବିଭିନ୍ନ

ବିଷୟରେ ଗ୍ରନ୍ଥମାନ ରଚନା କରୁଥିବାବେଳେ ସେ ସାମୟିକ ଭାବରେ କ୍ଷୁଦ୍ରାବୟବ ବିଶିଷ୍ଟ ଚଉପଦୀ, ଚଉତିଶାଦି ଗୀତିକାମାନ ସୃଷ୍ଟି କରୁଥିଲେ । ସୀମୀତ ପରିସର ମଧ୍ୟରେ ଏହି ଗୀତିକାମାନଙ୍କରେ ମଧ୍ୟ କାବ୍ୟିକ ସୌନ୍ଦର୍ଯ୍ୟର ପୂର୍ଣ୍ଣତା ହୁଏ ଅନୁଭୂତ । ସାମାଜିକ ଦାୟିତ୍ୱ ସଂପାଦନ ଦୃଷ୍ଟିରୁ ପ୍ରୟୋଜନ ପ୍ରଧାନ ଗ୍ରନ୍ଥ ରଚନାର ଧାରାବାହିକ ସାଧନା ଭିତରେ ଏହି ଗୀତିକାମାନଙ୍କର ଶୈଳ୍ପିକ ପରିପାଟୀ ତାଙ୍କ ସଂଯତ ଶିଳ୍ପୀତ୍ୱର ପରିଚାୟକ । ଏହି ସାଧନା ତାଙ୍କୁ ଜଗମୋହନ ଛାନ୍ଦ ଅଥବା 'ରସକଲ୍ଲୋଳ' ପରି କାବ୍ୟମାନଙ୍କର ଶିଳ୍ପଗତ ସାଫଲ୍ୟ ପାଇଁ ସୁପ୍ରସ୍ତୁତ କରିପାରିଥିଲା ।

ତାଙ୍କର କ୍ଷୁଦ୍ର କ୍ଷୁଦ୍ର ଚଉପଦୀଗୁଡ଼ିକ ପ୍ରାୟ କେବଳ ରାଧାକୃଷ୍ଣଙ୍କର ପ୍ରୀତି ଆଧାରିତ ଅଥବା ଶ୍ରୀକୃଷ୍ଣଙ୍କ ମହିମା ପ୍ରଖ୍ୟାପକ । ସେଗୁଡ଼ିକରେ ମଧ୍ୟ ଦୀନକୃଷ୍ଣଙ୍କର ପଦଲାଳିତ୍ୟ ଓ ସାରଲ୍ୟ ଭିତରେ କବିତ୍ୱର ନିଜସ୍ୱ ସ୍ଫୂର୍ତ୍ତି ପ୍ରକାଶିତ । ଗୋଟିଏ ଗୀତିକାରେ କବି ଶ୍ରୀଖଣ୍ଡିଚୂଳିଆ କୃଷ୍ଣଙ୍କର ଗୋପ ଯୁବତୀଙ୍କ ପ୍ରତି ପରିହାସର ସୁନ୍ଦର ସଂକ୍ଷିପ୍ତ ଚିତ୍ରଦେଇ ଲେଖିଛନ୍ତି;

''ଗୋପଯୁବତୀଙ୍କି ଦେଖି ଟାହିକରେ ସେ କାହିଁକି,
ଠାରି ଦେଉଥାଏ ଆଖି କଦମ୍ବ ମୂଳିଆରେ,
ଗୀତେ କହେ ଦୀନକୃଷ୍ଣ ବାଟରେ ନକର ହଟ,
କରାଉଛି ସୁଆକଟ ଘନ ଶ୍ୟାମଳିଆରେ ।''

ଗୋପାଳକୃଷ୍ଣର ବ୍ରଜକାମିନୀଙ୍କ ପ୍ରତି ଏପରି ଆଚରଣ ସମ୍ବନ୍ଧରେ ସଖୀକୁ ରାଧା କହିଥିବାବେଳେ ସଖୀ ତାଙ୍କର ମାନ ଭଞ୍ଜନ କରାଇ ଏକ ମଧୁଯାମିନୀରେ କୁଞ୍ଜଗମନ ପାଇଁ ନିବେଦନ ଜଣାନ୍ତି ଅନ୍ୟ ଏକ କବିତାରେ । ଅନ୍ୟ ଏକ କବିତାରେ ସଖୀ ଯାଇ କୃଷ୍ଣଙ୍କ ଠାରେ ମାନିନୀ ରାଧାଙ୍କର ବିରହ ଦଶାରେ ମିଳନୋତ୍କଣ୍ଠା ଜଣାଇ କୃଷ୍ଣ ଚିତ୍ତରେ ଅନୁରାଗ ସଂଚାରିତ କରାନ୍ତି । ଏହି ବିରହ ଦଶାରେ ଗୋପୀମାନଙ୍କ ଚିତ୍ତର ଉଦ୍‌ବେଗ ଚିତ୍ରଣ କରି ଏକ ଅତ୍ୟନ୍ତ ମନୋଜ୍ଞ କବିତାରେ ସଖୀ ଯାଇ କୃଷ୍ଣଙ୍କୁ କହନ୍ତି,

''ଅଘା ବକା ଆଦି ପୂତନା ପରାଣ ଘେନିଲେ ସନ୍ତୋଷ ନୁହେଁ ମନ,
ଏବେ ଅନାଇଛ ଅବଳା ଯୁବତୀ ରାଧା ଜୀବନକୁ ଜୀବଧନ ।
x          x          x
ଏତେ କାଳ ଆସି ଲଗାଇଲ ଗୋପେ ଅତି ଅଲୋକିତ ବାଦ ଲତା,
ବୋଲେ ଦୀନକୃଷ୍ଣ ଏହିଠାରେ ସବୁ ଜଣାଉଅଛକି ବିବେକିତା ।''

ଗୋପୀ-କୃଷ୍ଣଙ୍କ ମଧ୍ୟରେ ପୂର୍ବ ରାଗ ଓ ଅଭିମାନର ଏପରି ବହୁ ଅବସ୍ଥାକୁ ନେଇ ଏହିସବୁ ସୁନ୍ଦର ସୁନ୍ଦର ସରଳ ଗୀତିକାମାନଙ୍କ ମଧ୍ୟରେ ଗୋଟିଏ ଗୋଟିଏ ମୁହୂର୍ତ୍ତର ଭାବାବେଗକୁ କବି କାବ୍ୟରୂପ ପ୍ରଦାନ କରନ୍ତି । ଅତୀତ ମିଳନର ସ୍ମୃତି

ରୋମନ୍ଥନରୁ ସଂଜାତ ମନୋବେଦନାକୁ ବ୍ୟକ୍ତକରି ରାଧା ଗୋଟିଏ ଗୀତିକାରେ ପ୍ରିୟ ସଖୀକୁ କହନ୍ତି;

''ପ୍ରାଣ ମିତଣି ! କାଳ କେତେବେଳେ କି ନକରେ ପୁଣି ।
ପହିଲି ପ୍ରୀତି ସମୟେ ଅହର୍ନିଶି ଆସିବା ଯେ
ଏହିପୁରେ ଦିଶୁଥାଏ ପାଦପଦ୍ମ ଚିହ୍ନ ମୟେ ।
କାହିଁଗଲା ସେ ସମୟେ ସପନଧନ ପରାୟେ
ଖଳକୁସୁମ କାଣ୍ଡକୁ ଭୋଗ ହେଲା ଆମ୍ଭ କାୟେ ।''

ସରସ ପୁଷ୍ପ ପଲ୍ଲବରେ ସଜ୍ଜିତ ବସନ୍ତ ଋତୁର ଆଗମନ ସତ୍ତ୍ୱେ ମଥୁରାବାସୀ କୃଷ୍ଣର ଅପ୍ରତ୍ୟାଗମନ ହେତୁ କୁବୁଜାର ପ୍ରେମ ପ୍ରତି ଖଣ୍ଡିତା ଭାବ ପୋଷଣ କରି କବି କହନ୍ତି;

''ଦୟାକୁ ହୋଇଣ କିମ୍ଭା ଏଡ଼େ ନିଷ୍ଠୁର ହୃଦୟେ
ଭଲା କଲା କୁବୁଜାର ମୋହନ ମନ୍ତ୍ର ଉପାୟେ ।''

ପୁନଶ୍ଚ ଭାଗବତର ଦୃଷ୍ଟାନ୍ତମାନଙ୍କର ଛାୟାରେ କବି କହନ୍ତି,

''ଫୁଲରେ ଭ୍ରମର ରଙ୍ଗ ଫଳ ବୃକ୍ଷେ ପକ୍ଷୀ ସଙ୍ଗ
ଯଉବନ ଥିଲେ ପର ପୁରୁଷେ ପ୍ରୀତି ଅଭଙ୍ଗ ।''

ଏହାପରେ ନିଜସ୍ୱ ଦୃଷ୍ଟାନ୍ତଟିଏ ଦେଇ କବି କହନ୍ତି,

''ବୋଲେ ଦୀନକୃଷ୍ଣ ଯେହ୍ନେ ସରିତ ପଡି ତରଙ୍ଗ
ଆସଇ ଅତି ଉଚ୍ଚରେ ବଡ଼ ବେଗେ ହୋଏଭଙ୍ଗ ।''

ଗୋପୀ-କୃଷ୍ଣଙ୍କ ମଧ୍ୟରେ କ୍ରମବର୍ଦ୍ଧିଷ୍ଣୁ ହୋଇ ଉଠୁଥିବା ପାରସ୍ପରିକ ଆକର୍ଷଣ ଅନୁରାଗ ଓ ମିଳନ ବିଚ୍ଛେଦ ଜନିତ ଆନନ୍ଦ ବିଷାଦର ନାନା ଛାୟାଛବି ତାଙ୍କର ଗୀତିକାମାନଙ୍କରେ ଆଧାରିତ । ବିଶେଷତଃ ସମାଜପତିମାନଙ୍କର ଅଜ୍ଞାତସାରରେ ପଲ୍ଲବିତ ହୋଇଥିବା ଗୋପନପ୍ରୀତିରେ ପ୍ରତି ମୁହୂର୍ତ୍ତରେ ନିହିତ ଥିବା ଅପବାଦ, ଲଜ୍ଜା ଓ ଶାସନର ବିପଦ ଆଶଙ୍କାରେ ଆନ୍ଦୋଳିତ ହେଉଥିବା ମନର ଭାବକୁ କବି ପାଥେୟ କରିଛନ୍ତି । ପ୍ରେମିକ ପ୍ରେମିକାମାନଙ୍କର ରୂପଗୁଣ ସ୍ମରଣଜନିତ ସନ୍ତୋଷରୁ ମଧ୍ୟ ଗୀତିକାମାନଙ୍କର ଉଦୟ ଘଟିଛି । ତେଣୁ କୃଷ୍ଣଙ୍କର ରୂପ ଶୋଭା ବର୍ଣ୍ଣନ କରି ବହୁ ଗୀତିକା ରଚନା କରନ୍ତି ଦୀନକୃଷ୍ଣ । ପ୍ରିୟସଖୀ ରାଧାଙ୍କୁ ଦୂରରୁ ସେହି ନୀଳମଣି ମୁରଲୀଧର ନେତ୍ରକଟାରୀରେ ପାତିବ୍ରତ୍ୟ ହରଣ କରିବାକୁ ତ୍ରିଭଙ୍ଗୀଚୁଳରେ ବାଙ୍କ ଚାହାଣୀରେ ଉଭା ହୋଇଥିବାର ଦର୍ଶନ କରାଇ, ଭାଗ୍ୟରେ ଥିଲେ ତା'ର ପ୍ରୀତି ଆସ୍ୱାଦନ ମିଳିପାରେ ବୋଲି କବି କହନ୍ତି,

''ଜାଳିଣ ଯେ ଜାଗର  ପୂଜି ପାର୍ବତୀବର
 ପାଇବ ଏ ନାଗର ଠାରୁ ସେ ସୁଆଦର ।
ଦୀନକୃଷ୍ଣ ଏ ଗୀର  ଭାସନ୍ତି ବାରମ୍ବାର
 ମୋ ନେତ୍ର ପସରା ନାଗରରେ ।।''

ଏହି ସର୍ବଚିତ୍ତାପହାରୀ ନୀଳମଣି ପୀତାମ୍ବର ମୂରଲୀପାଣି କୃଷ୍ଣଙ୍କର ବିରହରେ ବ୍ୟଥିତା ଗୋପୀମାନଙ୍କର ବିଳାପର ବର୍ଣ୍ଣନା ସମ୍ବଳିତ କବିତାମାନ ଅତ୍ୟନ୍ତ ହୃଦୟସ୍ପର୍ଶୀ । ମଥୁରା ଯାତ୍ରାରେ ବ୍ୟଥିତା ଗୋପୀମାନେ ବିରହଜନିତ କ୍ରୋଧ ପ୍ରକାଶ କରି ଅନ୍ୟ ଗୋଟିଏ ଗୀତିକାରେ କହନ୍ତି;

''ପୋଡୁ ଏ କଦମ୍ବ  ପୋଡୁ ବୃନ୍ଦାବନ
 ମରୁ ଏ ବସନ୍ତ କୋଇଲୀ ଗୋ,
କୃଷ୍ଣସଙ୍ଗେ ଯାହା  ନଯାଇ ରହିଛି
 ଆମ୍ଭର ପ୍ରାଣ ନେବ ବୋଲି ଗୋ,
ଆସ ସର୍ବସଖୀ ଜଳ ବାହିଯିବା
 ଶୁଖୁ ଏ ଯମୁନା ନଈକି ଗୋ,
କଦମ୍ବ କାଟି ଟିକି ଟିକି କରିବା
 ତହିଁ ଲଗାଇବା ଯୂଈକି ଗୋ ।''

କିନ୍ତୁ ଏପରି ସବୁ ନାନା ଚେଷ୍ଟାରେ ମଧ ସେମାନେ ଯମୁନାକୁ ଶୁଖାଇ ପାରିଲେ ନାହିଁ କିମ୍ବା ହଣାହଣି କରି ମଧ କଦମ୍ବ ବୃକ୍ଷକୁ କାଟି ନପାରି ସ୍ୱକୀୟ ଅସମର୍ଥତାରେ ଆତ୍ମନିନ୍ଦା କଲେ । ତେଣୁ କଂସର ଆଗମନ କାମନା କରି କହନ୍ତି,

''ଆସୁ କଂସ ଦୁଷ୍ଟ  ନାଶୁ ଗୋପରାଷ୍ଟ୍ର
 ଭାଙ୍ଗୁ ତୋଟା ମଧୁବନ ଗୋ,

କିନ୍ତୁ ଦୀନକୃଷ୍ଣ ଏହି ବିରହିଣୀମାନଙ୍କୁ ସମ୍ବେଦନ ଜଣାଇ ରାମକୃଷ୍ଣଙ୍କର କୁଶଳ ପ୍ରତ୍ୟାବର୍ତ୍ତନ କାମନା କରି କହନ୍ତି,

''ରାମକୃଷ୍ଣ ମୋର କୁଶଳେ ଆସନ୍ତୁ
 କହେ ଦୀନକୃଷ୍ଣ ହୀନ ଗୋ ।''

କବିସୂର୍ଯ୍ୟ ବଳଦେବ ହେଉଛନ୍ତି ରାଧାକୃଷ୍ଣ ପ୍ରୀତିକଳାର ଅନ୍ୟତମ ସଫଳ ବିଧାଣୀ । ଯେତେଦୂର ମନେହୁଏ 'କିଶୋର ଚନ୍ଦ୍ରାନନ' ଚମ୍ପୂ ପ୍ରଭୃତିର ରସାଳ ପରିପୁଷ୍ଟି ପାଇଁ ଦୀନକୃଷ୍ଣଙ୍କର ବ୍ରଜରସ ଆଧାରିତ କବିତାମାନ ଥିଲେ ପଥ ପ୍ରଦର୍ଶକ । ଓଡ଼ିଆ ଗୀତିକବିତା ଧାରାକୁ ସମୃଦ୍ଧ ଓ ପ୍ରବହମାନ କରିବାରେ ଦୀନକୃଷ୍ଣଙ୍କର ଭୂମିକା ଅତୁଳନୀୟ ।

ବହୁ ସଂଖ୍ୟକ ଭଜନରେ ଦୀନକୃଷ୍ଣ ନୀଳାଦ୍ରି ବିହାରୀ ଅଥବା ବ୍ରଜବିହାରୀ ଶ୍ରୀକୃଷ୍ଣଙ୍କର ନାମ ଗୁଣାଦି ଭଜନ କରନ୍ତି । 'ଦୀନବନ୍ଧୁ ପରି ଜଣେ ସାମନ୍ତ ନାହିଁ ନାହିଁତ' ଅଥବା 'ସତ୍ୟବାଦୀ ଗୋବିନ୍ଦ ହେ ରାଧାମୋହନ' ପ୍ରଭୃତି ଭଜନଗୀତିକା ଅଦ୍ୟାବଧି ଲୋକମୁଖରେ ଗଭୀର ଶ୍ରଦ୍ଧା ସହିତ ବ୍ୟାପକ ଆବୃତ୍ତ । ଚଉତିଶାମାନଙ୍କର ଲୋକପ୍ରିୟତାର ଯୁଗରେ ଦୀନକୃଷ୍ଣଙ୍କର ଚଉତିଶାମାନଙ୍କର ସ୍ୱତନ୍ତ୍ର କାବ୍ୟିକ ମୂଲ୍ୟ ସେଗୁଡ଼ିକୁ ନିତ୍ୟ ନୂତନ କରି ରଖି ଆସିଅଛି । ପୂର୍ବେ ପ୍ରାଚୀସମିତି ଉଦ୍ୟମରେ ଚଉତିଶା ମଧୁଚକ୍ର ଗ୍ରନ୍ଥମାନଙ୍କରେ ଦୀନକୃଷ୍ଣଙ୍କର ବହୁ ସଂଖ୍ୟକ କବିତା ପ୍ରକାଶିତ ହୋଇଥିବାରୁ ସେଗୁଡ଼ିକର କାବ୍ୟ ମର୍ଯ୍ୟାଦା ଲୋକାଦୃତି ଲାଭକଲା । ଏସବୁ ଚଉତିଶାମାନଙ୍କ ମଧ୍ୟରୁ ଅଧିକାଂଶ ଚଉତିଶାର ବିଷୟବସ୍ତୁ ହେଉଛି ରାଧାକୃଷ୍ଣ ପ୍ରୀତି ସମ୍ବଳିତ ବ୍ରଜରସ ଆଧାରିତ । କାରଣ ଏହି ଦିଗଟି ଥିଲା ତାଙ୍କର ଉତ୍ତର ଜୀବନରେ ଅତ୍ୟନ୍ତ ପ୍ରିୟ ବସ୍ତୁ । ବିଶେଷତଃ କବି ଜୀବନରେ ଅନାଦୃତ ଲାଞ୍ଛିତ ଦରିଦ୍ର ଏହି ପ୍ରତିଭାଶାଳୀ କବିଙ୍କର ଜୀବନର ଶୋକ ସନ୍ତାପାଦି ଯନ୍ତ୍ରଣାର କରୁଣ ସ୍ୱର ସତେ ଯେପରି ଅଭ୍ରାନ୍ତ ଭାବେ ଏଥିରେ ଅଭିବ୍ୟକ୍ତ । ନାୟକ ନାୟିକାଙ୍କର ବିରହ କାଳରେ ପରସ୍ପରର ଗୁଣ କୀର୍ତ୍ତନ ସ୍ମୃତିଚାରଣ, ମିଳନ ବାସନାଦି ଏ ସବୁରେ ଅତ୍ୟନ୍ତ ମନୋଜ୍ଞରୀତିରେ ବର୍ଣ୍ଣିତ । ବିଶେଷତଃ ଶୃଙ୍ଗାର ମିଶ୍ରିତ କରୁଣ ରସରେ ଏହା ନିବିଡ଼ ଭାବରେ ସାନ୍ଦ୍ର । 'ରାଧାସ୍ମରଣ ଚଉତିଶା'ରେ ରାଧାଙ୍କୁ ସ୍ମରଣ କରି କୃଷ୍ଣ କହନ୍ତି;

''ପ୍ରାଣ ବାନ୍ଧବୀ ମୁଖ ଚାହିଁକି କାହିଁ ଏ ସନ୍ତାପ,
ପଡ଼ିଲା ଅମୃତ ବୃଷ୍ଟିରେ ବରଷା ପାଷାଣ କଳାପ,
ପୀତ ବସନୀ ମରପିକ ବଚନୀ ଚମ୍ପକବରନୀ,
ପୁଷ୍ପକାଳ ପ୍ରାୟେ ସୁଖଦ ପଲ୍ଲବ ଦଶନବସନୀ ।''

ବର୍ଷାକାଳରେ ନବଘନ ଦର୍ଶନ କରି ମଥୁରାବାସୀ ଶ୍ରୀକୃଷ୍ଣ, ରାଧିକାଙ୍କ ବିରହରେ ଖେଦପ୍ରକାଶ କରି କାଳିଦାସଙ୍କ ଅଭିଶପ୍ତ ଯକ୍ଷ ପରି ମେଘ ସମ୍ମୁଖରେ ରାଧାଙ୍କର ରୂପ, ଗୁଣ, ଅନୁରାଗ, ମାନ, ମିଳନେଚ୍ଛା ଓ ସମ୍ଭୋଗାଦି କାଳୀନ କାମଚେଷ୍ଟାଦିକୁ ସ୍ମରଣ କରି ଆପଣାର ବିରହ ବେଦନାକୁ ପ୍ରଶମିତ କରନ୍ତି । ତାହାର ଆଧାରରେ କବି ଲେଖନ୍ତି ନବଘନ ଚଉତିଶା । ଗୋଟିଏ ଲଳିତ ପଦରେ ବିରହୀକୃଷ୍ଣ କହନ୍ତି;

''ମନ୍ଦ ମନ୍ଦ କହିବା                ମନ୍ଦ ମନ୍ଦ ଚାହିଁବା
ମନ୍ଦ କଳ କୋକିଳ ବାଣୀ,
ମତେ ତ ଦିଶୁ ନାହିଁ                ଉପମା ଅଛି କାହିଁ
ଆହାସେ ରସିକ ସିହାଣୀ ହେ, ନବଘନ,
ମକରଧ୍ୱଜ କଞ୍ଚଲତା,

ମହତ କାମ ଫଳ ଦାତା,
ମହୀମଣ୍ଡନା ମନ ମୋହିନୀ ଜୀବଧନ
ମୋ ସୁଖ-ମନ୍ଦିର ଦେବତା ହେ, ନବଘନ ।''

ମଥୁରାର ବିରହୀ କୃଷ୍ଣ ଏପରି ପ୍ରଣୟ ସ୍ମୃତିକାତର ହୋଇ ଗୋକୁଳକୁ ଗୋପୀମାନଙ୍କୁ ପ୍ରବୋଧିତ କରାଇବା ପାଇଁ ଉଦ୍ଧବଙ୍କୁ ଦୂତରୂପେ ପ୍ରେରଣ କରିଥିଲେ । ଉଦ୍ଧବଙ୍କ ସମ୍ମୁଖରେ ସେହି ଚିର ଉପେକ୍ଷିତା ପ୍ରଣୟିନୀମାନେ ନିଜ ନିଜର ବିରହଦଶା ବର୍ଣ୍ଣନ ପୂର୍ବକ ସେହି ପ୍ରିୟ ପ୍ରେମାସ୍ପଦଙ୍କର କଳ୍ପନାତୀତ ନିଷ୍ଠୁରତା ଓ ତାଙ୍କର କୁବୁଜାଙ୍କ ସହିତ ନବ ପ୍ରଣୟରେ ଖଣ୍ଡିତା ଓ ଅସହିଷ୍ଣୁ ଭାବ ବ୍ୟକ୍ତ କରିଥିଲେ । ସେସବୁ ଦୈନ୍ୟ, କାରୁଣ୍ୟ ଓ ସ୍ତୂପୀକୃତ ବେଦନାକୁ ଉପଜୀବ୍ୟ କରି କବି ଦୀନକୃଷ୍ଣ ବହୁ କ୍ଷୁଦ୍ର କବିତାମାନଙ୍କ ପରି ବହୁ ସଂଖ୍ୟକ ଚଉତିଶା ମଧ୍ୟ ସୃଷ୍ଟି କରିଥିଲେ । ରାଧା ଦର୍ଶନ ଚଉତିଶା, ଘନଶ୍ୟାମ ଚଉତିଶା, ସ୍ମରଣ ଚଉତିଶା, ଗୋପୀ ସନ୍ଦେଶ ଚଉତିଶା, ଅମୃତ ନିଧି ଚଉତିଶା, ଦୃଷ୍ଟାନ୍ତ ଚଉତିଶା, ରାଧିକା ସ୍ମରଣ ଚଉତିଶା, ପ୍ରଭୃତି ଚଉତିଶାମାନ ଏହି ପ୍ରସଙ୍ଗ ଆଧାରରେ ରଚିତ । ବିଷୟବସ୍ତୁର କେନ୍ଦ୍ର ପ୍ରାୟ ସମାନ ହେଲେ ମଧ୍ୟ ବିଭିନ୍ନ ଅବସରରେ କବିଙ୍କର ଭାବଶାବଲ୍ୟ କିନ୍ତୁ ଭିନ୍ନଭିନ୍ନ । ସ୍ୱରରେ ତୀବ୍ରତା ଓ ରସସୃଷ୍ଟିରେ ସାନ୍ଦ୍ରତା ଦିଗରୁ ମଧ୍ୟ ପ୍ରତ୍ୟେକ କବିତା ପରସ୍ପର ଠାରୁ ଭିନ୍ନ । 'ଉଦ୍ଧବ ସନ୍ଦେଶ' ଚଉତିଶା ମଧ୍ୟ ସେହି ବିଷୟରେ ଉଦ୍ଧବଙ୍କୁ ସମ୍ବୋଧନ କରି ରଚିତ । ଏହାର କୋମଳ ପଦ ଯୋଜନାରେ ମଧ୍ୟ ରହିଛି କବି ଦୀନକୃଷ୍ଣଙ୍କର ବ୍ୟକ୍ତିତ୍ୱର ପରଶ । ଗୋଟିଏ ପଦରେ ଗୋପିକାମାନେ କହନ୍ତି;

''ଛାର ପାମରୀ ଆଭିରୀ ନାରୀ ଆମ୍ଭେ ବନଚାରୀ ସିନା ଦୁର୍ବୁଦ୍ଧି,
ଛନ୍ଦ ପ୍ରବନ୍ଧ କଥା ଆମ୍ଭଠାରେ ସେ କିମ୍ପା ନକରିବେ ପ୍ରସିଦ୍ଧି,
ଆହେ ଉଦ୍ଧବ, ଛଇଳ ଭ୍ରମର ପୀରତି,
ଛାଇ ପରାୟେ କ୍ଷଣକୁ କ୍ଷଣ ଆନ ଜୁଆ କଉଡ଼ି ପ୍ରାୟେମତି ।''

ଏଥିରେ ଥିବା 'ଛନ୍ଦ ପ୍ରବନ୍ଧ କଥା', 'ଛାଇ ପରାୟେ', 'ଜୁଆକଉଡ଼ି ପୀରତି' ପ୍ରଭୃତି ପ୍ରତ୍ୟେକଟି ଉପମାର ଭାବବିଭବ ଅତ୍ୟନ୍ତ ଲୌକିକ ଓ କାବ୍ୟରେ ଏମାନେ ଲାଭ କରନ୍ତି ନୂତନ ପ୍ରସିଦ୍ଧି । ଏହି ପଦଟିର ମଧ୍ୟ 'ରସକଲ୍ଲୋଳ'ର ଗୋଟିଏ ପଦ ସହିତ ରିହଛି ଭାବ ସାମଞ୍ଜସ୍ୟ । ପୂର୍ବ ମଧ୍ୟଯୁଗରେ ଏହାର ଲୋକପ୍ରିୟତା ପରବର୍ତ୍ତୀ କାଳରେ ବହୁ ସଂଖ୍ୟକ ଉଦ୍ଧବ ଚଉତିଶା ରଚନା ନିମିତ୍ତ କବିମାନଙ୍କୁ କରିଥିଲା ଉତ୍ସାହିତ ।

ଶ୍ରୀଜଗନ୍ନାଥଙ୍କ ସ୍ନାନଯାତ୍ରା ଓ ଗୁଣ୍ଡିଚାଯାତ୍ରା ପ୍ରଭୃତିକୁ ଆଧାର କରି ତାଙ୍କର କେତେକ ଭକ୍ତି ରସାତ୍ମକ କବିତା ରଚିତ । ସେସବୁ ଉତ୍ସବ ଦର୍ଶନ ସୌଭାଗ୍ୟରୁ ବଞ୍ଚିତ କବି ଜଗନ୍ନାଥଙ୍କର ପୂର୍ବଦର୍ଶନ-ସ୍ମୃତିମାନଙ୍କର ଚାରଣକରି ଚମତ୍କାର ବର୍ଣ୍ଣନା ପ୍ରଧାନ

ଚଉତିଶା ରଚନା କରିଥିଲେ ମଧ ସେହି ବର୍ଣ୍ଣନା ନୀରସ ବିବରଣୀ ବା ଫଟୋଗ୍ରାଫି ମାତ୍ର ନୁହେଁ, ତହିଁରେ ରହିଛି କବିଙ୍କର ସୃଜନଶୀଳ କଳ୍ପନାର ଚାତୁର୍ଯ୍ୟ, କୁଶଳ ପରିବେଷଣ ପରିପାଟୀ ଓ ସ୍ୱକୀୟ ବ୍ୟକ୍ତିକୈନ୍ଦ୍ରିକ ଅନୁଭୂତିର ନିବିଡ଼ କରୁଣ ସ୍ପର୍ଶ । ତେଣୁ ଏହାର ମାଧୁର୍ଯ୍ୟ ଏକାମାତ୍ର ଉପଭୋଗସାପେକ୍ଷ । ମହାକାଳର ପ୍ରବଳ ଘୂର୍ଣ୍ଣିବାତ୍ୟାରେ ଶଙ୍କିତ ତାଙ୍କର ପ୍ରାଣ ଭବିଷ୍ୟତରେ ଇଷ୍ଟଦେବ ଜଗନ୍ନାଥଙ୍କ ଗୁଣ୍ଡିଚାଯାତ୍ରାର ଦର୍ଶନ ସୁଯୋଗ ପ୍ରାପ୍ତିର ଆଶା ଓ ଆଶଙ୍କାରେ ଦୋଳାୟିତ । କବି କହନ୍ତି;

''ଭକ୍ତ ଜନମନ କୁମୁଦ ଚନ୍ଦ୍ରମା ମଧୁର ହସ ଚାହିଁବା
ଭୁଜଭରା ଦେଇ ଭୃତ୍ୟଙ୍କ ଉପରେ ଭଙ୍ଗିମା ହୋଇ ରହିବା ସେ
ଭଙ୍ଗୀ ଜୀବନରେ ଜୀଉଁଥାଇଁ ସେ
ଭାଗ୍ୟ ସତେ ଏତେ କରିଛଇଁ ସେ
ଭବଭୟକୁ ଦେବା ପକାଇଁ ସେ''

କ୍ଷଣଭଙ୍ଗୁର ଜୀବନରେ ପୁନର୍ବାର ବର୍ଷାବଧି ଜୀବିତ ରହି ଏହି ଦୃଶ୍ୟ ଦେଖିବାର ସୌଭାଗ୍ୟ ଲାଭର ଆଶଙ୍କାରେ ଆନ୍ଦୋଳିତ କବିମାନସ ଯେପରି ସାର୍ବଜନୀନ ଅନୁଭୂତି ବହନ କରି ଏହି କବିତାର ପଂକ୍ତିମାନଙ୍କରେ ପ୍ରକାଶିତ, ତା'ର ଦୃଷ୍ଟାନ୍ତ ଅନ୍ୟତ୍ର ପ୍ରାୟ ଅସମ୍ଭବ ।

ସେହିପରି ସ୍ନାନଯାତ୍ରା ମହୋତ୍ସବରୁ ବଞ୍ଚିତ କବି ଅନୁରୂପ ମନୋବେଦନାରେ ବ୍ୟଥିତ ହୋଇ ଲେଖିଛନ୍ତି,

''ପୋଡୁ ପୋଡୁ ମୋର ପାପିଷ୍ଠ କରମ ଧିକ ଧିକ ମୋ ଜୀବନ,
ପଦ୍ମଲୋଚନ ଧୂପଦୀପ ଆଳତୀ କରିନାହିଁ ଦରଶନ,
ପରାମାନନ୍ଦ ସୁଖ,
ପରଶରେ ହେଁ ପଳାନ୍ତା ଦୁଃଖ ସେ,
ପଲକେ ହେଁ ନଛାଡ଼ନ୍ତି ପାଖ ସେ,
ପୁଷ୍ପ ଯେହ୍ନେ କରେ ଶିଳୀମୁଖ ସେ ।''

ବ୍ୟକ୍ତିଗତ ଭକ୍ତିଭାବନାରେ ରଚିତ ଏହି କବିତାମାନଙ୍କର ଅନ୍ତସ୍ୱରରେ ଜୀବନର ଯେଉଁ ଅନିତ୍ୟତା, କାଳର ଅନିଶ୍ଚୟତା ଓ ମଣିଷର କର୍ମବିଧାନ ତଥା ଅସହାୟ ଭାଗ୍ୟ ସଚେତନତା କାବ୍ୟରୂପ ନେଇ ପ୍ରକାଶ ପାଇଛି, ତାହା ପ୍ରତି ମଣିଷର ଅନ୍ତଃକରଣକୁ ମଧ ଆନ୍ଦୋଳିତ କରି ଦେବାକୁ କ୍ଷମ । ତାହାଛଡ଼ା ଏସବୁରେ ରହିଛି ଉପମାବୈଚିତ୍ୟ ଓ ଶବ୍ଦ ସଂଯୋଜନାଗତ ବୈଶିଷ୍ଟ୍ୟ । କବିଙ୍କ ସ୍ୱକୀୟ ଉପମାମାନ ନିର୍ବାଚନ ଓ ଉପଯୋଗର ଦୃଷ୍ଟାନ୍ତ ସ୍ୱରୂପ ଏଠାରେ ଏକ ଉଦ୍ଧୃତି ପ୍ରଦାନ

କରାଯାଇପାରେ, ଯାହାକି ସେହି ଯାତ୍ରାକାଳୀନ ଲୋକ ସମାଗମର ସ୍ୱରୂପକୁ ପ୍ରକଟିତ କରାଏ;

''ଘୋର ବରଷା ବଢ଼ି ନଦୀ ସମୁଦ୍ରେ ମିଶିଲା ପରାଏ ହୋଇ,
ଘନଘନ ହରିଧ୍ୱନି କି ବିସ୍ତାରି ପଶୁଥିବେ ଲୋକେ ଯାଇ ସେ ।''

ରଥଯାତ୍ରା ସମାରୋହରେ ଛତ୍ରଚାମରାଦିର ଶୋଭାବର୍ଣ୍ଣନା କରି କବି କହନ୍ତି;

''ଛୀର ସମୁଦ୍ର ଉଚ୍ଛୁଳିଲା ପରାଯେ ଛତ୍ରଚାମର ଦିଶିବା,
ଛୁରୀ ଖଣ୍ଡାଧାରୀ ଖଟଣୀ ସାମନ୍ତେ ଅଭୟ ପାଶେ ମିଶିବା ଯେ,
ଛତ୍ରବର ଗ୍ରହଣ,
ଛିତିଦେବୀ ଶିରେ ଆରୋହଣ ସେ,
ଛେଉ ଭବନିଧି ଉଦ୍ଧାରଣ ସେ
ଛାଡ଼େ ଭାବିଲେ ଭବ କଷଣ ସେ ।'' ଇତ୍ୟାଦି,

ଅଥବା :

''ଜଗତ ବ୍ରହ୍ମାଣ୍ଡ ଧରାକୁ ଧରି ସେ ଚକା ଛଡ଼ାଇବା ବେଳେ
ଜଗତଯାକ ଉଚ୍ଛୁଳି ପଡୁଥବ ଜୟ ଶବଦ ଗହଳେ ସେ'',
ଯଉଁ ସୁଖ ସେ କାଳେ,
ଯୋଗୀ ନଜାଣନ୍ତି ଯୋଗବଳେ ସେ,
ଜୀବ ପରମକୁ ଘେନି ଖେଳେ ସେ
ଜାଣିଥିବ ଯେ ଦେଖିଛି ତୋଳେ ସେ ।''

ସୁଦୂରରେ ଅବସ୍ଥାନ କରି ଏହି ଦୃଶ୍ୟ ଉପଭୋଗରୁ ବଞ୍ଚିତ ତାଙ୍କର ଭକ୍ତ ହୃଦୟର ଉଲ୍ଲାସ ବ୍ୟକ୍ତ କିରବାକୁ ଅସମର୍ଥ କବି କହନ୍ତି,

''ହୃଦୟ ଏତେବେଳେ ଯାହା ହେଉଛି କାହାକୁ କହିବି ତାହା,
ହରି ବାହାରେ ଏ ଦୁଃଖ ଜାଣିବାକୁ ଆଉ କେହି ନାହିଁ ସାହା
ହାନି ଲାଭ କରତା,
ହେଲେ ପରମ ପଦ ବିଧାତା ସେ,
ହରବ୍ରହ୍ମାଦି ଦେବ ଦେବତା ସେ
ହେବେ ସତେ ପ୍ରଭୁ ପ୍ରସନ୍ନତା ସେ ।''

ଭକ୍ତି ପ୍ରାଣ କବି ହୃଦୟର ଏହି ଇଷ୍ଟ ବିରହ ଜନିତ ଶୋକୋଚ୍ଛ୍ୱାସ ଏପରି ଅକୃତ୍ରିମ, ସହଜ ଓ ସ୍ୱତଃସ୍ଫୂର୍ତ୍ତ ଭାବରେ କାବ୍ୟିକ ଅଭିବ୍ୟକ୍ତି ଲାଭର ଦୃଷ୍ଟାନ୍ତ କ୍ୱଚିତ ପରିଦୃଷ୍ଟ ।

ଦିବ୍ୟ ଅଦିବ୍ୟ ଭାଷା ସମନ୍ୱୟରେ କାବ୍ୟଶିଳ୍ପରେ ପ୍ରବୃତ୍ତ କବି ଦୀନକୃଷ୍ଣ ଲୋକ ଗ୍ରାହକତା ପାଇଁ କଠିନ ଶବ୍ଦ ପ୍ରୟୋଗ ବା କ୍ଲିଷ୍ଟ କଳ୍ପନାମାନଙ୍କୁ ତାଙ୍କ ରଚନାରୁ ପରିହାର କରିଥିଲେ ମଧ ତାଙ୍କର ସମକାଳୀନ କାବ୍ୟଶିଳ୍ପୀ ରାଜା ଧନଞ୍ଜୟ ଭଞ୍ଜ ପ୍ରଭୃତିଙ୍କ କାବ୍ୟମାନଙ୍କର ଶାବ୍ଦିକ ମାୟାରେ ପ୍ରତିସ୍ପର୍ଦ୍ଧୀ ହୋଇ କବି ବେଳେ ବେଳେ ମଧ ଶବ୍ଦର ମାୟାଜାଲ ସୃଷ୍ଟି କରୁଥିଲେ । ଆଧୁନିକ ଅଭିରୁଚିରେ ଏହି ଶାବ୍ଦିକ ବିଭବ ଖଚିତ ଆଙ୍ଗିକର ମୂଲ୍ୟ କବିତାର ଅନ୍ତରାତ୍ମାର ବୈଶିଷ୍ଟ୍ୟ ଦିଗରୁ ଅପେକ୍ଷାକୃତ ଗୌଣ ବିବେଚିତ ହେଉଥିଲେ ମଧ ତତ୍କାଳୀନ ବିଦଗ୍ଧ ଅଭିରୁଚିରେ ଏପରି ଶବ୍ଦଶିଳ୍ପଗତ କୃତିତ୍ୱ ଥିଲା ମଧ କବିତ୍ୱ ବିଚାରର ମାନଦଣ୍ଡ । ସେଥିପାଇଁ ହିଁ ଧନଞ୍ଜୟଙ୍କର 'ରଘୁନାଥ ବିଳାସ' କାବ୍ୟଠାରୁ ଉତ୍କୃଷ୍ଟ କାବ୍ୟ ସୃଷ୍ଟି ନିମିତ୍ତ ଅଭିନିବେଶ କରି ଉପେନ୍ଦ୍ର ରଚନା କରିଥିଲେ 'ବୈଦେହୀଶ ବିଳାସ' । ଦୀନକୃଷ୍ଣ ଏପରି ଆଡ଼ମ୍ବରପୂର୍ଣ୍ଣ ଶବ୍ଦଗଣିତରେ ବିଶ୍ୱାସୀ ନଥିଲେ ହେଁ ନିଜର କିନ୍ତୁ ଏପରି ଶବ୍ଦବିନ୍ୟାସ ଶକ୍ତିର ପରିଚୟ ଦେବାକୁ ଯାଇ ସେ ରଚନା କରିଥିଲେ 'କମଳାକାନ୍ତ ଚଉତିଶା' । ଏପରି ହୁଏତ ଅନ୍ୟ ଅନେକ କବିତା ଦୀନକୃଷ୍ଣଙ୍କର ବା ଅନ୍ୟମାନଙ୍କର ଥାଇପାରେ, କିନ୍ତୁ କାଳପ୍ରବାହ ମଧରେ ଏଥିରେ ଅନ୍ତର୍ନିହିତ ଥିବା ଶାଶ୍ୱତ ପ୍ରଣୟୀ ଶ୍ରୀକୃଷ୍ଣଙ୍କର ରାଧାଙ୍କ ପ୍ରତି ଚାଟୁ ଓ କାନ୍ତି ପ୍ରଶଂସା ଏହି କବିତାର କ୍ଲିଷ୍ଟ ଆଙ୍ଗିକ ସତ୍ତ୍ୱେ ଏହାକୁ ଅଦ୍ୟାବଧି ଲୋକପ୍ରିୟ କରି ଆସିଅଛି । କବିତାର ଆରମ୍ଭରୁ କବି ଲେଖିଛନ୍ତି,

''କମଳାକାନ୍ତ ବହନ        ଭକ୍ଷଧାରୀ ନାରୀଯାନ<br>
    ତା ସୁତ ତା ରିପୁ ପୂର୍ଣ୍ଣ ମୁଖ ମଳିନ,<br>
କନକପୁର ଯାହାର        ତା ରିପୁ ଦୂତ ଭଣ୍ଡାର<br>
    କରିଛ ପାଣି ସଂଯୋଗ ରବିସୁତେଣ<br>
    କୁଚେପଡ଼େ କଜ୍ଜଳ ପାଣି<br>
କରି ରିପୁ ପତି ପତି ଶିରେ କି ଜାଣି ।'' ଇତ୍ୟାଦି ।

ଏପରି ଶବ୍ଦଯୋଜନାର ବୈଚିତ୍ର୍ୟ ସଂସ୍କୃତ ନୈଷଧାଦି କାବ୍ୟ ପରଂପରାରୁ ପ୍ରଚଳିତ ହୋଇ ଆସି ମଧ୍ୟଯୁଗୀୟ ପ୍ରାଦେଶିକ ଭାଷାର କାବ୍ୟ କବିତାରେ ମଧ ଅନୁସୃତ ହୋଇଥିଲା । ଦୀନକୃଷ୍ଣଙ୍କର କବିତାମାନଙ୍କରେ ଏପରି କ୍ଲିଷ୍ଟପଦ ଯୋଜନା ଅନ୍ୟତ୍ର କ୍ୱଚିତ ପରିଦୃଷ୍ଟ ହେଲେ ମଧ ଏହି କବିତାଟିରେ ବହୁଳ ପରିଦୃଷ୍ଟ ହୁଏ । ବୋଧହୁଏ ତତ୍କାଳୀନ ଶବ୍ଦାଡ଼ମ୍ବର ଶୈଳୀ ପାଇଁ ଆତ୍ମପ୍ରସାଦ ଲାଭ କରୁଥିବା କବିମାନଙ୍କୁ କବି ଏହି କବିତାଟି ସଶ୍ରଦ୍ଧ ସମର୍ପଣ କରିଥିଲେ । କିନ୍ତୁ ଏପରି ଶୈଳୀ ଦୀନକୃଷ୍ଣଙ୍କର ଯେ କଦାପି ନିଜସ୍ୱ ନୁହେଁ ତାହା ତାଙ୍କର ରଚନାମାନଙ୍କର ସାମଗ୍ରିକ ସ୍ୱରୂପରୁ ପ୍ରତୀତ ହୋଇଥାଏ । ସମଗ୍ର ଜଣାଣ, ଚଉତିଶା ବା ଭଜନ ପରଂପରାରେ କବି ଦୀନକୃଷ୍ଣଙ୍କର ଆର୍ତ୍ତତ୍ରାଣ ଚଉତିଶା ଲାଭ କରିଆସିଛି ଅପ୍ରତିଦ୍ୱନ୍ଦ୍ୱୀ ଲୋକପ୍ରିୟତା । ଜୀବନରେ ବହୁ ଆଶାର ଅପୂର୍ଣ୍ଣତା ଓ ନୈରାଶ୍ୟ ଜର୍ଜରିତ ଭଗ୍ନ ହୃଦୟରୁ ଝରିଆସିଛି ଏହାର ଭାବ ମନ୍ଦାକିନୀ । ଆପଣା ଉପରୁ ଅଥବା ଜଗତର

ସାନବଡ଼ ପରିଦୃଷ୍ଟ ବହୁ ଶକ୍ତିମାନଙ୍କ ଉପରୁ ଯେତେବେଳେ ମଣିଷର ଭରସା ତୁଟିଯାଏ ସେତେବେଳେ ଅନନ୍ୟୋପାୟ ହୋଇ ସେ ନିର୍ଭରକରେ ଅନ୍ୟ ଏକ ଅଦୃଷ୍ଟ ଅଚିନ୍ତ୍ୟ ଶକ୍ତିମାନ ଉପରେ । ଜୀବନର ସୃଷ୍ଟି ସ୍ଥିତି ଓ ଲୟକୁ ନିୟନ୍ତ୍ରିତ କରୁଥିବା ସେହି ଅଦୃଶ୍ୟ ସର୍ବ ଶକ୍ତିମାନ ଠାରେ ନିଜର ଅସାମର୍ଥ୍ୟ, ବିଫଳତା ଓ ନୈରାଶ୍ୟକୁ ସେ ଏକାନ୍ତ ନିଭୃତ ଅନ୍ତର ମଧ୍ୟରେ ହିଁ ପ୍ରକାଶ କରିଦିଏ । ଅନ୍ତରର ଏହି ଅଭିବ୍ୟକ୍ତିକୁ କବି ଆପଣାର ଇଷ୍ଟ ଦେବତା ନୀଳାଚଳ ନାଥ ଠାରେ ପ୍ରକାଶ କରିଦେବା ବେଳେ ତାଙ୍କର ଅଭିମାନର ସ୍ୱର ଏପରି ଏକ ସ୍ୱାଭିମାନୀ ବିଦ୍ରୋହୀ ଭକ୍ତର ସ୍ୱରରେ ପରିଣତ ହୋଇଛି ଯେ ତାହା ସତେଯେପରି ସେହି ସର୍ବଶକ୍ତିମାନ ଜଗନ୍ନାଥଙ୍କର ଅସୀମ ଶକ୍ତିମତ୍ତାର ପ୍ରସିଦ୍ଧି ପ୍ରତି ପ୍ରଚଣ୍ଡ ଏକ ଆହ୍ୱାନରେ ହୋଇଛି ରୂପାନ୍ତରିତ । ଏକାନ୍ତ ବସ୍ତୁନିଷ୍ଠ ପଦ୍ଧତିରେ ତର୍କମାନ ଉପସ୍ଥାପନ କରି ସେ ଜଗନ୍ନାଥଙ୍କର ସମସ୍ତ ଅତୀତ କୀର୍ତ୍ତି ଓ କୃତିତ୍ୱମାନଙ୍କର ଯଥାର୍ଥତା ପ୍ରମାଣିତ କରିବାକୁ ବେଳେ ବେଳେ ନମ୍ର, ଓ ବେଳେବେଳେ ଉଗ୍ର ସ୍ୱରରେ ପ୍ରଶ୍ନମାନ କରନ୍ତି । ଏଥିରୁ ପ୍ରକଟିତ ହୁଏ ତାଙ୍କର ଇଷ୍ଟ ଭକ୍ତିର ଗଭୀରତା, ଇଷ୍ଟର ସମୀପବର୍ତ୍ତିତା, ନିବିଡ଼ ଆତ୍ମୀୟତା । ଭକ୍ତମାନଙ୍କର ଆର୍ତ୍ତି ଓ କଷଣ ସହି ନପାରି ଜଗନ୍ନାଥ ଗଜନିସ୍ତାର କରିଥିଲେ ଅଥବା ଶ୍ରୀବସ ବ୍ରାହ୍ମଣର ଦୁଃଖ ଜାଣିଥିଲେ, କିମ୍ବା ଗୁରୁ ସାନ୍ଦୀପନୀଙ୍କର ପୁତ୍ରଶୋକ ବେଦନା ଜାଣିପାରିବା ମାତ୍ରକେ ସେମାନଙ୍କର ଦୁଃଖ ହରଣ କରିଥିଲେ ବୋଲି ପୁରାଣ ପ୍ରସିଦ୍ଧିମାନ ଥିବାବେଳେ କବିଙ୍କର ଆକୁଳ ଜଣାଣ ଶୁଣିପାରୁ ନଥିବାରୁ କବି ତାଙ୍କୁ 'କାନରେ ବିଣ୍ଡା ଦେଇ ରୁଦ୍ଧ କରିଥିବା'ର ଅନୁମାନରେ ସୁଭାଷଣ ଶୈଳୀରେ ପ୍ରଶ୍ନକରନ୍ତି,

''ଡେରିଥିଲ ଶ୍ରବଣ          ଗଜଆଦି ବ୍ରାହ୍ମଣ
    ଡାକିଲା ମାତ୍ରକେ ଶୁଣିଲ ।
ଡୋଳା ଗୋଚରେ ଥାଇ          ଡାକିଲେ ନଶୁଭଇ
    କର୍ଣ୍ଣକୁହର କି ମୁଦିଲ ହେ, ମହାପ୍ରଭୁ,
    ଡାକ ବାଜୁଛି ଜଗତରେ,
    ଡାକିଲେ ତ ଶୁଣ କର୍ଣ୍ଣରେ
ଡରିଲ କି ମୋହୋର          ବିପତ୍ତି ଦେଖି ଘୋର
    ତେଣୁ ବା ନଶୁଣୁଛ ବାରେ ହେ ମହାପ୍ରଭୁ ।''

ହୁଏତ କଥିତ ହୋଇପାରେ ଯେ ମଣିଷ କର୍ମଫଳର ଅଧୀନ, ତେଣୁ ତା'ର କର୍ମଫଳ ଭୋଗବେଳେ ତହିଁରୁ ତ୍ରାହି ପାଇବା ଦିଗରେ ଈଶ୍ୱରଙ୍କର କିଛି ମାତ୍ର କରିବାର ନାହିଁ । ଏପରି ଯୁକ୍ତିକୁ ଗ୍ରହଣ କଲେ ଈଶ୍ୱର-ଅସ୍ତିତ୍ୱର ଆବଶ୍ୟକତା ହେବ ଅନନୁଭୂତ । କିନ୍ତୁ କବିଙ୍କର ଦୃଢ଼ ଭକ୍ତି ଦୃଷ୍ଟିରେ ଈଶ୍ୱର ଜଗନ୍ନାଥ ସମଗ୍ର ଜଗତର ସର୍ବଶକ୍ତିଶାଳୀ ଭାବେ ବିଦ୍ୟମାନ, ତେଣୁ ତାଙ୍କଠାରେ ଆପଣାର ଦୁଃଖ ଦୈନ୍ୟାଦି ପ୍ରକାଶକରି ତାହା ଦ୍ୱାରା ଭାରାକ୍ରାନ୍ତ ଚିତ୍ତକୁ ଲାଘବ କରିବାର ପ୍ରୟାସକରି ସେହିପରି ଶାଣିତ ସ୍ୱରରେ କହନ୍ତି,

''ଲଲାଟର ଲେଖନ କେ କରିପାରେ ଆନ
ଏମନ୍ତ ଆଜ୍ଞା ହେବ ଅବା,
ଲଭି ତୁମ୍ଭଙ୍କୁ ପତି ପଣେ ହେ ରମାପତି
କର୍ମକୁ ଯଦି ଆଦରିବା ହେ ମହାପ୍ରଭୁ,
ଲୀଳା ମାତ୍ରକେ ଏ ସଂସାର,
ଲୂତାସୁତା ପ୍ରାୟ ସଂହର ।
ଲୋକ କର୍ମକୁ ଏହୁ କଥା ହେ ମହାବାହୁ
ଏମନ୍ତ ବିଚାର ମନର, ମହାପ୍ରଭୁ !''

ଯେ ଲୀଳା ମାତ୍ରକ ପାଇଁ ଏହି ସଂସାର ସୃଷ୍ଟିକରି ଉର୍ଣ୍ଣନାଭିତୁଲ୍ୟ ଲୀଳାଦି ସହିତ ଏହାକୁ ନିମିଷକେ ସଂହାର କରି ନେବାର ଅନନ୍ତ ଅଚିନ୍ତ୍ୟ ଶକ୍ତିର ଅଧିକାରୀ, ତାଙ୍କର କୃପାଧୀନ ଭକ୍ତ କେବେହେଁ କର୍ମଫଳ ମାତ୍ରରେ ବିଶ୍ୱାସ କରି ନପାରେ । ଜଗନ୍ନାଥ ସ୍ୱଭକ୍ତମାନଙ୍କ ପାଇଁ ଏପରି କର୍ମଫଳବାଦର ବହୁ ବ୍ୟତିକ୍ରମ ଘଟାଇ ଥିବାର ଅଶେଷ ଦୃଷ୍ଟାନ୍ତମାନ ଥିଲେ ମଧ କବି ତତ୍‌କ୍ଷଣାତ ଦୃଷ୍ଟାନ୍ତ ଦେଇ କହନ୍ତି,

''ବିଚିତ୍ର କରି ଗୁରୁ ପୁତ୍ର ଶମନ ପୁରୁ
ଈଷିତ ମାତ୍ରକେ ଆଣିଲ,
ବିଂଶକର ଅମର ବର କରିଣ ଦୂର
ବିନାଶି ବିଧିକି ଜିଣିଲ ହେ, ମହାପ୍ରଭୁ,
ବିଷମ ସଂକଟୁ ଉଦ୍ଧର
ବିଶ୍ୱ ସଂସାରୁ କର ପାର,
ବିଶେଷେ ବାଞ୍ଛାନିଧି ବାଞ୍ଛାକର ପ୍ରସିଦ୍ଧି
ବୋଲି ବହୁତ ବାଂଛାମୋର ହେ, ମହାପ୍ରଭୁ ।''

ସୁଦୀର୍ଘ ଚତୁତ୍ରିଂଶତି ପଦରେ ରଚିତ ଏହି ଚଉତିଶାରେ ପ୍ରାୟ ପ୍ରତ୍ୟେକ ପଦରେ ଜଗନ୍ନାଥ କବିଙ୍କ ପ୍ରତି କୃପା ନକରି ଗୁରୁତର ପକ୍ଷପାତିତା ଅନୀତି, ଅନ୍ୟାୟ ଓ ଅବିଚାର କରୁଛନ୍ତି ବୋଲି ସୁନିର୍ବାଚିତ ଦୃଷ୍ଟାନ୍ତ ସମର୍ଥିତ ଯୁକ୍ତିମାନଙ୍କ ସାହାଯ୍ୟରେ ପ୍ରମାଣିତ କରାଇ ଜଗନ୍ନାଥଙ୍କର ଏହି ନିଷ୍ଠୁରତାକୁ ପ୍ରତିପାଦିତ କରାନ୍ତି । ତଥାପି ପ୍ରତି ପଦରେ ମଧ ରହିଛି କାକୁ, ବକ୍ରୋକ୍ତି ଓ ଶ୍ଳେଷାଦି ରୀତିରେ ଶ୍ରୀଜଗନ୍ନାଥଙ୍କର ଅସୀମ ଅଚିନ୍ତ୍ୟ ସର୍ବଶକ୍ତିମାନତା । ଅନ୍ୟ ଗୋଟିଏ ଲୋଭନୀୟ ପଦରେ କହନ୍ତି,

''ତୁମ୍ଭେ ତ୍ରିତାପହର ତ୍ରିଭୁବନ ଈଶ୍ୱର
ପତିତ ଜନ ନିସ୍ତାରଣ ।
ତେଣୁ କରି ତୁମ୍ଭର ଶରଣ ନିରନ୍ତର
ଯେଣୁ ମୁଁ ପତିତ ଭୂଷଣ ହେ, ମହାପ୍ରଭୁ,

ତଥାପି କରୁଣା ନିଧାନ
ତ୍ରାହି ନକଲେ ଦୀନଜନ,
ତେବେ ତୁମ୍ଭର ଦୀନ ବନ୍ଧୁନାମକେତନ
ତେଜ ତ୍ରିଭୁବନ ମୋହନ ହେ, ମହାପ୍ରଭୁ ।''

ତ୍ରିତାପହର, ତ୍ରିଭୁବନ ଈଶ୍ୱର, ତୈଲୋକ୍ୟମୋହନ, ପ୍ରଭୃତି ପ୍ରତ୍ୟେକ ଶବ୍ଦର ବିସ୍ତୃତ ଦାର୍ଶନିକ ବ୍ୟାଖ୍ୟା କରାଯାଇପାରେ, କିନ୍ତୁ ତତ୍ତ୍ୱବାଚକ ଏହି ଶବ୍ଦଗୁଡ଼ିକ ଭକ୍ତତନ୍ମୟ କବିର ଆବେଗ ପ୍ରବଣତା ମଧ୍ୟରେ ସ୍ୱକୀୟ ଦାର୍ଶନିକ ସତ୍ତା ହରାଇ କବିତାର ଅଙ୍ଗୀଭୂତ ସୌନ୍ଦର୍ଯ୍ୟ ଉତ୍ପାଦକ ଉପାଦାନରେ ପରିଣତ ହୋଇ ଯାଇଛନ୍ତି । ଅନନ୍ତ ଦୁଃଖ ଯାତନାର ଚିରନ୍ତନୀ ଅଭିଶାପ ବହନ କରି ମନୁଷ୍ୟ ହୁଏ ଆତଯାତ । ଯାହା ଦୀନକୃଷ୍ଣଙ୍କର ବ୍ୟକ୍ତିଗତ ଜୀବନର କରୁଣ ଗାଥା ତାହା ମଧ୍ୟ ସବୁ ମଣିଷର ନିଜସ୍ୱ ଅନୁଭୂତିର ଦୈନନ୍ଦିନ ବ୍ୟାପାର । ସଂସାର ସୁଲଭ ଦୁଃଖ ରାଶିରୁ ତ୍ରାହି ପାଇବାର କରୁଣ ବ୍ୟଗ୍ରତା ଓ ତହିଁରେ ବିଫଳତାଜନିତ ବିଷାଦ ଓ ବିକ୍ଷୋଭ ଯେପରି କମନୀୟ କାବ୍ୟିକ ଅଭିବ୍ୟକ୍ତି ନେଇ ଏହି ଦୀର୍ଘ କବିତାର ପରିସରକୁ ରସସାନ୍ଦ୍ର କରିଛନ୍ତି ତାହା ଏ ଦେଶର ଲକ୍ଷଲକ୍ଷ ମଣିଷର ଅନ୍ତଃସ୍ଥଳକୁ ଗଭୀର ଭାବେ କରିଛି ପ୍ରଭାବିତ । ସରଳ ସୁଲଳିତ ଶବ୍ଦ ବିନ୍ୟାସରେ ସ୍ରଷ୍ଟା ଅନ୍ତରର ନିବିଡ଼ ଅନୁଭୂତି ମାନଙ୍କର ବ୍ୟଙ୍ଗାତ୍ମକ ପ୍ରକାଶଭଙ୍ଗୀ ଓ ଇଷ୍ଟଦେବତା ସହିତ ଏକାନ୍ତ ଆତ୍ମୀୟତାର ସୁମଧୁର ପରଶ ଏହି ଜଣାଣ କବିତାକୁ ଲୋକପ୍ରିୟତାର ଯେଉଁ ଗୌରବ ଦେଇଛନ୍ତି ତାହା ଓଡ଼ିଶାର ଅନ୍ୟ କୌଣସି ଭକ୍ତି ରସାତ୍ମକ କବିତା ପକ୍ଷେ ସମ୍ଭବ ହୋଇନାହିଁ । ଏହି କବିତାର କଳାଗତ ଉତ୍କର୍ଷ ଏହାକୁ ଅନୁକରଣ ଓ ଅନୁସରଣ କରିବା ପାଇଁ କବିକୁଳକୁ କରିଛି ଉତ୍ସାହିତ । କବିସୂର୍ଯ୍ୟ ବଳଦେବଙ୍କ 'ସର୍ପଜଣାଣ' କବିତା ରଚନା ପାଇଁ ଏହି 'ଆର୍ତ୍ତତ୍ରାଣ ଚଉତିଶା'ର ରହିଛି ଅନୁପ୍ରେରଣା ଓ ଆଶୀର୍ବାଦ । କବି ଭୋବନିଙ୍କର 'ରାମଚନ୍ଦ୍ର ଜଣାଣ ଚଉତିଶା', ସାଧୁଆଙ୍କର 'ଜଗବନ୍ଧୁ ଚଉତିଶା' ପ୍ରଭୃତି କବିତା ସତେ ଯେପରି 'ଆର୍ତ୍ତତ୍ରାଣ ଚଉତିଶା'ର ଅନୁକୃତି ମାତ୍ର । ଯଦୁମଣିଙ୍କ ବିଖ୍ୟାତ 'ନୀଳାଚଳ କଳାକର' ଜଣାଣ କବିତାର ଅଭିମାନୀ ସ୍ୱରକୁ ଉଗ୍ର କରିବା ଦିଗରେ ମଧ୍ୟ ଦୀନକୃଷ୍ଣଙ୍କର ଏହି କବିତା ପ୍ରଦାନ କରିଛି ଅସୀମ ସାହସ ।

ଯଦି କୌଣସି ଶାସ୍ତ୍ରଗ୍ରନ୍ଥ ବା 'ରସକଲ୍ଲୋଳ' କାବ୍ୟଗ୍ରନ୍ଥ ରଚନା କରି ନଥାନ୍ତେ କେବଳ ଏହି ସୁଲଳିତ ଗୀତି କବିତା ସମ୍ଭାର ସୃଷ୍ଟିକରି ଦୀନକୃଷ୍ଣ ମଧ୍ୟ ଓଡ଼ିଆ ସାହିତ୍ୟରେ ଯଶସ୍ୱୀ କବି ଭାବରେ ଅମର ରହି ପାରିଥାନ୍ତେ ।



**ପଞ୍ଚମ ପରିଚ୍ଛେଦ**

# ଅନ୍ତର୍ମୁଖୀନ କବିମାନସର ଆତ୍ମବିଶ୍ଳେଷଣ

## ୧) ପରିବର୍ତ୍ତିତ ଆଭିମୁଖ୍ୟ :

'ଗୁଣସାଗର' ଗ୍ରନ୍ଥ ରଚନାଠାରୁ 'ଜଗମୋହନ ଛାନ୍ଦ' ରଚନା ପର୍ଯ୍ୟନ୍ତ କବି ଦୀନକୃଷ୍ଣଙ୍କର ସମସ୍ତ ଗ୍ରନ୍ଥର ବିଷୟବସ୍ତୁରେ ତାଙ୍କର କୃଷ୍ଣଭକ୍ତି ଭାବ ହିଁ ପ୍ରତିଫଳିତ । କୃଷ୍ଣଭକ୍ତି ମହିମା ପ୍ରତିପାଦନ ନିମିତ୍ତ ସେ କବିକର୍ମରେ ମନୋନିବେଶ କରିଥିବାର ଆମର ଅନୁମାନକୁ ସତ୍ୟରେ ପ୍ରତିପାଦିତ କରାଏ 'ରସବିନୋଦ'ରେ ରୁକ୍ମିଣୀଙ୍କୁ ଶ୍ରୀକୃଷ୍ଣଙ୍କର ଉକ୍ତି ଭିତରେ କବିଙ୍କର ସ୍ୱକୀୟ ଅଭିମତ । କବି କହନ୍ତି :

''ଆବର ଯେତେ ଲୋକମାନ । କରନ୍ତି ନାମ ସଂକୀର୍ତ୍ତନ ।।
ସେ ଲୋକମାନଙ୍କ ବାସନା । ଏ ଦେହ ଥିବାଯାଏ ସିନା ।।
ବିଷ୍ଣୁକଥାରେ ହୋଇ ପ୍ରୀତି । ସଂସାରେ ନରହଇ କୀର୍ତ୍ତି ।।
ଗତ ବାସନା ଥାଇ ଯେବେ । ଗୁଣ ପ୍ରାପତ ହୋଇ ତେବେ ।।''

ଭକ୍ତମାନେ ଶ୍ରବଣ କୀର୍ତ୍ତନାଦି ଭକ୍ତିସାଧନ କରୁଥିବାବେଳେ ସଂସାରରେ କୃଷ୍ଣଭକ୍ତିମୂଳକ କୌଣସି ସ୍ଥାୟୀ କୀର୍ତ୍ତି ରଖି ଯାଉନଥିବା ବେଳେ ଯେଉଁ ଭକ୍ତମାନେ କବି କର୍ମକରି ଗ୍ରନ୍ଥରୂପୀ କୀର୍ତ୍ତି ସ୍ଥାପନ କରିଥାନ୍ତି ସେମାନଙ୍କର କର୍ମ ସାଧାରଣ ଭକ୍ତମାନଙ୍କ ଅପେକ୍ଷା ଉତ୍କୃଷ୍ଟ ସ୍ତରର ବୋଲି ବିବେଚନା କରି କବି ସେହି ଗ୍ରନ୍ଥ ଓ ଗ୍ରନ୍ଥକର୍ତ୍ତାଙ୍କ ସମ୍ବନ୍ଧରେ କହନ୍ତି,

''ସେ ପଦ ଯେଉଁମାନେ ପାନ୍ତି । ଇହଲୋକରେ ତରି ଯାନ୍ତି ।।
କର୍ଣ୍ଣେ ଶୁଣନ୍ତି ଯେଉଁମାନେ । ମୁକତ ହୁଅନ୍ତି ସେମାନେ ।।
କବିତ୍ୱ ପଦ ସୁଖ ପ୍ରୀତି । ଚାରି ଯୁଗରେ ଥାଇ କୀର୍ତ୍ତି ।।''

*(ରସ ବିନୋଦ, ୧୬ଶ ଅଧ୍ୟାୟ)*

ସ୍ୱକୀୟ କବିଯଶ ଅର୍ଜ୍ଜନ ପରିବର୍ତ୍ତେ ନିଜେ ପରମାର୍ଥ ସାଧନ ପୂର୍ବକ ଅନ୍ୟମାନଙ୍କୁ ଭକ୍ତିଭାବନାରେ ଉଦ୍‌ବୁଦ୍ଧ କରାଇବାର କୀର୍ତ୍ତିଲାଭ, ଗ୍ରନ୍ଥ ରଚନାର ଲକ୍ଷ୍ୟ ହୋଇଥିବାରୁ ଏଥିରେ ଗ୍ରନ୍ଥମାନଙ୍କର କାବ୍ୟଧର୍ମ ବା ରସସୌନ୍ଦର୍ଯ୍ୟାଦି ପ୍ରତି କବିଙ୍କର ଉଦାସୀନତା ହୋଇଛି ପ୍ରକଟିତ । ତେଣୁ ଉପରେ ଆଲୋଚିତ ତଥା ଅନାଲୋଚିତ

କେତେକ ଗ୍ରନ୍ଥମାନଙ୍କରୁ ଆମେ ସର୍ବତୋଭାବେ କାବ୍ୟିକ ରସ ସଂପଦ ସୁସମ ଭାବେ ଲାଭ କରିବାରୁ ବଞ୍ଚିତ ହୋଇଥାଉ । ଏଗୁଡ଼ିକ ମୁଖ୍ୟତଃ ପ୍ରାୟ ନୀତି ଉପଦେଶପୂର୍ଣ୍ଣ ଶିକ୍ଷାପ୍ରଦ ଗ୍ରନ୍ଥ । ଉଚ୍ଚଶିକ୍ଷା ବା ପାଣ୍ଡିତ୍ୟ-ପ୍ରସିଦ୍ଧିଲାଭରୁ ବଂଚିତ ହୋଇଥିବା ଏବଂ ନିଜର କୌଳିକ କର୍ମ କୃଷି ବା ବଣିଜାଦି ପ୍ରତି ଅସମର୍ଥ ଥିବା ଏହି କବି ନିଜ ଜାତିର ଜାତିଗର୍ବେଶ୍ୱରମାନଙ୍କ ଦ୍ୱାରା ଉପେକ୍ଷିତ ହୋଇଥିବାର ତାଙ୍କ ସ୍ୱକୀୟ ଉକ୍ତିରୁ ପ୍ରତୀତ ହେଉଥିବାରୁ ତାଙ୍କର ସମସାମୟିକ କାବ୍ୟ ଶିଳ୍ପ ଶୈଳୀ ସମ୍ବନ୍ଧରେ ତାଙ୍କର ପ୍ରାୟ ବିଶେଷ କୌଣସି ଜ୍ଞାନ ନଥିବାର ଅନୁମତି ହୁଏ । ତେଣୁ ତାଙ୍କ କବି ଜୀବନର ପ୍ରଥମ ପର୍ଯ୍ୟାୟରେ ସେ କେବଳ ସାଧାରଣ ନୀତିଗ୍ରନ୍ଥମାନ ରଚନା କରୁଥିବାବେଳେ ବୋଧହୁଏ ପଠନ ପାଠନର ଆବଶ୍ୟକତା ଦୃଷ୍ଟିରୁ ସଂସ୍କୃତ ଓ ପ୍ରାକୃତ ଗ୍ରନ୍ଥମାନ ଅଧ୍ୟୟନ କରି କାବ୍ୟରଚନା ଶୈଳୀ ଓ ବିଧିବିଧାନ ସମ୍ବନ୍ଧରେ ପରିଚିତ ହୋଇ ପାରିଥିଲେ । ଗ୍ରନ୍ଥ ରଚନାର ଦୀର୍ଘ ଅଭ୍ୟାସ ହେତୁ ସେ ଶବ୍ଦଶିଳ୍ପରେ ନିଜର ଆଧିପତ୍ୟ ଲାଭ କରିବାରେ କ୍ରମେ ସମର୍ଥ ହୋଇ ରୀତି ଯୁଗୀୟ ଅଳଙ୍କାର ମଣ୍ଡିତ କାବ୍ୟରଚନା ପାଇଁ ଆତ୍ମ ପ୍ରତ୍ୟୟ ସଂଚୟ କରିପାରିଥିଲେ । ବହୁ ଗ୍ରନ୍ଥ ରଚନା ସତ୍ତ୍ୱେ ସେ ଯୁଗର ରସଲିପ୍ସୁ ବିଦଗ୍ଧ ମହଲରେ ତାଙ୍କୁ କେହି କବି ଭାବରେ ପ୍ରାୟ ସ୍ୱୀକୃତି ଦେଇ ନଥିବା ଏବଂ ସେହି ଗ୍ରନ୍ଥଗୁଡ଼ିକ ଉଚ୍ଚଶ୍ରେଣୀୟ କାବ୍ୟ ରସିକମାନଙ୍କ ଦ୍ୱାରା ଆଦୃତ ହୋଇପାରି ନଥିବାର କବି ସ୍ୱୟଂ ମଧ୍ୟ ଅନୁଭବ କରିଥିଲେ ବୋଲି ତାଙ୍କ ରସକଲ୍ଲୋଳ ଗ୍ରନ୍ଥରେ କହନ୍ତି,

''କଲେ ତୁମ୍ଭର ରସରେ ଗୀତ
ରସଇ ନାହିଁ ତହିଁରେ ଚିତ୍ତ
ବୋଲନ୍ତି କର୍ଣ୍ଣେ ଶୁଣି ବିଶେଷ
ରସ ନୋହେ ତ ଯେ ।''

ତାଙ୍କର ଗ୍ରନ୍ଥମାନଙ୍କ ସମ୍ବନ୍ଧରେ ଉଚ୍ଚସ୍ତରରେ ପ୍ରତିକୂଳ ସମାଲୋଚନା ତାଙ୍କୁ ଆତ୍ମସମୀକ୍ଷଣର ସୁଯୋଗ ଦେଲା । ତେଣୁ ତତ୍କାଳୀନ ବିଦଗ୍ଧ ସମାଜର ଅଭିରୁଚି ପ୍ରତି ସଚେତନ ହୋଇ କବି ରଚନା କରିବାକୁ ଆରମ୍ଭ କଲେ ରୀତିଯୁଗୀୟ ଅଳଙ୍କରଣ ରୀତିରେ ଗୀତିକବିତା ଓ କାବ୍ୟ । ଉତ୍ତର ମଧ୍ୟକାଳୀନ ଓଡ଼ିଆ ସାହିତ୍ୟର ବିଦଗ୍ଧ କବିମାନଙ୍କ ଦ୍ୱାରା ଅନୁସୃତ ଓ ରାଜପୁରୀମାନଙ୍କରେ ସମାଦୃତ ଶୃଙ୍ଗାର-ପ୍ରଧାନ ଅଳଙ୍କାର ମଣ୍ଡିତ କାବ୍ୟ ରଚନାର ଶୈଳୀ ଓ ପଦ୍ଧତି ସହିତ ପରିଚିତ ହେବା ପରେ କବି କାଳ୍ପନିକ ଚରିତ୍ରମାନଙ୍କ ପରିବର୍ତ୍ତେ ପ୍ରସିଦ୍ଧିଲାଭ କରିଥିବା ତାଙ୍କର ଗୋପୀ-କୃଷ୍ଣ ପ୍ରୀତି ପ୍ରଧାନ ବିଷୟମାନଙ୍କୁ ଆଧାର କରି ରଚନା କରିଥିଲେ 'ଦ୍ୟୂତକେଳି', 'ଘାଟବୋଲୀ', ଅଥବା 'କମଳାକାନ୍ତ ଚଉତିଶା' ପ୍ରଭୃତି ଶୃଙ୍ଗାର-କୌତୁକ ରସାଣିତ ଦୀର୍ଘ କବିତା ବା ଖଣ୍ଡକାବ୍ୟ । ନିର୍ଦ୍ଦିଷ୍ଟ ଲକ୍ଷ୍ୟ, ପଦ୍ଧତି ବା କାବ୍ୟାଦର୍ଶ ପ୍ରତି ସଚେତନ

ନଥାଇ ଚିରାଚରିତ ପଞ୍ଚସଖା ଯୁଗୀୟ ଶାସ୍ତ୍ର ରଚନା ଧାରାରେ ଯୋଗତତ୍ତ୍ୱ, ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ ଓ ଶୂନ୍ୟ-ନିରାକାର-ନିର୍ଗୁଣ-ନିରଂଜନ ତତ୍ତ୍ୱର ରହସ୍ୟାବୃତ ଅନ୍ଧକାର ମଧ୍ୟରେ ସନ୍ଦିଗ୍ଧ ଚିତ୍ତରେ ଆବର୍ତ୍ତ-ମାନ କବିମାନସ ବ୍ରଜଲୀଳା ରସପ୍ରତି ହେଲା ଦ୍ରୁତ ଆକର୍ଷିତ । ତେଣୁ ଇନ୍ଦ୍ରିୟ ସମ୍ଭୋଗ ଭିତରେ ଅତୀନ୍ଦ୍ରିୟ ଆଧାତ୍ମିକ ସିଦ୍ଧି ବିମଣ୍ଡିତ ଆଭିରୀ-ଗୋପାଙ୍ଗନା ମାନଙ୍କର ବ୍ରଜବିଳାସ ଗାଥା ଅବଲମ୍ବନରେ ସେ ଆରମ୍ଭକଲେ ପୂର୍ଣ୍ଣାଙ୍ଗ ଅଳଙ୍କାର-କାବ୍ୟ ରାଗରାଗିଣୀ ମଣ୍ଡିତ ମଧୁମଙ୍ଗଳ ।

## ୨) ମଧୁମଙ୍ଗଳ :

ରୀତି ଯୁଗୀୟ ରାଗରାଗିଣୀ, ଛନ୍ଦ ଓ ଅଳଙ୍କାର ବିନ୍ୟାସରେ କେବଳ ନୀଳାଚଳରେ ଶ୍ରୀଜଗନ୍ନାଥଙ୍କର ଯାତ୍ରାଦି ଉତ୍ସବବର୍ଣ୍ଣିତ। କଥାବସ୍ତୁ ବା କୌଣସି ଉପାଖ୍ୟାନର ମେରୁଦଣ୍ଡ ଅଭାବରେ ଏହା ଗୋଟିଏ କୋମଳ ଲତିକାତୁଲ୍ୟ ନମନଶୀଳ । ତେଣୁ କୃଷ୍ଣଭକ୍ତି ପରାୟଣ କବି ଏବେ କାବ୍ୟ ରଚନାର ପ୍ରୟାସ ବେଳେ ଏହାର ଅସ୍ଥିପଞ୍ଜର ରୂପେ ନିର୍ବାଚନ କରନ୍ତି କୃଷ୍ଣକଥାର ବ୍ରଜଲୀଳା । ପ୍ରଥମ ଛାନ୍ଦରେ ଦେବସ୍ତୁତି ଓ ହରିହର ଉକ୍ତି-ପ୍ରତ୍ୟୁକ୍ତି ମାଧମରେ ମଙ୍ଗଳାଚରଣ ବିଧାନ ସମାହିତ । କ୍ରମେ ଘଟଣାର ବୈଚିତ୍ର୍ୟ ସୂତ୍ରପାତ କରିବା ଅଭିପ୍ରାୟରେ କଂସର ପୂର୍ବଜନ୍ମ ଚରିତ ପ୍ରଚଣ୍ଡ ପ୍ରତାପ, ଦେବକୀ ବିବାହ, ଶୂନ୍ୟବାଣୀ ଶ୍ରବଣରେ ଦେବକୀ ବସୁଦେବଙ୍କୁ ବନ୍ଦୀ ଗୃହରେ ନିକ୍ଷେପଣ; କୃଷ୍ଣ ବଳରାମ ଜନ୍ମ, ଗୋକୁଳରେ ବାଲ୍ୟ-କୈଶୋର ଲୀଳା ଓ କଂସବଧ ପ୍ରଭୃତି ବର୍ଣ୍ଣିତ । ଏହି କାବ୍ୟ ରଚନା ପରେ ଅର୍ଜିତ କୁଶଳତାର ଉପଯୋଗ କରି ଏହାକୁ ପଲ୍ଲବିତ ରୂପ ଦେଇ ରଚନା କଲେ ତାଙ୍କର ବିଖ୍ୟାତ 'ରସକଲ୍ଲୋଳ କାବ୍ୟ' ଯାହାକି ହେଲା ଓଡ଼ିଆ କାବ୍ୟ ରଚନା ଧାରାରେ ଏକ ବିରାଟ ବ୍ୟତିକ୍ରମ । ରସକଲ୍ଲୋଳ ରଚନା ପରେ ମଧୁମଙ୍ଗଳ କ୍ରମେ ନିଷ୍ପ୍ରଭ ହୋଇଯିବାରୁ ତାହାର ପ୍ରତିଲିପିମାନ ବହୁ ସଂଖ୍ୟାରେ ଉପଲବ୍ଧ ନହେଲେ ମଧ ତଥାପି ଏହା ଏକ କାବ୍ୟ ହିସାବରେ ପ୍ରାୟ ଜୀବିତ ରହି ଆସିଥିଲା । ଉଭୟ କାବ୍ୟ ମଧରେ ବହୁ ସାମଞ୍ଜସ୍ୟ ହେତୁ ମନେହୁଏ 'ମଧୁମଙ୍ଗଳ' କାବ୍ୟକୁ ଅଧିକ ପ୍ରଶସ୍ତ, ସୁଠାମ ଓ ଆକର୍ଷଣୀୟ କରିବାର ପ୍ରୟାସ ହେତୁ 'ରସକଲ୍ଲୋଳ' ସୃଷ୍ଟି ହୋଇଥିଲା । 'ମଧୁମଙ୍ଗଳ'ର ଦଶମ ଛାନ୍ଦର କେତେକ ପଦ ସହିତ 'ରସ କଲ୍ଲୋଳ'ର ୨୬ଶ ଛାନ୍ଦର ପଦମାନଙ୍କର ତୁଳନାରୁ ଏହି ଅନୁମାନର ଯଥାର୍ଥତା ଅନୁଭୂତ ହୋଇ ପାରିବ ।

୧) ''କୃଷ୍ଣ ମଧୁନଗର ଯିବା ଶୁଣି କାତର
ସକଳ ବରଜ ରମଣୀ ।
ହୋଇ କାକୁସ୍ତତର ନେତ୍ରୁ ବୁହାଇ ନୀର

କହନ୍ତି କୋମଳରେ ବାଣୀ ହେ, ଦୟାନିଧି,
କେମନ୍ତେ ଧରିବୁ ଏ ଦେହ,
ଅଥୟ କରିବ ଅଦେହ ।
ତୁମ୍ଭ ରୂପକୁ ମୂର୍ଚ୍ଛି　　　　ଆହେ ଯଶୋଦାବଂଶି
କେମନ୍ତେ ବଞ୍ଚିବୁ ତା କହ, ହେ ।'' *(ମ.ମ. ୧୦/୧)*

''କୃଷ୍ଣ ଗୋପନଗର　　　　ଯିବାଶୁଣି କାତର
ସକଳ କଳାକର ମୁଖୀ,
କାକୁସ୍ଥ ହୋଇ ଧୀରେ　　　　କହନ୍ତି କୋମଳରେ
କଙ୍କଣ ନୟନରେ ରଖି ହେ, କୃପାନିଧି,
କେମନ୍ତେ ମୂର୍ଚ୍ଛିବୁ ତୁମ୍ଭଙ୍କୁ
କହ ହେ ବିଚାରି ଆମ୍ଭଙ୍କୁ,
କେଉଁ ମନ୍ତ୍ରବଳରେ　　　　ହୃଦୟ କମଳରେ
ଧଇଲ ଏମନ୍ତ ଦମ୍ଭକୁ ହେ ।'' *(ର.କ. ୨୬/୨)*

୨)　କେ ଦେଲା କେଉଁମନ୍ତ୍ର　　　　କୂଟ କପଟ ଯନ୍ତ୍ର
ହୃଦେ ତା' ବହି ଦେଲା ଦମ୍ଭ ।
ଅକ୍ରୂର ରଥେ ବସି　　　　ଆମ୍ଭ ଦମ୍ଭକୁ ଧ୍ୱଂସି
ଯିବାକୁ କରୁଛ ଆରମ୍ଭ ହେ ଦୟାନିଧି ।
ଯେତେ ରୂପରେ କଲ ପ୍ରୀତି,
ତେତିକି କରୁଛ ଅନୀତି,
କମଠ ପୃଷ୍ଠ ପ୍ରାୟ　　　　ନକର ଦୟାମୟ
କୋମଳ ନିକେତନ ଛାଡ଼ି ହେ ।'' *(ମ.ମ.)*

''କ୍ରୂର କୁସୁମଧନୁ　　　　କୃଶ କରଇ ତନୁ
କାନକୁ ଆସିବା ସରିକି,
କେମନ୍ତ କରି ଦେହ　　　　ରଖିବ ସେ ଅଦେହ
ଗଲେ ମଥୁରା ନଗରିକି ହେ କୃପାନିଧି ।
କଲ ଯେତେ ରୂପରେ ପ୍ରୀତି,
କରୁଛ ତେତିକି ଅନୀତି ।
କମଠ ପୃଷ୍ଠ ପ୍ରାୟେ　　　　ନକର କୃପାମୟେ
କୋମଳ ନିକେତନ ଛାଡ଼ି ହେ ।'' *(ର.କ.)*

ଏପରି ବହୁ ସାମଞ୍ଜସ୍ୟ ଉଭୟ କାବ୍ୟ ମଧ୍ୟରେ ପରିଦୃଷ୍ଟ । ଧର୍ମସାଗର ଓ ନାମରତ୍ନଗୀତା, ପ୍ରସ୍ତାବସିନ୍ଧୁ ଓ ନାମବ୍ରହ୍ମଗୀତା ପ୍ରଭୃତି ଗ୍ରନ୍ଥମାନଙ୍କ ମଧ୍ୟରେ ମଧ

ଏହିପରି ପଦ ରଚନା ଓ ପ୍ରସଙ୍ଗସମ୍ବନ୍ଧୀୟ ବର୍ଣ୍ଣନା ମଧ୍ୟରେ ବହୁ ସମାନତା ସହଜ ପରିଦୃଷ୍ଟ । କବି ଓ ଲେଖକମାନଙ୍କର ଗୋଟିଏ ଗୋଟିଏ ଭାବ ଓ ଅଭିବ୍ୟକ୍ତି ସେମାନଙ୍କର ଏକାଧିକ ରଚନାମାନଙ୍କରେ ପ୍ରତିଫଳିତ ହେବା ଏକ ସାଧାରଣ କଥା । ସେହିପରି ଜଗମୋହନ ଛାନ୍ଦ ଓ ରସକଲ୍ଲୋଳ କାବ୍ୟ ଦ୍ୱୟ ମଧ୍ୟରେ ବି ଏପରି ଭାବ ଓ ଭାଷାଗତ ସମାନତା ଲକ୍ଷ୍ୟ କରାଯାଇଥାଏ ।

## ୩) ନୂତନ ସୃଷ୍ଟି ଚେତନା :

ବହୁ ସଂଖ୍ୟକ ଗ୍ରନ୍ଥ ଓ ଗୀତିକା ରଚନା ମଧ୍ୟରେ ଯେଉଁ ଅମର ଗ୍ରନ୍ଥ ପାଇଁ ଦୀନକୃଷ୍ଣ ଓଡ଼ିଆ ସାହିତ୍ୟରେ ଅପ୍ରତିଦ୍ୱନ୍ଦ୍ୱୀ ଏକ ଆସନର ଅଧିକାରୀ ତାହା ହେଉଛି ତାଙ୍କର 'ରସକଲ୍ଲୋଳ' କାବ୍ୟ । ଓଡ଼ିଆ ସାହିତ୍ୟରେ ଅଭୂତପୂର୍ବ ସାଫଲ୍ୟ ଲାଭ କରି ରସର କଲ୍ଲୋଳ ସୃଷ୍ଟି କରିଥିବା କବି ଏହି କାବ୍ୟର କଥାବସ୍ତୁ ନିର୍ବାଚନ ପାଇଁ ତତ୍କାଳୀନ ଲୋକ ରୁଚିରୁ ଉତ୍ସାହ ଲାଭ କରିଥିବା ସମ୍ଭବ । ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀ ଠାରୁ ଧର୍ମଗ୍ରନ୍ଥମାନଙ୍କର ବ୍ୟାପକ ରଚନା ସତ୍ତ୍ୱେ କବି ଅର୍ଜୁନ ଦାସ, ନରସିଂହ ସେଣ, ବିଷ୍ଣୁଦାସ, ଶିଶୁଶଙ୍କର ଦାସ, କାର୍ତ୍ତିକ ଦାସ, ଧନଞ୍ଜୟ ଭଞ୍ଜ, ଗୋକୁଳ ନରେନ୍ଦ୍ର ମାନ୍ଧାତା ପ୍ରଭୃତି କବିଗଣ ପୌରାଣିକ ଅଥବା କାଳ୍ପନିକ ଗୋଟିଏ ଗୋଟିଏ କଥାବସ୍ତୁମାନଙ୍କର ଆଧାରରେ ଶୃଙ୍ଗାର ରସ ପ୍ରଧାନ କାବ୍ୟ ରଚନାରେ ମନୋନିବେଶ କରିଥିଲେ । କ୍ରମେ ଏହାର ପଦଗୁଡ଼ିକ ବିବିଧ ଅଳଙ୍କାର ପୂର୍ଣ୍ଣ ହେବା ସହିତ ବିବିଧାର୍ଥକ କଠିନ ଶବ୍ଦମାନଙ୍କରେ ନିର୍ମିତ ହେବାକୁ ଲାଗିଥିଲା । ଏହାର ଭାଷା ମଧ୍ୟ ଲୋକ ସାଧାରଣଙ୍କର କଥିତ ଭାଷାଠାରୁ ଦୂରେଇ ଯାଇ ସଂସ୍କୃତ ତତ୍‌ସମ, ତଦ୍ଭବ ଶବ୍ଦମାନଙ୍କରେ ଭୂଷିତ ହେଲା ଯାହା ଫଳରେ ସେ ଯୁଗରେ ଜ୍ଞାନୀମାନୀ ଓ ପଣ୍ଡିତ ବିବେଚିତ ହେଉଥିବା ସଂସ୍କୃତ ଭାଷାଭିଜ୍ଞ ମାନଙ୍କ ଠାରୁ ଏହିସବୁ କାବ୍ୟ ପ୍ରଶଂସା ଲାଭ କରିବାରୁ କବିମାନେ ନିଜ ନିଜକୁ କୃତକୃତ୍ୟ ମନେ କରୁଥିଲେ । ଏପରି ପାଣ୍ଡିତ୍ୟ-ପ୍ରଶଂସା ବା ପ୍ରଶସ୍ତି ମାନ ଲାଭ କରିବା ପାଇଁ ସେ ଯୁଗରେ କବିମାନଙ୍କ ମଧ୍ୟରେ ଧାରାବାହିକ ପ୍ରତିଦ୍ୱନ୍ଦ୍ୱିତା ହେତୁ କ୍ରମେ କାବ୍ୟଗୁଡ଼ିକର ଭାଷା ଓ ଶବ୍ଦ ବିନ୍ୟାସ ଅଧିକ କ୍ଲୁପ୍ତ, କର୍କଶ ଓ ଦୁର୍ବୋଧ ହେବା ସହିତ ବହୁ ଅଗମ୍ୟ-ଦୁର୍ଗମ ବିଦ୍ୟାମାନଙ୍କୁ ସେମାନଙ୍କର କାବ୍ୟରେ ସୂକ୍ଷ୍ମ ଅଥବା ସଂକ୍ଷେପରେ ସଂଯୋଜିତ କରି ଦେବାକୁ ଏକ ମହତ୍ତ୍ୱପୂର୍ଣ୍ଣ କବିକର୍ମ ବୋଲି ବିବେଚନା କରୁଥିଲେ । ଏପରି ଏକ ପ୍ରବୃତ୍ତି ସଂସ୍କୃତ ସାହିତ୍ୟରେ କାଳିଦାସ, ବାଣଭଟ୍ଟ ପ୍ରଭୃତିଙ୍କ ଯୁଗରୁ ମଧ୍ୟ ପ୍ରକାଶ ପାଇଥିଲା । କିନ୍ତୁ ପରାଧୀନତାର ଯୁଗରେ ସଂସ୍କୃତ ସାହିତ୍ୟର ଧାରା କ୍ଷୀଣ ହୋଇଯାଇ ପ୍ରାନ୍ତୀୟ ଭାଷାମାନଙ୍କରେ ମଧ୍ୟ ସେହି ପ୍ରବୃତ୍ତି କ୍ରମେ ବଳବତ୍ତର ହେବାକୁ ଲାଗିଲା । ବୋଧହୁଏ ପରାଧୀନତାବଶତଃ ମଣିଷର ହୀନମ୍ମନ୍ୟତା ବିବିଧ ରୀତିରେ ପ୍ରକଟିତ ହେବାପରି ଓଡ଼ିଶାର ପରାଧୀନତା ଯୁଗରେ ମଧ୍ୟ ଏହି ପ୍ରବୃତ୍ତି ଉତ୍କଟ ହେଲା । ପଞ୍ଚସଖା ଯୁଗ

ପରେ ଓଡ଼ିଆ ଭାଷାକୁ ଏକ ସମର୍ଥ ପ୍ରକାଶକ୍ଷମ ଭାଷା ଭାବରେ ବ୍ୟବହାର କରି କାବ୍ୟ ରଚନାରେ ଉପଯୋଗ ପ୍ରୟାସ ହେଉଥିବାବେଳେ ସପ୍ତଦଶ ଶତାବ୍ଦୀର ପ୍ରାଗ୍‌ଭଞ୍ଜ ଯୁଗୀୟ ଜଣେ କବି ଲେଖିଛନ୍ତି;

''ନୀତିଶାସ୍ତ୍ର ନୀତି ପୁରାଣରୁ କଥାସାର,
ଶାଳୀହୋତ୍ରୁଁ ଅଶ୍ବରୀତି ହୋଇଲା ଗୋଚର ହେ,
ବୈଦ୍ୟଶାସ୍ତ୍ରରୁ ଚିକିତ୍ସା ଶ୍ରୁତିମାର୍ଗ ତତ୍ତ୍ୱ,
ବଇଷ୍ଣବ ଗ୍ରନ୍ଥ ଭାଗବତୁଁ ଭକ୍ତି ଜାତହେ ।
ପିଙ୍ଗଳରୁ ଛନ୍ଦ ଅଷ୍ଟାଦଶ ବିଦ୍ୟାଶିକ୍ଷା,
କରିଥିବାରୁ ବର୍ଣ୍ଣନାବାଟେ କଲି କକ୍ଷା, ହେ ।''

*(ପ୍ରେମଶୀଳା, ୧ମ ଛାନ୍ଦ, କୁଞ୍ଜବିହାରୀ ଭ୍ରମରବର ରାୟ)*

ରାଜକବି ଧନଞ୍ଜୟ ଭଞ୍ଜ ଓ କବି ସମ୍ରାଟ ଉପେନ୍ଦ୍ରଭଞ୍ଜ ମଧ୍ୟ ଏହି ମାର୍ଗରେ ଅଧିକ ଯତ୍ନଶୀଳ ରହି ତାଙ୍କର କାବ୍ୟମାନଙ୍କୁ ତର୍କଶାସ୍ତ୍ର, ଜ୍ୟୋତିଷ, ଧର୍ମଶାସ୍ତ୍ର, କାମଶାସ୍ତ୍ରାଦିର ତତ୍ତ୍ୱମାନଙ୍କରେ ମଣ୍ଡିତ କରି ଦେଇଅଛନ୍ତି । ଲାବଣ୍ୟବତୀରେ ସେ ଲେଖିଛନ୍ତି;

''ନାନା ଅଭିଧାନ ବିଧାନ କରି, ନାଟକ କାବ୍ୟ ଅଙ୍ଗେ ମାଧୁରୀ,
ଦୃଷ୍ଟି ସୃଷ୍ଟିରେ ହୋଇଛି ବିଚିତ୍ର । ରସିକ ଚିର ମୋହନ ମନ୍ତ୍ର ।''

ପୁନଶ୍ଚ ନନା ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ମଣ୍ଡିତ କାବ୍ୟଗୁଡ଼ିକୁ ସେ ଯୁଗରେ କାମିନୀ ପରି ମନୋହାରିଣୀ କରିବାର ପ୍ରୟାସରୁ ତହିଁରେ ଶୃଙ୍ଗାର ରସକୁ ସର୍ବପ୍ରାଧାନ୍ୟ ଦିଆଯାଇଥିଲା । ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ ପରି ବୈଷ୍ଣବ କବି ମଧ୍ୟ ନିଜର କାବ୍ୟକୁ ଏପରି ଏକ କାମିନୀ ଭାବରେ ତୁଳନା କରି କହନ୍ତି;

''କବିମାନେ କରୁଣାକର ମୋରେ, କରିବି ମୁଁ କାବ୍ୟ ଅଶ୍ରମରେ
କାମିନୀର ପ୍ରାୟ ଏହୁ ହୋଇବ । କାମ ଜଳଧିକି ଉଛୁଳାଇବ ।
କିଣିବ ଏ ରସିକ ଜନମନ । କିଛି ଅଳଙ୍କାରେ ହୋଇ ମଣ୍ଡନ ।।

*(ଯୁଗଳ ରସାମୃତ ଲହରୀ- ୨ୟ ଛାନ୍ଦ)*

ଜଟିଳ ଦୁର୍ଭେଦ୍ୟ ଅଳଙ୍କାର, ଦଉାକ୍ଷର, ଚ୍ୟୁତାକ୍ଷର, ଦଉଚ୍ୟୁତାକ୍ଷର, ମେଷଯୁଦ୍ଧ,..... ଅନ୍ତର୍ଲିପିକା, ବହିର୍ଲିପିକା, ବକ୍ରୋକ୍ତି, ବ୍ୟାଘ୍ରପଦ, ପ୍ରଭୃତି ସହିତ ନାଗବନ୍ଧାଦି ବିବିଧ ଜଟିଳ ବନ୍ଧ ବିନ୍ୟାସ ଦ୍ୱାରା କାବ୍ୟଗୁଡ଼ିକ ସଂପୂର୍ଣ୍ଣ ଭାବରେ କଠିନ ଗଣିତଶାସ୍ତ୍ର ପରି କେବଳ ତଦ୍‌ବିଦ୍ ପଣ୍ଡିତମାନଙ୍କର ମାନସିକ କସରତର ସାମଗ୍ରୀରେ ପରିଣତ ହେବାକୁ ଲାଗିଲା । ପୁନଶ୍ଚ ଶୃଙ୍ଗାର ରସର ନଗ୍ନ ଅତିରଂଜିତ ବର୍ଣ୍ଣନା ଯେପରି ଘୃଣିତ ହେଲା ସେହିପରି ଅନ୍ୟାନ୍ୟ ବର୍ଣ୍ଣନାମାନ ଅବାସ୍ତବ, ଓ ଅବିଶ୍ୱାସନୀୟ ହୋଇ

ତତ୍କାଳୀନ ବୁଦ୍ଧିଜୀବୀ ମହଲରେ କିପରି କେତେଦୂର ଗ୍ରହଣଯୋଗ୍ୟ ହୋଇ ଏସବୁ କାବ୍ୟ ମନୋରଂଜନକ୍ଷମ ଅବା ଉପହାସ ଉତ୍ପାଦକ ହୋଇଥିଲେ ତାହା କହିବା କଠିନ ହେଲେ ମଧ, ସାଧାରଣ ସରଳ ନିରୀହ ନିଷପଟ, ବିଶୁଦ୍ଧ କାବ୍ୟାମୋଦୀମାନଙ୍କୁ ଏହିସବୁ ସାମଗ୍ରୀ ହତଚକିତ କରିଥିବା ସମ୍ଭବ ମନେହୁଏ । ଏପରି ଅତିରଂଜିତ ଶୃଙ୍ଗାରୀ ବର୍ଣ୍ଣନା ଓ ଦୁର୍ବୋଧ ଶବ୍ଦ ରାଜିରେ ଅଳଙ୍କାରମାନଙ୍କର ଦୁର୍ବିସହ ଭାର କାବ୍ୟ କବିତା ରଚନାରେ ଉତ୍କର୍ଷ ପ୍ରତିପାଦନ ବିବେଚିତ ହୋଇଥିବା ବେଳେ 'ରୁଦ୍ର ସୁଧାନିଧି' ପରି ଏକ ଗଦ୍ୟ ରଚନାକୁ ମଧ ତା'ର ଲେଖକ ଅନିଚ୍ଛାକୃତ ଭାବରେ ଏପରି ଆଙ୍ଗିକ ଅଳଙ୍କରଣରେ ମଣ୍ଡିତ କରିଥିବା ପରି ମନେହୁଏ । ଏପରିକି ଦୀନକୃଷ୍ଣଙ୍କର ସମସାମୟିକ ଯୁଗର କବି ଲୋକନାଥ ବିଦ୍ୟାଧର 'ନୀଳାଦ୍ରି ମହୋଦୟ' ପରିକ୍ଷେତ୍ର ମହାତ୍ମ୍ୟ ରଚନା କରୁଥିବାବେଳେ ମଧ ଏପରି ବିଚିତ୍ର ଆଭିମୁଖ୍ୟ ଓ ଅଭିରୁଚିଠାରେ ଦୟନୀୟ ଭାବେ ଆତ୍ମସମର୍ପଣ କରି କାକୁସ୍ଥ ଭାବରେ ପ୍ରକାଶ କରନ୍ତି;

> ''କବିତ୍ୱ ଲକ୍ଷଣ ଏମନ୍ତ ହୋଇ, ଏରସ ନକହିଲେ ହେଁ ନୁହଇ
> ଅଳଙ୍କାର ଦୋଷ ହୋଇବା ପାଇଁ, କିଞ୍ଚିତ ମାତ୍ର ହେଲେ କହିବଇଁ
> ବୁଝ ମନଦେଇ,
> ରସିକ ନିକର ପ୍ରମୋଦ ହୋଇ ।'' *(ନୀ. ମହୋଦୟ ୪/୪୬)*

ଏହି କାବ୍ୟରେ ପ୍ରଧାନ ଭକ୍ତି ରସଟି ଏସବୁ ଅବାଞ୍ଛିତ ଅସଙ୍ଗତ ବର୍ଣ୍ଣନା ହେତୁ ଆହତ ହେବାର ସ୍ପଷ୍ଟ ଅନୁଭବ କରି ସେସବୁ ଅତି ରଂଜିତ ବର୍ଣ୍ଣନା ବ୍ୟାପାରକୁ ସଂକୁଚିତ କରାଇଥିବା କଥା ସନ୍ତର୍ପଣରେ ପ୍ରକାଶ କରି କହନ୍ତି,

> ''ଏଣୁ ଏ ବର୍ଣ୍ଣନା କଲି କୁଣ୍ଠିତ,
> ପ୍ରଧାନରସ ହେବ ଅନ୍ତରିତ ।'' *(୬/୯୮)*

ଏପରି ବହୁ ପଦାଂଶରେ ଏହି କବି ନିଜର ଗ୍ରନ୍ଥଟିରେ ବିପୁଳ ଅଳଙ୍କାରାଦି ଭରିଦେଇ ପାରି ନଥିବାରୁ ନିଜକୁ ଅତି ନ୍ୟୁନ ମନେକରି ତତ୍କାଳୀନ କାବ୍ୟରସିକ ମାନଙ୍କଠାରେ ଦଇନି ଜଣାଇଛନ୍ତି । ଆଙ୍ଗିକ ଅଳଙ୍କରଣରେ ପ୍ରବଳ ଆଡ଼ମ୍ବର ଓ ଶୃଙ୍ଗାର ଚର୍ଚ୍ଚାରେ ଅତିଶୟୋକ୍ତି ଦ୍ୱାରା ରାଜକବିମାନେ ନିଜ ନିଜର ବିପୁଳ ଆତ୍ମପ୍ରସାଦ ପ୍ରକାଶ କରୁଥିବାବେଳେ କବିତ୍ୱ ଯୋଗ୍ୟତାରୁ ବଞ୍ଚିତ ବହୁରାଜା, ମହାରାଜା କବିମାନଙ୍କୁ ପୃଷ୍ଠପୋଷକତା ଦେଇ ସେମାନଙ୍କ ପାଇଁ ସେମାନଙ୍କର ନାମରେ ଭଣିତା କରି କାବ୍ୟ ରଚନା କରାଉଥିଲେ । ଏହି ରାଜାଶ୍ରିତ କବିଗଣ ମଧ ନିଜର ସ୍ୱଳଳିତ କାବ୍ୟ ରଚନା ମଧରେ ନିଜ ନିଜର ଆଶ୍ରୟଦାତାମାନଙ୍କୁ ସ୍ତୁତି କରିବାକୁ ଯାଇ ବହୁ ଅତିରଂଜିତ ବର୍ଣ୍ଣନାରେ ତୋଷାମଦି କରିଥିବାର ଦୃଷ୍ଟାନ୍ତ ଆମ କାବ୍ୟ ଯୁଗରେ ବିରଳ

ନୁହେଁ । ଯୁଗର ପ୍ରବୃତ୍ତି ଏତାଦୃଶ ଶକ୍ତିଶାଳୀ ଥିବାବେଳେ ଏହି ଦରିଦ୍ର କବି ଦୀନକୃଷ୍ଣ ଏହି ପ୍ରବୃତ୍ତିର ତୀବ୍ର ପ୍ରତିବାଦ ଅତି ନିର୍ଭୀକ ଭାବରେ ତାଙ୍କର ଏହି ବୈଷ୍ଣବରୀତି କାବ୍ୟ 'ରସ କଲ୍ଲୋଳ' ରଚନା ମାଧ୍ୟମରେ ହିଁ କରିଛନ୍ତି । କାବ୍ୟ ରଚନାରେ ସେ ଲୋକମୁଖର ଭାଷାକୁ କାବ୍ୟ ଭାଷା ଭିତରେ କ୍ଷୀର ନୀର ପରି ସମ୍ମିଶ୍ରିତ କରି ଦେଇଛନ୍ତି । ଆଦ୍ୟବର୍ଣ୍ଣ 'କ'ରେ କାବ୍ୟରଚନା କରି ରୀତି କାବ୍ୟମାନଙ୍କର ଅଳଙ୍କରଣାଦି ଉପାଦାନମାନ ଯୁକ୍ତ କରି ଦେଇଥିଲେ ହେଁ ଏହି ଅଳଙ୍କରଣ ଅତ୍ୟନ୍ତ ସରଳ, ସରସ ଓ ସୁଗମ୍ୟ । ସ୍ଥାନେ ସ୍ଥାନେ ଏହା କ୍ଲିଷ୍ଟ ଓ ଦୁର୍ବୋଧ ପ୍ରତୀତ ହେଲେ ହେଁ ସୁବୋଧ ପରିଚିତ କଥିତ ଭାଷାର ଅକୃତ୍ରିମ ସୌନ୍ଦର୍ଯ୍ୟରେ ଏହା କାବ୍ୟର ଅଙ୍ଗାଭରଣ ହୋଇଯାଇଛନ୍ତି । ଏଥିରେ ଶୃଙ୍ଗାର ରସର ଚର୍ଚ୍ଚା ଥିଲେ ହେଁ ଏହା ପବିତ୍ର ମଧୁର ବ୍ରଜରସ । ଅପ୍ରାକୃତ ପ୍ରେମର ପ୍ରାକୃତ ପ୍ରବହମାନତା ହେତୁ ଏହା ଇଚ୍ଛାକୃତ ପ୍ରୟାସ ପ୍ରସୂତ ନ ହୋଇ ସ୍ୱୟଂ ସଂଭୂତ ସାବଲୀଳ କଲ୍ଲୋଳରେ ପରିଣତ ହୋଇ ଜୀବନର ଦୀର୍ଘାୟତନକୁ ସ୍ପର୍ଶ କରିପାରିଛି । ଏଥିରେ ପାଣ୍ଡିତ୍ୟ ଅଛି ବହୁଶାସ୍ତ୍ର ଦର୍ଶିତା ଅଛି କିନ୍ତୁ ପାଣ୍ଡିତ୍ୟର ଅଭିମାନ ନାହିଁ ବରଂ ପାଣ୍ଡିତ୍ୟ କାବ୍ୟରସର ଅନୁସରଣ କରିଛି ମାତ୍ର । ସର୍ବୋପରି ସ୍ୱାଭିମାନୀ ଏହି କବି ରାଜ-ପ୍ରଲୋଭନାଦିକୁ ପ୍ରତ୍ୟାଖାନ କରି ଆପଣାର ସାରସ୍ୱତ ପ୍ରତିଭାକୁ ଅପମାନିତ କରି ନଥିବାରୁ ଏଥିରେ ରାଜପ୍ରଶସ୍ତି ବା ଅନ୍ୟାନ୍ୟ ଅତି ରଂଜନର ପ୍ରଶ୍ନ ନାହିଁ । ସାଧାରଣ କାବ୍ୟାମୋଦୀ ପାଇଁ ଏକାନ୍ତ ମନୋରଂଜନକ୍ଷମ ଏହି କାବ୍ୟ ନିର୍ମାଣ ପ୍ରୟାସରେ ତାଙ୍କର ସାଫଲ୍ୟ ତାଙ୍କର ପରବର୍ତ୍ତୀ ବହୁ ରଥୀଙ୍କୁ ଏପରି ଦିବ୍ୟ-ଅଦିବ୍ୟ ସମନ୍ୱିତ ଭାବ ପ୍ରଧାନ କାବ୍ୟରଚନାରେ ଅନୁପ୍ରେରିତ କରିଥିବା ସମ୍ଭବ ମନେହୁଏ । କବିସୂର୍ଯ୍ୟ ବଳଦେବଙ୍କ ଚମ୍ପୂ, ନୃସିଂହ ଭ୍ରମରବରଙ୍କର ଦଶବୋଲୀ, ବ୍ରଜନାଥଙ୍କ ଶ୍ୟାମରାମୋତ୍ସବ, ସମରତରଙ୍ଗ, ଭକ୍ତଚରଣଙ୍କର ମଥୁରାମଙ୍ଗଳ, ଗୋପାଳକୃଷ୍ଣ ଓ ବନମାଳୀଙ୍କର ପଦାବଳୀ ପ୍ରଭୃତି ରଚନା, ରୀତି ପ୍ରଧାନ ଯୁଗରେ ସୃଷ୍ଟି ହୋଇଥିଲେ ମଧ ଏସବୁ ଅଧିକ କାବ୍ୟଧର୍ମୀ, ସରଳ, ସୁବୋଧ ଓ ଭାବପ୍ରଧାନ ରଚନା । ଏସବୁରେ ରହିଛି କବିତ୍ୱର ସ୍ୱଚ୍ଛନ୍ଦ ଅଭିବ୍ୟକ୍ତି । ଭାବାବେଶ ଅବସ୍ଥାର ଆବେଗରୁ ଝରି ଆସିଥିବା ଏହିସବୁ ରଚନାବଳୀ ଜନ ଚିତ୍ତକୁ ଆପ୍ଲୁତ କରେ, ବିଭୋର କରେ । ଆବୃତ୍ତି ଆରମ୍ଭ କରିଦେଲେ, ଅନ୍ୟମାନେ ଏଥି ସହିତ ସ୍ୱତଃସଂଯୁକ୍ତ ହୋଇ ଐକତାନିକ ଆବୃତ୍ତିରେ ନିମଜ୍ଜିତ ହୋଇଯାନ୍ତି । ଏପରି ସରସ କାବ୍ୟକବିତା ରଚନା ପରଂପରାକୁ ସତେ ଯେପରି ଦିଗ୍‌ଦର୍ଶନ ପ୍ରଦାନ କରେ କାନ୍ତ କୋମଳ ପଦାବଳୀରେ ରଚିତ ଦୀନକୃଷ୍ଣଙ୍କର ଏହି ଅପୂର୍ବ ଅମୂଲ୍ୟ ସୃଷ୍ଟି 'ରସକଲ୍ଲୋଳ' କାବ୍ୟ । ରୀତି ଯୁଗର ପାଣ୍ଡିତ୍ୱର ଆତ୍ମ-ବଡ଼ିମାର କୋଳାହଳ ଭିତରେ ଏହା ଏକ ବିରାଟ ବ୍ୟତିକ୍ରମ ଓ ଯହିଁରେ କବିକୃତିତ୍ୱର ସମସ୍ତ ଉତ୍କର୍ଷ ଭିତରେ ବି କୃଷ୍ଣଦାସ କବି ନିଜକୁ 'ଦୀନ' କୃଷ୍ଣ ଦାସ ଭ ।ବରେ ପରିଚିୟ ଦେଇ ବାରମ୍ବାର ଦଇନି ପ୍ରକାଶ କରନ୍ତି । ସ୍ୱାଭାବିକ କଥନ ରୀତିରେ ଓ କଥିତ

ଭାଷାରେ ଚରିତ୍ରମାନଙ୍କର ମୁଖ ନିଃସୃତ ଉକ୍ତିଗୁଡ଼ିକ କାବ୍ୟିକ ବାକ୍‌ଚାତୁରୀ ବଳରେ ମନୋଜ୍ଞ-ମଧୁର ଭାବ ପ୍ରଧାନ ହୋଇ ପାଠକ ପ୍ରାଣକୁ ଉଲ୍ଲସିତ କରାନ୍ତି ।

## ୪) 'ରସକଲ୍ଲୋଳ' ପରିକଳ୍ପନା :

ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀର ଅନ୍ତିମ ଭାଗରୁ ଅଥବା ଷୋଡ଼ଶ ଶତାବ୍ଦୀର ପ୍ରଥମାର୍ଦ୍ଧରୁ ଓଡ଼ିଆରେ କାବ୍ୟ ରଚନାର ପ୍ରୟାସ ଆରମ୍ଭ ହୋଇ ଆସିଥିଲା । ଅଳ୍ପ କେତେଗୋଟି ପୌରାଣିକ କାବ୍ୟକୁ ବାଦ ଦେଲେ ଦେଖାଯାଏ ଅର୍ଜୁନ ଦାସଙ୍କ କଳ୍ପଲତା, ବନମାଳୀଙ୍କର ଚାଟ ଇଚ୍ଛାବତୀ, ନରସିଂହ ସେଣଙ୍କର ପରିମଳା, ବିଷ୍ଣୁଦାସଙ୍କର ପ୍ରେମଲୋଚନା, ରଘୁନାଥ ହରିଚନ୍ଦନଙ୍କର ଲୀଳାବତୀ, ପ୍ରତାପରାୟଙ୍କର ଶଶିସେଣା, ଶ୍ରୀଧର ଦାସଙ୍କର କାଞ୍ଚନଲତା, କୁଞ୍ଜବିହାରୀ ଭ୍ରମରବରଙ୍କର ପ୍ରେମଶୀଳା, ଲୋକନାଥ ବିଦ୍ୟାଧରଙ୍କ ସର୍ବାଙ୍ଗସୁନ୍ଦରୀ, ଆଦି ଧନଞ୍ଜୟଙ୍କ ଅନଙ୍ଗରେଖା, ଇଚ୍ଛାବତୀ, ତ୍ରିପୁର ସୁନ୍ଦରୀ, ମଦନମଞ୍ଜରୀ ପ୍ରଭୃତି ବହୁ କାଳ୍ପନିକ କାବ୍ୟ ଦୀନକୃଷ୍ଣଙ୍କ କାବ୍ୟରଚନା ବେଳକୁ ରଚିତ ହୋଇ ସାରିଥିଲେ । କବିସମ୍ରାଟ ଏହି ଧାରାରେ କାଳ୍ପନିକ କାବ୍ୟ ବହୁ ସଂଖ୍ୟାରେ ରଚନା କରିଥିଲେ ମଧ ଆଙ୍ଗିକ ଅଳଙ୍କରଣ ଓ ଅର୍ଥଗୌରବରେ ଅଜସ୍ର ଯତ୍ନକରି ସେସବୁ ମଧ୍ୟରୁ ଲାବଣ୍ୟବତୀ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଓ ପ୍ରେମସୁଧାନିଧି ପ୍ରଭୃତି କେତେକ କାବ୍ୟ ଦ୍ୱାରା ଓଡ଼ିଆ କାବ୍ୟଧାରାକୁ ଆଭିଜାତ୍ୟର ଗୌରବ ଦାନ କରିଥିଲେ । ସୁଦୀର୍ଘ ଦୁଇଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ଧରି ଓଡ଼ିଆ କାବ୍ୟ ରଚନା ଧାରାରେ ଏପରି ବୈଚିତ୍ର୍ୟହୀନ, ଗତାନୁଗତିକ ଦୁର୍ବିସହ ବିରକ୍ତିକର କ୍ଳାନ୍ତି ଅନୁଭୂତ ହେଉଥିବା ବେଳେ ବହୁ ବୈଚିତ୍ର୍ୟ ପୂର୍ଣ୍ଣ, ଅଲୌକିକ ଘଟଣାବହୁଳ ଗୋପାଳକୃଷ୍ଣଙ୍କ ବ୍ରଜଗାଥା ଆଧାରରେ କଳ୍ପିତ ଏକ କାବ୍ୟ ରଚନାରେ ସ୍ୱକୀୟ କବିକର୍ମର ଅସନ୍ଦିଗ୍ଧ ସାଫଲ୍ୟ ସମ୍ବନ୍ଧରେ ନିଶ୍ଚିନ୍ତ ସମ୍ଭାବନା ଅନୁଭବ କରି ଦୀନକୃଷ୍ଣ ଏହି କାବ୍ୟ ରଚନାରେ ଅଗ୍ରସର ହୋଇଥିଲେ । ଯେଉଁ କଥାବସ୍ତୁ ବା ଘଟଣାର ଘନଘଟା ନଥାଇ ମଧ କେବଳ ଗୋପାଳକୃଷ୍ଣଙ୍କର ରାସଲୀଳା ପ୍ରସଙ୍ଗଟିର ଆଧାରରେ ପାତ୍ରପାତ୍ରୀଙ୍କର ମାନସିକ ଅବସ୍ଥା ମାନଙ୍କର ସୂକ୍ଷ୍ମ ବିଶ୍ଳେଷଣ ବ୍ୟଞ୍ଜନା ସହିତ ପରିମିତ ଭାଷାରେ ଲୌକିକ ନାଟକୀୟ ଶୈଳୀରେ ମନୋଜ୍ଞ ଚିତ୍ରଣ କରି କବି ଜୟଦେବ ସଂସ୍କୃତ ସାହିତ୍ୟ ଗଗନରେ ଶେଷ ଅସ୍ତରାଗର ଉଜ୍ଜ୍ୱଳ ବର୍ଣ୍ଣାଢ଼୍ୟ ଛବି ଆଙ୍କି ଦେଇ ସମଗ୍ର ଭାରତର ବିଦଗ୍ଧ ପଣ୍ଡିତ ସମାଜରେ ଟୀକା ରଚନା ପାଇଁ ପ୍ରତିଦ୍ୱନ୍ଦିତାର ନୂତନ ଉନ୍ମାଦନା ସଂଚାର କରାଇ ଦେଇଥିଲେ, ସେହି କଥାଭାଗର ଏକ ବିସ୍ତାରିତ ଅଂଶ କାବ୍ୟର ଉପଜୀବ୍ୟ ରୂପେ ଦୀନକୃଷ୍ଣଙ୍କର ଶିଳ୍ପୀ ମାନସକୁ ଆକର୍ଷିତ କରିବା ଅତ୍ୟନ୍ତ ସ୍ୱାଭାବିକ । 'ଗୀତ ଗୋବିନ୍ଦ'ର ବିଦଗ୍ଧ ଗ୍ରାହକ କବି ଦୀନକୃଷ୍ଣ ଏଥି ପୂର୍ବରୁ 'ଗୀତଗୋବିନ୍ଦ'ର ଏକ ଭାବାନୁବାଦକୁ 'ଅମୃତସାଗର' ନାମରେ ନାମିତ କରି ମଧ ତହିଁରେ ତୃପ୍ତ ହୋଇ ନପାରି ସେ ଏହି ଗାଥା ଭାଗର

ପୁଷ୍ଟ ରୂପାୟନରେ ମନୋନିବେଶ କଲେ । ଓଡ଼ିଆ ଭାଷାରେ ଗୋପାଳକୃଷ୍ଣଙ୍କ ଚରିତ ଗାଥା ରୂପାୟନରେ ମହାକବି ସାରଳା ଦାସ ତାଙ୍କର 'ଭାରତ-ହରିବଂଶ'ରେ ଦାଣ୍ଡିବୃତ୍ତରେ ପ୍ରୟାସ କରିଥିଲେ ମଧ୍ୟ ଜଗନ୍ନାଥ ଦାସଙ୍କ ରଚିତ ଶ୍ରୀମଦ୍‌ଭାଗବତର 'ଗୋପଲୀଳା' ସରଳ ନବାକ୍ଷରୀ ବୃତ୍ତରେ ସର୍ବାଧିକ ଲୋକପ୍ରିୟତା ଅର୍ଜନ କରିଥିଲା । ଗୋପାଳକୃଷ୍ଣ ଚରିତର ନାଟକୀୟ ଉତ୍କଣ୍ଠାବହୁଳ ଅଗ୍ରଗତି ଓ ଶେଷରେ ଗୋପପୁରକୁ ଚିରଦିନ ପାଇଁ ବିଦାୟ ନେବାର ଶୋକାବହ କରୁଣ ଘଟଣା ଏହି କଥାକୁ ପ୍ରଦାନ କରିଛି ଚିରନ୍ତନୀ କାବ୍ୟରସର ଐଶ୍ୱର୍ଯ୍ୟ । ତେଣୁ ଯୁଗଯୁଗ ଧରି କବିଗଣ ଏହାର ଆଧାରରେ ସୃଷ୍ଟି କରିଛନ୍ତି ଅଜସ୍ର କାବ୍ୟ କବିତା ଓ ଗୋପମଙ୍ଗଳ, ମଧୁମଙ୍ଗଳାଦି ଅସଂଖ୍ୟ ଲୀଳା ଓ ନାଟକ-ନାଟିକା । ନିର୍ଦ୍ଦୋଷ ଦେବକୀ ବସୁଦେବଙ୍କର କାରାବାସ ଓ ସେମାନଙ୍କର ଷଟ୍‌ପୁତ୍ର ବିନାଶ, କାରାଗୃହରେ ଶ୍ରୀକୃଷ୍ଣଙ୍କର ଜନ୍ମ ଓ ଗୋପପୁରରେ ଅଜ୍ଞାତବାସ, ବୟୋବୃଦ୍ଧି ସଂଗେ ସଂଗେ ଅବଲୀଳା କ୍ରମେ ଶ୍ରୀକୃଷ୍ଣଙ୍କର ବହୁଦାନବ ସଂହାର, କାଳୀୟ ଦଳନ, ଇନ୍ଦ୍ରପୂଜା ପରିବର୍ତ୍ତେ ଗିରିଗୋବର୍ଦ୍ଧନ ପୂଜାଦି ପ୍ରବର୍ତ୍ତନ ଓ ପ୍ରଳୟଙ୍କରୀ ବାତ୍ୟା ମୁଖରୁ ଗୋପପୁରକୁ ରକ୍ଷା, ଗୋପାଙ୍ଗନାମାନଙ୍କ ସହିତ ପ୍ରଣୟଲୀଳା ବିଳାସରେ ଶ୍ରୀକୃଷ୍ଣଙ୍କର ଗୋପପୁର ପ୍ରୀତି ଲତିକାର ଘଟିଛି ଶୀର୍ଷାରୋହଣ । ଯେଉଁ ଶ୍ରୀକୃଷ୍ଣଙ୍କ ମୁହୂର୍ତ୍ତ ବିରହ ଗୋପପୁରରେ ଯୁଗଯୁଗର ବ୍ୟଥା ବେଦନା ସୃଷ୍ଟିକରେ ସେହି ଶ୍ରୀକୃଷ୍ଣଙ୍କର କଂସାଦେଶରେ ମଥୁରାଯାତ୍ରାର ଅନ୍ତିମ ନିଷ୍ପତ୍ତି ସମଗ୍ର ଗୋପପୁରକୁ ଠେଲିଦେଲା ସୀମାହୀନ ବିରହ ବିଳାପର ଘନ ତମିସ୍ରିତ ଗହ୍ୱର ମଧ୍ୟକୁ । ସମଗ୍ର ଗୋପଲୀଳା ଆଖ୍ୟାନର ଏହି ମର୍ମଭେଦୀ ଦୁଃଖାନ୍ତକ ପରିଣତି ପ୍ରାଚ୍ୟ-ପାଶ୍ଚାତ୍ୟ ସମଗ୍ର ସାହିତ୍ୟ ଜଗତରେ ଏକ ଅତୁଳନୀୟ କଥାବିଭବ । ଲୌକିକ ଅଲୌକିକ ଘଟଣାବଳୀର ରହସ୍ୟମୟ ବିଚିତ୍ର ସମାହାର ମଧ୍ୟରେ ପରିପୂର୍ଣ୍ଣ ଏହି ଗୋପଲୀଳାର କଥାବସ୍ତୁ ଅଗଣିତ ମଣିଷ ମନରେ ସଂଚାର କରେ ନାନାବିଧ ଭାବାବେଗ । ବିଶେଷତଃ ଗୋଟିଏ ସରଳନିରୀହ ଦୁର୍ବଳ ଦରିଦ୍ର ଜନଗୋଷ୍ଠୀକୁ ସର୍ବବିଧ ବିପଦ ଓ ଦୁଃଖ କଷଣରୁ ପରିତ୍ରାଣ ଓ ସେମାନଙ୍କ ମନ ଭିତରେ ବିପୁଳ ସୁଖ ସନ୍ତୋଷ ଓ ଆଶା ଆକାଂକ୍ଷାର ସଂଚାର କରି ଆକସ୍ମିକ ଭାବରେ ସେମାନଙ୍କୁ ପରିହାର କରି ଯିବାର ଦୁର୍ବିସହ ଦୁଃଖଦ ଘଟଣା ଯେପରି ଅଶ୍ରୁତପୂର୍ବ ଓ ଅନନୁଭୂତପୂର୍ବ, ସେହିପରି ଅହୈତୁକୀ ଦୟାରେ ଭୁବନମୋହନ ଶ୍ରୀକୃଷ୍ଣଙ୍କ କିଶୋରୀ ଗୋପାଙ୍ଗନାମାନଙ୍କ ସହିତ ଦୀର୍ଘ ପ୍ରଣୟ ପାଶରେ ନିମଜ୍ଜିତ ହୋଇ ଅବଶେଷରେ ନିର୍ମମ ଭାବରେ ସେମାନଙ୍କୁ ଉପେକ୍ଷା ଓ ପରିହାର ମଧ୍ୟ ଭୟଙ୍କର ବିରହ ଦୁଃଖ ଦାୟକ ଶୋକାବହ ଅଭୂତପୂର୍ବ ଘଟଣା । ଆତ୍ମୀୟ ସ୍ୱଜନମାନଙ୍କ ସହିତ ପ୍ରିୟତମା ପ୍ରଣୟିନୀମାନଙ୍କୁ ଆଶୁ ପ୍ରତ୍ୟାବର୍ତ୍ତନ ଓ ପୁନର୍ମିଳନର ନାନା ଲୋଭନୀୟ ନିର୍ଭର ପ୍ରତିଶ୍ରୁତି ପ୍ରଦାନ ସତ୍ତ୍ୱେ ଅପ୍ରତ୍ୟାବର୍ତ୍ତନ ଓ ପ୍ରତାରଣା, ସମଗ୍ର ଗୋପଲୀଳା କଥା ରହସ୍ୟକୁ କରିଛି ଆଶାତୀତ ଭାବେ ମର୍ମଦାହୀ ଓ ଦୁରନ୍ତ । ଅତୀତର ସକଳ ଶ୍ରୀକୃଷ୍ଣ

ସ୍ମୃତିରାଜିକୁ ସ୍ମରଣ କୀର୍ତ୍ତନ କରି କରି ତଥାପି କେଉଁ ଅନାଗତ ଅନିର୍ଦ୍ଦିଷ୍ଟ ମହାକାଳ ଭିତରେ ଶ୍ରୀକୃଷ୍ଣ ପ୍ରାପ୍ତିର କ୍ଷୀଣ ମୁମୂର୍ଷୁ ଆଶା ଲତିକାକୁ ସମସ୍ତ ଯତ୍ନ ସହିତ ଜୀବିତ ରଖିବାର ଅନ୍ତିମ ପ୍ରୟାସ କରନ୍ତି ସେହି ଗୁଣମୁଗ୍ଧା ଉପେକ୍ଷିତା ବିରହିଣୀ ପ୍ରଣୟିନୀଗଣ । ବାତ୍ସଲ୍ୟ, ହାସ୍ୟ, ଶୃଙ୍ଗାର, ବୀର, ଭୟାନକ, ବୀଭତ୍ସ ଅଦ୍ଭୁତ ଓ ଶାନ୍ତି ରସାଶ୍ରୟୀ ବିବିଧ ବର୍ଣ୍ଣାଢ଼୍ୟ ଭାବ ସଂପଦରେ ସୁସମୃଦ୍ଧ ଓ ରସାଣିତ ଏହି କଥାଭାଗର ପ୍ରତ୍ୟେକଟି ପର୍ଯ୍ୟାୟ ଚରମ ଉତ୍କଣ୍ଠା ଓ କୌତୁହଳ ଉତ୍ପାଦକ ହେଲେ ମଧ୍ୟ ଅନ୍ତିମ ଭାଗରେ ଘନୀଭୂତ କାରୁଣ୍ୟର ନିବିଡ଼ ମୂର୍ଚ୍ଛନା ଏହାକୁ ପ୍ରଦାନ କରିଛି ଶାଶ୍ୱତ ଶିଳ୍ପକଳା ସୃଷ୍ଟି ପାଇଁ ଚିରନ୍ତନୀ ସୌନ୍ଦର୍ଯ୍ୟ ସଂପାଦକ ଦୁର୍ଲଭ ଉପାଦାନ । ଶତ ସହସ୍ର ଚିତ୍ରଶିଳ୍ପୀ, କଣ୍ଠଶିଳ୍ପୀ, କାବ୍ୟଶିଳ୍ପୀ ଓ ନୃତ୍ୟଶିଳ୍ପୀଙ୍କୁ ପ୍ରଲୁବ୍ଧ କରି ଆସିଥିବା ଏକ ସାର୍ବଜନୀନ ଆବେଗ ସୃଷ୍ଟିକାରୀ ଅସାଧାରଣ ଏହି କଥା ଭାଗଟି ତଥାପି ରହିଛି ସର୍ବତୋଭାବେ ସବୁ ଶିଳ୍ପୀଙ୍କ ପାଇଁ ଅତ୍ୟନ୍ତ ଲୋଭନୀୟ ଓ ଚିର ନୂତନ ଶିଳ୍ପ ସାମଗ୍ରୀ ଭାବେ ସର୍ବତ୍ର ବିଦ୍ୟମାନ । କଥାଭାଗରେ ଏପରି ଅଲୌକିକତା ଓ ଲୌକିକତାର ନାଟକୀୟ ଲୁଚକାଳି ଲୀଳାବିଳାସ ଉତ୍କଳରେ ଅଥବା ସମଗ୍ର ଭାରତବର୍ଷରେ କୃଷ୍ଣଭକ୍ତି ପ୍ରଧାନ ବୈଷ୍ଣବଧର୍ମକୁ ଯେତେବେଳେ ସର୍ବତ୍ର-ସର୍ବାଧିକ ପ୍ରସାରିତ କରାଇଦେଲା ସେତେବେଳେ କୃଷ୍ଣ କଥା ଶ୍ରବଣ କୀର୍ତ୍ତନ ଗାୟନ ଓ ମନନର ପାରମାର୍ଥିକ ମହତ୍ୱ ସର୍ବତ୍ର ହେଲା ସ୍ୱୀକୃତ । କୃଷ୍ଣକଥାର ଅନୁଶୀଳନ, ଚିତ୍ରଣ, ମନନାଦି ଅଶେଷ ଦୁରିତ ବିଧ୍ୱଂସକ ଏବଂ ଏହା ମାନବ ଜନ୍ମକୁ ଐଶ୍ୱର୍ଯ୍ୟମୟ ମଙ୍ଗଳମୟ ଓ ସାର୍ଥକ କରେ । ଯେଉଁ କବିମାନେ ଏହି କଥାମୃତ ଶ୍ରବଣାଦିର ସୁଯୋଗ ପ୍ରଦାନ କରନ୍ତି ସେମାନଙ୍କ ଠାରୁ ଉତ୍କୃଷ୍ଟ ମହାଦାନୀ ଲୋକ ଆଉ କେହି ହୋଇ ନପାରନ୍ତି ବୋଲି ପ୍ରତିପାଦିତ କରି ଗୋପାଙ୍ଗନାଙ୍କ ମୁଖରେ ମହର୍ଷି ଶୁକଦେବ କହନ୍ତି;

''ତବ କଥାମୃତଂ ତପ୍ତଜୀବନଂ
କବିଭିରୀଡିତଂ କଳ୍ମଷା ପହମ୍,
ଶ୍ରବଣମଙ୍ଗଳଂ ଶ୍ରମଦାତତଂ,
ଭୁବି ଗୃଣନ୍ତି ତେ ଭୂରିଦା ଜନାଃ ।।

(ଭା. ୧୦ମ/୩୧-୯)

କରୁଣ ଓ ଦିବ୍ୟ ଶୃଙ୍ଗାର-ମାଧୁର୍ଯ୍ୟ ମଣ୍ଡିତ ଏହି ବିପୁଳାୟନତ କୃଷ୍ଣକଥାକୁ ଆହରଣ କରି ତାହାର ଯଥାଯଥ ସଂସ୍ଥାପନ, ସଜ୍ଜୀକରଣ ସହିତ ସୁଚତୁର ବିଚାର ନୈପୁଣ୍ୟ ବଳରେ କାବ୍ୟ ରୂପଦାନ କରିବାକୁ ପ୍ରଲୋଭିତ ହୁଅନ୍ତି କବି କୃଷ୍ଣଦାସ । ଏହି ପରମ ପବିତ୍ର କୃଷ୍ଣକଥାର ଏକାଂଶମାନଙ୍କୁ ଉପଜୀବ୍ୟ କରି ଦୀର୍ଘ ଗୀତିକା ଓ କବିତାଦି ରଚନା କରୁଥିବା ଏହି କବି ରୀତିଯୁଗୀୟ କାଳ୍ପନିକ ପ୍ରବନ୍ଧ କାବ୍ୟର ଗତାନୁଗତିକ ପ୍ରବାହ ମଧ୍ୟରେ ଚମକ ସୃଷ୍ଟିକରି ରଚନା କଲେ ତାଙ୍କର ସୁଲଳିତ ମହାକାବ୍ୟ 'ରସକଲ୍ଲୋଳ' ।

## ୫) ରହସ୍ୟାଚ୍ଛନ୍ନ କାବ୍ୟନାୟକ :

ସମଗ୍ର 'ରସକଲ୍ଲୋଳ' କାବ୍ୟକୁ ଅନୁଧାନ କଲେ ଜଣାଯାଏ, ଏଥିରେ ଶ୍ରୀମଦ୍ ଭାଗବତର ଗୋପଲୀଳା ବିଷୟବସ୍ତୁ ମଧ୍ୟରୁ କେବଳ ଆକର୍ଷଣୀୟ କେତେକ କାବ୍ୟ-ନାଟକ ଅଭିମୁଖୀ ଆଖ୍ୟାନମାନଙ୍କୁ ଅବଲମ୍ବନ କରାଯାଇ ଛାନ୍ଦଗୁଡ଼ିକ ରଚିତ ହୋଇଥିଲେ ସୁଦ୍ଧା ଗୋପୀକୃଷ୍ଣଙ୍କର ରାସଲୀଳାର ସମ୍ଭୋଗ ଓ ବିପ୍ରଲମ୍ଭ-ପର୍ଯ୍ୟାୟର ମନୋଜ୍ଞ ଚିତ୍ରଣ ହୋଇଛି ପ୍ରଧାନ ଉପଜୀବ୍ୟ ବିଭବ । କବିଙ୍କ ଅନ୍ୟାନ୍ୟ ଗ୍ରନ୍ଥମାନଙ୍କର ସିଦ୍ଧାନ୍ତ ଅନୁସାରେ ଶ୍ରୀକ୍ଷେତ୍ର ନୀଳାଚଳଧାମ ହିଁ ନିତ୍ୟ ଗୋଲୋକସ୍ଥଳୀ ଓ ସେଠାରେ ଶ୍ରୀଜଗନ୍ନାଥଙ୍କ ଦାରୁ ରୂପରେ ବିଦ୍ୟମାନ ଥାନ୍ତି ଅବତାରୀ କୃଷ୍ଣ । ପୃଥ୍ୱୀ ଭାରା ହରଣ ନିମିତ୍ତ ବାରମ୍ବାର ସେ ବିବିଧ ରୂପରେ ଅବତାରମାନ ଗ୍ରହଣ କରନ୍ତି । ଏଥର ଦେବତାମାନଙ୍କ ସ୍ତୁତିରେ ସେ କଂସାଦି ଦୁଷ୍କୃତିକର୍ମା ପାପାଚାରୀମାନଙ୍କୁ ସଂହାର କରି ପୃଥ୍ୱୀ ଭାର ହରଣ କରିବା ଏବଂ ସାଧୁ ସଜ୍ଜନମାନଙ୍କୁ ପରିତ୍ରାଣ କରିବା ନିମିତ୍ତ କୃଷ୍ଣ ବଳରାମ ରୂପେ ଅବତାର ଗ୍ରହଣ କଲେ ମଧ୍ୟ ଅପ୍ରକଟ ବ୍ରଜରସର ଗଙ୍ଗୋତ୍ରୀ ସୃଷ୍ଟିର ଏକ ବିଶେଷ ଅଭିପ୍ରାୟରେ କେବଳ ବିଗତ ଦ୍ୱାପର ଯୁଗ ଶେଷରେ ଭାରତ ଭୂମିରେ ହେଲେ ଅବତୀର୍ଣ୍ଣ ।

ଭାରତବର୍ଷରେ ବିଶେଷତଃ ଉତ୍କଳରେ ନାନା ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ଘାତପ୍ରତିଘାତ ଭିତରେ ଐତିହାସିକ ମହାପୁରୁଷ ଗୌତମବୁଦ୍ଧ ଲୋକଶ୍ରୁତି ଓ ଲୋକସ୍ମୃତିରୁ ସଂପୂର୍ଣ୍ଣ ଅନ୍ତର୍ହିତ ହୋଇଯାଇ କେବଳ ବିଷ୍ଣୁଙ୍କର ଏକ ଅବତାର ବିଶେଷ ଭାବରେ ସ୍ମାରିତ ହେଉଥିବାବେଳେ ତାଙ୍କର ପ୍ରକୃତ ପରିଚୟ ଲାଭ ପାଇଁ ସାଧାରଣ ସୁଧୀଶାସ୍ତ୍ରଜ୍ଞଙ୍କ ସମ୍ମୁଖରେ ବା ସମୀପରେ କୌଣସି ଉପାଦାନ ଉପଲବ୍ଧ ନଥିଲା । ତେଣୁ ବେଳେବେଳେ ଜିଜ୍ଞାସୁ ଚିତ୍ତରେ ଲୋକ ବିଖ୍ୟାତ 'ବୁଦ୍ଧ' ନାମଟି ସମ୍ବନ୍ଧରେ ବିବିଧ ବ୍ୟର୍ଥ କୌତୁହଳ ଉଦ୍ରିକ୍ତ ହୋଇ ସ୍ୱତଃ ମ୍ଳାନ ଓ ବିଲୀନ ହୋଇ ଯାଉଥିଲା । ଉତ୍କଳରେ ସାର୍ବଭୌମ ପ୍ରତିଷ୍ଠା ଲାଭ କରିଥିବା ସୁପ୍ରାଚୀନ ଶ୍ରୀକ୍ଷେତ୍ରର ଅଧିଦେବତା ଜଗନ୍ନାଥ ରୂପୀ ବୁଦ୍ଧଙ୍କୁ ମହାଭାରତ ଶାନ୍ତିପର୍ବ ଅନ୍ତର୍ଗତ ବିଷ୍ଣୁ ସହସ୍ର ନାମ ସ୍ତୋତ୍ରରେ ଜଗନ୍ନାଥ ନାମରେ ଖ୍ୟାତ ରହିଥିବା ବାସୁଦେବ ବିଷ୍ଣୁ ଜଗନ୍ନାଥ ରୂପେ ପୂର୍ଣ୍ଣ ଲୌକିକ ତଥା ସ୍ମାର୍ତ୍ତ ବିଧିମାନଙ୍କର ସମନ୍ୱିତ ବିଧାନରେ ପୂଜା ଉପାସନା କରାଯିବା ପରେ ତାଙ୍କର ପୂର୍ଣ୍ଣ ପରିଚୟ ପାଇବା ପାଇଁ ଶିଷ୍ଟ-ସୁଜ୍ଞାନୀ ଓ ଦ୍ରଷ୍ଟା ସାଧକ ପରଂପରାରେ ପ୍ରକାଶ ପାଇ ଆସୁଥିବା କୌତୁହଳକୁ ଉପଶମିତ କରାଇବା ଲକ୍ଷ୍ୟରେ ସାରଳା ଦାସଙ୍କ ଠାରୁ ପ୍ରକାଶ ପାଇଥିଲା ସଯତ୍ନ ପ୍ରୟାସ । ତେଣୁ ସାରଳା ଦାସ ତାଙ୍କ ମହାଭାରତର ମୂଷଳୀ ପର୍ବରେ ବ୍ରହ୍ମା ବିଷ୍ଣୁ ଓ ଶିବ ଏଠାରେ ତ୍ରିମୂର୍ତ୍ତି ମଧ୍ୟରେ ଏକାତ୍ମ 'ବୁଦ୍ଧ' ରୂପରେ ପ୍ରକଟିତ ହୋଇଥିଲେ । ପଞ୍ଚସଖାଙ୍କ ସାହିତ୍ୟରେ ଏହି ଜଗନ୍ନାଥଙ୍କୁ 'ବୁଦ୍ଧ' ଭାବରେ ବହୁସ୍ଥଳରେ ଅଭିହିତ କରାଯାଇଅଛି । ବାସୁଦେବ ବିଷ୍ଣୁଙ୍କୁ

ଯେପରି ଜଗତର ଅନ୍ତିମ ପୂର୍ଣ୍ଣତତ୍ତ୍ୱ ଭାବରେ ବୈଦିକ-ବୈଷ୍ଣବ ଗ୍ରନ୍ଥମାନଙ୍କରେ ବର୍ଣ୍ଣନ କରାଯାଇଅଛି, ଶ୍ରୀଜଗନ୍ନାଥ ପୁରୁଷୋତ୍ତମ ବିଷ୍ଣୁ ଭାବରେ ପୂଜିତ ହେବା ପରେ ସେହି ଜଗନ୍ନାଥ ହିଁ ତ୍ରିଲୋକାଧିଶ୍ୱର 'ବୁଦ୍ଧ' ଭାବରେ ମଧ୍ୟ ଲୋକ ବିଶ୍ୱାସରେ ଗୃହୀତ ହୋଇ ଯାଇଥିଲେ । ଏହି ଦାରୁରୂପୀ ବୁଦ୍ଧ ଜଗନ୍ନାଥଙ୍କୁ ବିଷ୍ଣୁଙ୍କର ନବମ ଅବତାର ଭାବରେ ସ୍ୱୀକାର କରାଗଲା । ଏଠାରେ ସେ ନବମ ଅବତାର ରୂପେ ବିଦ୍ୟମାନ ହେଲେ ମଧ୍ୟ ସେ ଅବତାରୀ କୃଷ୍ଣ ହୋଇଥିବାରୁ ଏହି ବୌଦ୍ଧ ବା ବଉଦ ଅବତାରରେ ତାଙ୍କର ପିତାଙ୍କର ନାମ ଗାଙ୍ଗବ, ମାତାଙ୍କ ନାମ କରୁଣାବତୀ ଏବଂ ଗୁରୁଙ୍କର ନାମ ସହସ୍ର ରୂପା ବୋଲି ଦୀନକୃଷ୍ଣ ସ୍ୱୀୟ 'ନାମରତ୍ନ ଗୀତା'ରେ ଉଲ୍ଲେଖ କଲେ । ଏହାର ପୃଷ୍ଠଦେଶରେ କୌଣସି ଶାସ୍ତ୍ରୀୟ ପ୍ରମାଣ ବିଦ୍ୟମାନ ନଥିବା ହେତୁ ଏହା କବିଙ୍କର ସ୍ୱକୀୟ କଳ୍ପିତ ବୋଲି କୁହାଯାଇପାରେ । କାରଣ ସ୍ୱୟଂ ଦୀନକୃଷ୍ଣଙ୍କ ମତରେ,

''କବି ସେ ସତମିଛ କରି କହନ୍ତି,
କବିତ୍ୱ ଚାତୁରୀରେ ମନ ମୋହନ୍ତି ।''

ଜିଜ୍ଞାସୁ କଳାକାର ଓ ଶାସ୍ତ୍ରବିତ୍ କବି ଦୀନକୃଷ୍ଣ ବୁଦ୍ଧଙ୍କୁ ବ୍ରହ୍ମ ବୋଲି ପ୍ରତିପାଦନ କରି 'ବୌଦ୍ଧବ୍ରହ୍ମଗୀତା' ନାମରେ ଗୋଟିଏ ଗ୍ରନ୍ଥ ମଧ୍ୟ ନିଜେ ରଚନା କରିଛନ୍ତି । ତେବେ ଯାହା ହେଉ ଦୀନକୃଷ୍ଣଙ୍କ ମତରେ ଏହି ଜଗନ୍ନାଥ ହେଉଛନ୍ତି ନିତ୍ୟ ବୈକୁଣ୍ଠ ନୀଳାଚଳ ବିହାରୀ ଅବତାରୀ କୃଷ୍ଣ-ବିଷ୍ଣୁ । ତେଣୁ କଂସାସୁରର ଅତ୍ୟାଚାରରେ ଉତ୍ପୀଡ଼ିତା ବସୁମତୀର ବିଳାପରେ ସହାନୁଭୂତିଶୀଳ ଦେବଗଣ ପ୍ରଜାପିତା ବ୍ରହ୍ମାଙ୍କର ନେତୃତ୍ୱରେ କ୍ଷୀରାବ୍ଧିତଟରେ କ୍ଷୀରାବ୍ଧିଶାୟୀ ଏହି ଜଗନ୍ନାଥଙ୍କୁ ସମବେତ ସ୍ତୁତି କରିବାରୁ ସେ ନୀଳ ଧବଳ ରୂପନେଇ କାରାଗାରରେ ବନ୍ଦୀ ରହିଥିବା ଦେବକୀ ବାସୁଦେବ କୋଳରେ ଜନ୍ମ ହୋଇଥିଲେ ବୋଲି କବି ଦୀନକୃଷ୍ଣଙ୍କର ମତ । 'ରସକଲ୍ଲୋଳ' କାବ୍ୟରେ ନାୟକ ଭାବରେ ଯେଉଁ ବାସୁଦେବ-କୃଷ୍ଣଙ୍କୁ କବି ଗ୍ରହଣ କରନ୍ତି ସେହି କୃଷ୍ଣ ନୀଳାଦ୍ରିର ଶ୍ରୀଜଗନ୍ନାଥ-କୃଷ୍ଣଙ୍କ ବ୍ୟତୀତ ଅନ୍ୟ କେହି ନୁହନ୍ତି । ଆମ ମତରେ ଉତ୍କଳରେ ଜଗନ୍ନାଥ ନାମୀ ବୁଦ୍ଧଙ୍କର ଉପାସନା ବଜ୍ରଯାନ ପରଂପରାରେ ପ୍ରଚଳିତ ଥିବାବେଳେ ବୈଦିକ ସଂପ୍ରଦାୟମାନଙ୍କ ମଧ୍ୟରେ ବିଷ୍ଣୁ-ପୁରୁଷୋତ୍ତମ ନାମରେ ମଧ୍ୟ ଉପାସିତ ହୋଇ ଆସୁଥିବା ସମ୍ଭବ । ଖ୍ରୀଷ୍ଟୀୟ ୭ମ ଶତାବ୍ଦୀର ଶ୍ରୀଧାରଣ ରାଟଙ୍କ କଇଲାଣ ତାମ୍ରଶାସନରେ ପୁରୁଷୋତ୍ତମର ଉଲ୍ଲେଖ ଥିବାବେଳେ ଦଶମ ଶତାବ୍ଦୀରେ ଉତ୍କୀର୍ଣ୍ଣ ଉତ୍ତର ପ୍ରଦେଶସ୍ଥ ମହିଅର ତାମ୍ରଶାସନ ଓ ଗୟାର ଶାସକ ବିଶ୍ୱରୂପଙ୍କର ତାମ୍ରଶାସନର ଓଡ୍ର ଦେଶସ୍ଥ ପୁରୁଷୋତ୍ତମଙ୍କର ସ୍ତୁତି ଉଲ୍ଲେଖ କରିଛନ୍ତି । କିନ୍ତୁ ଖ୍ରୀଷ୍ଟୀୟ ନବମ ଶତାବ୍ଦୀର ଗୟାଶାସକ ନାରାୟଣ ପାଳଙ୍କର ଗୋଟିଏ ଅଭିଲେଖରେ ପ୍ରଥମେ 'ଓଁ ନମୋ ପୁରୁଷୋତ୍ତମାୟ' ଉଲ୍ଲେଖ କରାଯାଇ ତତ୍ପରେ 'ଜୟତି ଜଗତିନାଥଃ ପ୍ରସ୍ଫୁରଚ୍ଚାରୁ ମୂର୍ତ୍ତି ର୍ଜଗଦରି ବିନିହନ୍ତା ଶ୍ରୀମଦେକୋ ମୁରାରିଃ' ବୋଲି ଲେଖା

ଯାଇଥିବାରୁ ଏହା ଶ୍ରୀକ୍ଷେତ୍ରସ୍ଥ ଜଗନ୍ନାଥ ପୁରୁଷୋତ୍ତମଙ୍କୁ ସୂଚିତ କରେ ବୋଲି ବିଶ୍ୱାସ କରାଯାଇପାରେ । ନିର୍ଦ୍ଦିଷ୍ଟ ଭାବରେ ସମୟ ନିର୍ଦ୍ଧାରିତ ହୋଇ ନଥିବା ସ୍କନ୍ଦ ପୁରାଣ ଓ ବ୍ରହ୍ମ ବୈବର୍ତ୍ତ ପୁରାଣାଦିରେ ଜଗନ୍ନାଥ ପୁରୁଷୋତ୍ତମ ବିଷ୍ଣୁଙ୍କର ମହିମା ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଥିବା ସତ୍ତ୍ୱେ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ବେଳକୁ ଜଗନ୍ନାଥ-ବୁଦ୍ଧ ଓ ଜଗନ୍ନାଥ-ପୁରୁଷୋତ୍ତମ ଏକୀଭୂତ ହୋଇଯାଇଥିବା ସମ୍ଭବ ଏବଂ ଉଭୟ ବୈଦିକ ଓ ବୌଦ୍ଧ ବିଧିମାନଙ୍କର ସମନ୍ୱୟରେ ପୁରୁଷୋତ୍ତମ-ଜଗନ୍ନାଥ-ବିଷ୍ଣୁଙ୍କର କ୍ରମ ସମୃଦ୍ଧ ପୂଜାର୍ଚ୍ଚନା ହେତୁ ତାରା, କାଳୀ, ଗଣେଶାଦି ବୈଦିକ ଦେବଦେବୀମାନଙ୍କୁ ତାନ୍ତ୍ରିକ ପଦ୍ଧତିରେ ଉପାସନାଦି କରୁଥିବା ନାମମାତ୍ର ବୌଦ୍ଧ ସଂପ୍ରଦାୟମାନଙ୍କର ସ୍ୱତନ୍ତ୍ର ଅସ୍ତିତ୍ୱର କୌଣସି ବାସ୍ତବ ଉପାଦେୟତା ବା ଉପଯୋଗିତା ଅନୁଭୂତ ହୋଇନଥିଲା, କାଳ ପ୍ରବାହରେ ସେମାନେ ଶକ୍ତିଶାଳୀ ସନାତନ ଧର୍ମଭିତରେ ପ୍ରାୟ ସ୍ୱତଃ ବିଲୁପ୍ତ ହୋଇ ଯାଇଥିଲେ । ମହାଭାରତ, ହରିବଂଶ, ଓ ଭାଗବତାଦି ପୁରାଣମାନଙ୍କର ସହାୟତାରେ ଦ୍ରୁତ ଲୋକାଦୃତି ଲାଭ କରୁଥିବା ବାସୁଦେବ କୃଷ୍ଣ ଉପାସନାର ପ୍ରାଧାନ୍ୟ ହେତୁ ବଜ୍ରଯାନୀ ସେବିତ ଶ୍ରୀଜଗନ୍ନାଥ ହିଁ ସଂପୂର୍ଣ୍ଣ ଭାବେ ବାସୁଦେବ କୃଷ୍ଣ ଓ କାଳକ୍ରମେ ଗୋପୀବଲ୍ଲଭ, ରାଧାବଲ୍ଲଭ ରାସେଶ୍ୱର କୃଷ୍ଣଭାବରେ ପୂର୍ଣ୍ଣତା ପ୍ରାପ୍ତ ହୋଇଥିଲେ । ଜଗନ୍ନାଥ ଦାସଙ୍କ ରଚିତ 'ଷୋଳ ଚଉପଦୀ', ଗୋପାଳ ଦାସଙ୍କ ରଚିତ 'ପଦ୍ମପାଦ ସୁଧାନିଧି', ବଳରାମ ଦାସଙ୍କ 'ବେଦାନ୍ତସାର ଗୁପ୍ତଗୀତା', 'ବିରାଟ ଗୀତା', ଅଚ୍ୟୁତାନନ୍ଦ ଦାସଙ୍କ 'ଶୂନ୍ୟସଂହିତା', 'ପରମ ରାହାସ', ଯଶୋବନ୍ତ ଦାସଙ୍କ 'ପ୍ରେମଭକ୍ତି ବ୍ରହ୍ମଗୀତା', ଅନନ୍ତ ଦାସଙ୍କ 'କଳକୀ ଭାଗବତ' ଶିବଦାସଙ୍କ 'ରାଧାରସାମୃତଗୀତା', ଦିବାକର ଦାସଙ୍କ 'ଜଗନ୍ନାଥ ଚରିତାମୃତ', ବ୍ରଜଭାବୀୟା ଦାସଙ୍କର 'ଜ୍ଞାନସାଗର', ଓ ଶେଷରେ ଦୀନକୃଷ୍ଣ ଦାସଙ୍କର 'ରସବିନୋଦ' ପ୍ରଭୃତି ଗ୍ରନ୍ଥରେ ଶ୍ରୀଜଗନ୍ନାଥଙ୍କୁ ରାଧାକୃଷ୍ଣଙ୍କର ଯୁଗଳମୂର୍ତ୍ତି ଭାବରେ ଓ ଶ୍ରୀକ୍ଷେତ୍ରକୁ ନିତ୍ୟ ବୃନ୍ଦାବନ ଭାବରେ ପରିଚିତ କରାଇବାର ପ୍ରୟାସ ହୋଇଆସିଅଛି । ଏପରିକି ଦ୍ୱାରକା ଦାସଙ୍କ ପରି ଶୁଦ୍ଧ ନିର୍ଗୁଣ ଉପାସକ ଯୋଗମାର୍ଗ ତଥା ଜ୍ଞାନମିଶ୍ରା ଭକ୍ତି ସାଧକ ମଧ ଏହି ତତ୍ତ୍ୱକୁ ବିଶ୍ୱାସ କରିଥିବା ପରି ପ୍ରତୀତ ହୁଏ, କାରଣ ସେ ତାଙ୍କର ଶିବପୁରାଣ ଗ୍ରନ୍ଥରେ ଗୋଟିଏ ରୂପକ ମାଧମରେ ଲେଖିଛନ୍ତି;

''ଦେଉଳ ସିଂହ ଦୁଆରେ ପୂର୍ବକୁ ଯେଉଁବାଟ
ଗୋବର୍ଦ୍ଧନ ଗିରି ସେ ଦେଉଳ ଗୁମୁଟ ।
ବୃନ୍ଦାବନ ସେଇ ଠାଇଁ ନନ୍ଦର ନବର
ବାଇଶି ପାବଛ ସେଇଟି ମୁକତି ହାଟ ଘର ।

x x x

ସେଇ କୃଷ୍ଣଟି ନୁହନ୍ତି ଅବତାର
ଯେତେ ଅବତାର ଶ୍ରେଣୀ ତାଙ୍କ ଅଙ୍ଗରୁ ବାହାର ।

ଦୁଷ୍ଟ ସଂହାରିଣ ବିଶ୍ରମନ୍ତି ତହିଁ ଯାଇ,
ପୂର୍ଣ୍ଣବ୍ରହ୍ମଙ୍କୁ ଭଜନ୍ତି ସେ ରାଧାକୃଷ୍ଣ ଦୁଇ ।''

ଏପରି ବହୁ ଅଖ୍ୟାତ ବିଖ୍ୟାତ କବି ତାଙ୍କ ରଚନାରେ ବୃଦ୍ଧରୂପୀ ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କୁ ବାସୁଦେବ କୃଷ୍ଣ କହିବା ସହିତ ରତ୍ନସିଂହାସନରେ ରାଧାକୃଷ୍ଣ ଯୁଗଳମୂର୍ତ୍ତି ତତ୍ତ୍ୱକୁ ପୂର୍ଣ୍ଣବ୍ରହ୍ମ ବୋଲି ଅଭିହିତ କରିଛନ୍ତି । ଦୀନକୃଷ୍ଣ ଦାସଙ୍କ ସୃଜନଶୀଳ କଳ୍ପନାରେ ଏହି ଅଭିନବ ତତ୍ତ୍ୱଟି ଅଧିକ ପଲ୍ଲବିତ । ସେ ନିତ୍ୟ ଗୋଲୋକସ୍ଥଳୀକୁ ଯାଜପୁର ଠାରୁ, ଆରମ୍ଭ ହୋଇଥିବାର ବର୍ଣ୍ଣନା କରିଛନ୍ତି । ଏଥି ମଧ୍ୟରେ ନାଭିମଣ୍ଡଳସ୍ଥ ବିରଜାଦେବୀ, ତୁଳସୀକ୍ଷେତ୍ର କେନ୍ଦ୍ରାପଡ଼ାରେ ଦ୍ୱାଦଶ ଗୋପୀସ୍ଥଳ, ଭୁବନେଶ୍ୱରକୁ ରହସ୍ୟ ବୃନ୍ଦାବନ, ଖଣ୍ଡଗିରିକୁ ସୁଫଳ ବୃନ୍ଦାବନ ପ୍ରଭୃତି ରୂପେ ଅଭିହିତ କରି ଶେଷରେ ଶ୍ରୀଜଗନ୍ନାଥଙ୍କ ବିପୁଳ ତନୁକୁ ରାଧାକୃଷ୍ଣଙ୍କର ଘନ ଆଲିଙ୍ଗିତ ଯୁଗଳ ମୂର୍ତ୍ତି ରୂପେ ଚିତ୍ରଣ କରନ୍ତି, ତାଙ୍କର ବିଖ୍ୟାତ 'ରସବିନୋଦ' ଗ୍ରନ୍ଥରେ ।

କେବେ କେବେ ଶଙ୍କାରାଚାର୍ଯ୍ୟଙ୍କ ନାମରେ କେବେକେବେ ଚୈତନ୍ୟ ଦେବଙ୍କ ନାମରେ ପ୍ରଚଳିତ ବିଖ୍ୟାତ ଶ୍ରଜଗନ୍ନାଥାଷ୍ଟକରେ, ''ରସାନନ୍ଦୀ ରାଧା ସରସ ବପୁରାଲିଙ୍ଗନ ସୁଖୋ'' ''ଜଗନ୍ନାଥ ସ୍ୱାମୀ ନୟନାପଥଗାମୀ ଭବତୁମେ'' ବୋଲି କୁହାଯାଇଅଛି । ଏଥିରେ କୃଷ୍ଣ-ଜଗନ୍ନାଥ ବୃନ୍ଦାବନରେ ରାଧାଲିଙ୍ଗନ ସୁଖ ଅନୁଭବ କରିଥିବା ସ୍ପଷ୍ଟ ବର୍ଣ୍ଣିତ । କିନ୍ତୁ ପ୍ରକୃତରେ ଏହା କିଏ ରଚନା କରିଥିଲେ ତାହା ନିର୍ଦ୍ଦିଷ୍ଟ ଭାବରେ କହିବା କଠିନ, କାରଣ ଏ ସମ୍ବନ୍ଧରେ କୌଣସି ପ୍ରମାଣ ଉପଲବ୍ଧ ନୁହେଁ ।

ଏହି ଅଷ୍ଟକଟି ଶ୍ରୀଚୈତନ୍ୟ ମହାପ୍ରଭୁ ରଚନା କରିଥିଲେ ବୋଲି କୌଣସି ପ୍ରାମାଣିକ ସୂତ୍ରରୁ ଜଣାଯାଏ ନାହିଁ । ଶ୍ରୀଚୈତନଙ୍କ ବିଶ୍ୱାସ ଓ ଧାରଣାରେ ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥ ଦ୍ୱାରକାର ଐଶ୍ୱର୍ଯ୍ୟର ଲୀଳା ପ୍ରକଟ କରାନ୍ତି । ବର୍ଷ ମଧ୍ୟରେ ଥରେ ମାତ୍ର ସେ ପୁଷ୍ପିତ ବୃକ୍ଷଲତାଦି ଶୋଭିତ ବୃନ୍ଦାବନ ସଦୃଶ ସୁନ୍ଦରାଚଳ ଦର୍ଶନ ନିମିତ୍ତ ଗୁଣ୍ଡିଚା ମନ୍ଦିରକୁ ରଥଯାତ୍ରା କରନ୍ତି । ଏକଥା 'ଚୈତନ୍ୟ ଚରିତାମୃତ'ର ମଧ୍ୟଲୀଳାରୁ ଜଣାଯାଏ । ତେଣୁ ରତ୍ନସିଂହାସନସ୍ଥ ଜଗନ୍ନାଥଙ୍କ ଠାରେ ରାଧାକୃଷ୍ଣଙ୍କ ଯୁଗଳ ମୂର୍ତ୍ତିର ଆରୋପ ଚୈତନ୍ୟଦେବ ଅଥବା ଅନ୍ୟ କୌଣସି ଗୌଡ଼ୀୟଭକ୍ତ କରିଥିବାର ଆଦୌ ପ୍ରମାଣିତ ହୁଏ ନାହିଁ । ବରଂ ଚୈତନ୍ୟ ଆସ୍ୱାଦିତ ଶୁଦ୍ଧାଭକ୍ତି ଦିଗକୁ ଅତିଶୟ ଆକୃଷ୍ଟ ହେବା କାଳରେ ଉତ୍କଳର ନିର୍ଗୁଣ ପନ୍ଥୀ ଜ୍ଞାନମିଶ୍ରା ଭକ୍ତିମାର୍ଗର ପୂର୍ବୋକ୍ତ ଭକ୍ତ କବିଗଣ ବିପୁଳ ଉତ୍ସାହରେ ଏପରି ଆରୋପ କରିଥାନ୍ତି । ତେବେ ଯାହା ହେଉ ଯେଉଁ ଶୃଙ୍ଗାର ବା ମଧୁର ରସର କଲ୍ଲୋଳ ସୃଷ୍ଟି କରିବାର ଅଭିପ୍ରାୟରେ ଦୀନକୃଷ୍ଣ ଏହି କାବ୍ୟଗ୍ରନ୍ଥ ରଚନା କରନ୍ତି, ତାହା ଯେ ଅପରିଚିତ କୌଣସି ବୃନ୍ଦାବନବାସୀ କୃଷ୍ଣକଥାଶ୍ରିତ ନୁହେଁ ବରଂ ସୁପରିଚିତ ନୀଳାଦ୍ରି ବିହାରୀ ଜଗନ୍ନାଥ କୃଷ୍ଣଙ୍କର ବୃନ୍ଦାବନ ଲୀଳା ବିଳାସର ସୁମଧୁର ବିବରଣୀ ତାହା ସ୍ପଷ୍ଟ କରିଦେଇ କବି କହନ୍ତି;

''କମ୍ଭୁକଟକ ମଧରେ ନାଗର ଏକ
x          x          x
କଳାପର୍ବତରେ ଲୀଳା କରି ଅନେକ ।
କଲେ ଇଚ୍ଛା ମନେହେବା କଂସ ଅନ୍ତକ
କରିବା ଉଶ୍ୱାସ ମହୀ ଭାରା ଯେତେକ ।''

ଏପରିକି ବୃନ୍ଦାବନରେ ରାସକ୍ରୀଡ଼ା ସାରିବାପରେ ଶ୍ରୀକୃଷ୍ଣ ଯେପରି କମ୍ଭୁକଟକରେ ନିଶି ଯାପନ କରି ପାହାନ୍ତି ଶଙ୍ଖ ବାଜିବାରୁ ନିଦ୍ରା ତ୍ୟାଗ କରି ସେବାୟତମାନଙ୍କର ସେବା ଗ୍ରହଣ କରିଥିଲେ, ସେହିପରି ମଥୁରାରେ ରାତ୍ରିଯାପନାନ୍ତେ ପ୍ରଭାତ ହୋଇଥିଲା ନୀଳାଦ୍ରି ନବରରେ,

''କବାଟ ଉଲାଖି ହେଲା ନୀଳାଦ୍ରି ପୁରେ,
କୃପାସିନ୍ଧୁ ଅପହୃଡ଼ ହେଲେ ସତ୍ୱରେ ।
କରି ନିତ୍ୟ କୃତ୍ୟ ଶେଷ ଗୋପବଲ୍ଲଭ,
କଉତୁକେ ସାରିଲେ ଗୋପାଳବଲ୍ଲଭ ।
କରଦେଇ ସୁବଳ ସୁଦାମ ସ୍କନ୍ଧରେ,
କ୍ରୀଡ଼ନ୍ତି ଉପବନରେ ନାନା ରଙ୍ଗରେ ।''

ସେହି ଅବତାରୀ ଜଗନ୍ନାଥ କୃଷ୍ଣଙ୍କର ଯେଉଁ ବୃନ୍ଦାବନ ଲୀଳା ରହସ୍ୟ ଜୟଦେବଙ୍କ ସମୟରୁ ରାୟ ରାମାନନ୍ଦଙ୍କ ପର୍ଯ୍ୟନ୍ତ ସମାଜର ଉଚ୍ଚସ୍ତରରେ ବିଦଗ୍ଧ ପରଂପରାରେ ମାତ୍ର ସୀମୀତ ରହି ଆସିଥିଲା, ତାହାକୁ ଓଡ଼ିଶାର କାବ୍ୟାମୋଦୀ ଜନସାଧାରଣରେ ଆସ୍ୱାଦନ ସୌଭାଗ୍ୟ ପ୍ରଦାନ କରାଇବା ଲକ୍ଷ୍ୟରେ କବି ପରିକଳ୍ପନା କରିଥିଲେ ଆଲୋଚ୍ୟ ଏହି 'ରସକଲ୍ଲୋଳ' କାବ୍ୟ ।

## ୬) କାବ୍ୟର ଉତ୍ତରଣ :

ବ୍ରଜପୁରରେ କଳାକୃଷ୍ଣଙ୍କର ଆବିର୍ଭାବ ମାତ୍ରେ ଏହା ସର୍ବବିଧ ସମୃଦ୍ଧିରେ ମଣ୍ଡିତ ହେଲା; ସାକ୍ଷାତ୍ ଲକ୍ଷ୍ମୀଙ୍କର ବିହାରସ୍ଥଳୀ ଅଦ୍ଭୁତଶ୍ରୀ ଓ ସୁଷମା ମଣ୍ଡିତ ହୋଇ ଉଠିଥିଲା । ଦୀର୍ଘ ଚତୁର୍ବିଂଶତି ଛାନ୍ଦ ମଧରେ ଦୀନକୃଷ୍ଣ ଶ୍ରୀକୃଷ୍ଣଙ୍କର ଜନ୍ମ ଓ ଗୋକୁଳରେ ବାଲ୍ୟ-ପୌଗଣ୍ଡ-କୈଶୋର ଲୀଳାର ଆକର୍ଷଣୀୟ ବିଷୟମାନଙ୍କ ସହିତ ଗୋପପୁରର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିଛନ୍ତି । କୃଷ୍ଣଙ୍କର ବାଳଲୀଳାର ବର୍ଣ୍ଣନା ବାତ୍ସଲ୍ୟ ରସର କଲ୍ଲୋଳ ସଂଚାର କରାଏ । ସାଧାରଣ ଶିଶୁର ଶୈଶବସୁଲଭ ନାନାକ୍ରିୟା-କଳାପ ମଧରେ ଅସାଧାରଣ କୃତିତ୍ୱମାନଙ୍କର ବର୍ଣ୍ଣନା ଯେପରି ବିସ୍ମୟୋତ୍ପାଦକ ଓ ସଂଶୟ ସଂଚାରକ ସେହିପରି ଏହିସବୁ ଲୀଳା ବିଳାସ ସହିତ ସଂପୃକ୍ତ ଥିବା ସମସ୍ତ ଆତ୍ମୀୟମାନଙ୍କର ମାନବସୁଲଭ ବିସ୍ମୃତିଶୀଳତା ହେତୁ ଏହା ସ୍ୱାଭାବିକ ଏକ ଶିଶୁର

ବାଲଲୀଳା ଭାବରେ ମଧ୍ୟ ସ୍ୱୀକୃତ ତଥା ଦ୍ରୁତ-ବିସ୍ମୃତ । ଅବଲୀଳାକ୍ରମେ ସେ ପୁତନା, ଶକଟା, ତୃଣାବର୍ତ୍ତାଦିଙ୍କର ପ୍ରାଣହରଣ କରିବା ପରେ ବୟୋବୃଦ୍ଧି ହେବାରୁ ଭାଇ ବଳରାମ ସହିତ ଗୋଗୋଷ୍ଠରେ ଗୋଚାରଣ କର୍ମରେ ହୁଅନ୍ତି ନିଯୁକ୍ତ । ଗୋଗୋଷ୍ଠରେ ମଧ୍ୟ କ୍ରୀଡ଼ାପ୍ରିୟ ଶ୍ରୀକୃଷ୍ଣ ସଖାମାନଙ୍କ ସହିତ ଗଉଡ଼ଗୀତ ଗାଇ ବିବିଧ କ୍ରୀଡ଼ା କୌତୁକରେ ବ୍ୟାପୃତ ଥିବା ଅବସରରେ ବକାସୁର, ଅଘାସୁର, ପ୍ରଭୃତିଙ୍କୁ ବଧକରି ଓ ଦାବାଗ୍ନି କବଳରୁ ବୃନ୍ଦାବନକୁ ଉଦ୍ଧାର କରନ୍ତି । କାଳୀୟ ନାଗକୁ ବିତାଡ଼ିତ କରି ତାହାର ବିଷଜ୍ୱାଳାରୁ କାଳିନ୍ଦୀ ହ୍ରଦର ଜଳରାଶିକୁ ସ୍ୱଚ୍ଛ ବିଶୁଦ୍ଧ ପାନୀୟ ଜଳରେ ପରିଣତ କରନ୍ତି । ଶଙ୍ଖଚୂଡ଼ ସର୍ପକବଳରୁ ଓ ଦାବାନଳ ଦହନରୁ ଗୋପୀ-ଗୋବତ୍ସମାନଙ୍କୁ ରକ୍ଷା କରନ୍ତି । ସାଧାରଣ ଗୋଚାରଣ ଲୀଳା ଭିତରେ ଅସାଧାରଣ ଦୈବୀ ମହିମା ପ୍ରକଟିତ କରାଇ ସମସ୍ତଙ୍କୁ ସ୍ତମ୍ଭୀଭୂତ କଲେ ମଧ୍ୟ ଏହିସବୁ କୃତିତ୍ୱ ଭିତରୁ ମଦନମୋହନ ଶ୍ରୀକୃଷ୍ଣଙ୍କର ସର୍ବାକର୍ଷକ ଲୀଳା ଓ ରୂପ ମାଧୁର୍ଯ୍ୟ ଭିତରେ ତାଙ୍କର ଅନନ୍ତ ଶକ୍ତିମତ୍ତା ଓ ସାମର୍ଥ୍ୟ ତାଙ୍କ ପ୍ରତି ସକଳ ହୃଦୟରେ ସମ୍ମାନ-ଶ୍ରଦ୍ଧା, ସ୍ନେହ ଓ ସମ୍ଭ୍ରମ ସୃଷ୍ଟି କରାଇଥାଏ । ଶ୍ରୀକୃଷ୍ଣଙ୍କର ଏପରି ଅତିଲୌକିକ କୃତିତ୍ୱ ସହିତ ତାଙ୍କର ବିଶ୍ୱ ବିମୋହନ ରୂପ ଓ ବିଳାସମାଧୁରୀ ଗୋପପୁରର ରମଣୀମାନଙ୍କ ଚିତ୍ତରେ ସୃଷ୍ଟିକଲା ଅଦମ୍ୟ କାମଚେଷ୍ଟା ଓ ସମ୍ଭୋଗ ଅଭିଳାଷ । ବୟୋବୃଦ୍ଧି ସହିତ ଶ୍ରୀକୃଷ୍ଣଙ୍କର ଚିତ୍ତଗହନରେ ମଧ୍ୟ ସୃଷ୍ଟି ହେଲା ସେହି ଅନବଦ୍ୟାଙ୍ଗୀ ସରଳା ଗୋପାଙ୍ଗନାମାନଙ୍କ ସହିତ ଶୃଙ୍ଗାର ରଚନାର ଅବଦମିତ-ବାସନା ।

କୃଷ୍ଣ ମହିମା ବର୍ଣ୍ଣନା ପ୍ରଧାନ ପୁରାଣସାହିତ୍ୟ ଅଥବା ଅନ୍ୟାନ୍ୟ ଗ୍ରନ୍ଥମାନଙ୍କର ଅନନ୍ୟ ଲୋକପ୍ରିୟତାରେ ସ୍ତମ୍ଭୀଭୂତ ପାଶ୍ଚାତ୍ୟ ଓ ଭାରତୀୟ ଗବେଷକ ଆଲୋଚକମାନଙ୍କ ମନରେ ଏପରି ସନ୍ଦେହ ଓ ଭ୍ରାନ୍ତି ସୃଷ୍ଟି କରିଥିଲା ଯେ ସେମାନେ ସେହି ସାହିତ୍ୟକୁ ଓ ସାହିତ୍ୟର ନାୟକ ଶ୍ରୀକୃଷ୍ଣଙ୍କୁ ସଂପୂର୍ଣ୍ଣ କାଳ୍ପନିକ ଓ ଉଦ୍ଭଟ ବୋଲି ଅଭିହିତ କରି ଏ ଦେଶର ଆଧୁନିକ ଶିକ୍ଷିତ ସମାଜ ମାନସରେ ମଧ୍ୟ ନାନା ଭ୍ରାନ୍ତି ଓ ଅବିଶ୍ୱାସ ସଂଚାର କରାଇବାକୁ ବହୁ ପରିମାଣରେ କ୍ଷମ ହୋଇ ପାରିଛନ୍ତି । କିନ୍ତୁ ଅଧୁନା ଉପଲବ୍ଧ ସାଗର ଗର୍ଭରୁ ବିଧ୍ୱସ୍ତ ଦ୍ୱାରକାପୁରୀର ଭଗ୍ନ ପ୍ରାଚୀରାଦିର ଅବଶେଷ, ବିବିଧ ଧାତବ ପଦାର୍ଥ, ବୃଷ୍ଣୀବଂଶୀୟ ମୁଦ୍ରା ପ୍ରଭୃତିର ଐତିହାସିକ ବିଶ୍ଳେଷଣ ଶ୍ରୀକୃଷ୍ଣଙ୍କର ଐତିହାସିକତା ସମ୍ବନ୍ଧରେ ପ୍ରମାଣ ଦର୍ଶାଇ ସେହି ଚରିତ ଗ୍ରନ୍ଥମାନଙ୍କରେ ନିହିତଥିବା ସତ୍ୟ ଓ ବାସ୍ତବ ଘଟଣାବଳୀ ସପକ୍ଷରେ ସମର୍ଥନ ଜଣାଏ । ତେଣୁ ମାନବ ଦେହଧାରୀ ସର୍ବମାନସ ଆକର୍ଷଣକାରୀ ବିଶ୍ୱମୋହନ ରୂପ ସୌନ୍ଦର୍ଯ୍ୟ ସମ୍ବନ୍ଧରେ ଭାଗବତାଦି ଗ୍ରନ୍ଥମାନେ ଯେଉଁ ବର୍ଣ୍ଣନା ପ୍ରଦାନ କରନ୍ତି ତାହାକୁ ଅପ୍ରାକୃତ, ଐଶ୍ୱରିକ ବା ଦିବ୍ୟ ଭାବରେ ଅନ୍ୟାନ୍ୟ ସାହିତ୍ୟକାରମାନେ ସମର୍ଥନ କରିଥାନ୍ତି । ଭାଗବତ ମତରେ, ସେ ପୀତାମ୍ବରଧାରୀ, ବନପୁଷ୍ପମାଳା ଶୋଭିତ, ସଦାସ୍ମିତହାସ୍ୟବଦନ ସାକ୍ଷାତ୍ ମଦନମୋହନ ମୂର୍ତ୍ତି ନୀଳେନ୍ଦୀବର କଳେବର । ବୃନ୍ଦାବନରେ ତାଙ୍କର

କୈଶୋର ରୂପଶ୍ରୀର ପରିପୂର୍ଣ୍ଣ ସୌନ୍ଦର୍ଯ୍ୟ ପୁରୁଷ-ଯୋଷିତ କିମ୍ବା ସ୍ଥାବର ଜଙ୍ଗମାଦି ସମସ୍ତଙ୍କର ଚିତ୍ତାକର୍ଷକ ସାକ୍ଷାତ୍ ମନ୍ମଥ ମଦନ ତୁଲ୍ୟ । ଶ୍ରୀକୃଷ୍ଣଙ୍କର ଏହି ଅନିନ୍ଦ୍ୟ ଦିବ୍ୟରୂପମାଧୁର୍ଯ୍ୟ ତାଙ୍କର ପରିଣତ ବୟସରେ ମଧ୍ୟ ସଂପୂର୍ଣ୍ଣ ଅମ୍ଳାନ ରହିଥିଲା । ତେଣୁ ସେହିରୂପ ଦର୍ଶନ ନିମିତ୍ତ ପ୍ରଲୁବ୍ଧ ଶେଷଶାୟୀ ଭୂମା ପୁରୁଷ ଦ୍ୱାରକାରୁ ବ୍ରାହ୍ମଣ କୁମାରଙ୍କୁ ହରଣ କରି ନେଇଥିଲେ ବୋଲି ଶ୍ରୀକୃଷ୍ଣାର୍ଜୁନ ସେହି ବ୍ରାହ୍ମଣକୁମାରଙ୍କୁ ଉଦ୍ଧାର କରିବା ପାଇଁ ବିଳ ମାର୍ଗରେ ପ୍ରବେଶ କରି ତାଙ୍କୁ ସାକ୍ଷାତ କରିବାବେଳେ ସେହି ଭୂମାପୁରୁଷ ପ୍ରକାଶ କରିଥିଲେ;

''ଦ୍ୱିଜାତ୍ମଜା ମେ ଯୁବୟୋର୍ଦିଦୃକ୍ଷଣା, ମୟୋପନୀତା ଭୁବିଧର୍ମଗୁପ୍ତୟେ
କଳାବତୀର୍ଣ୍ଣାବିବନେର୍ଭରାସୁରାନ୍ ହତ୍ୱେହ ଭୂୟସ୍ତ୍ୱରୟେତମନ୍ତିମେ ।''

ଶ୍ରୀମଦ୍ ଭାଗବତ ଓ ଅନ୍ୟାନ୍ୟ ବହୁ ପୁରାଣମାନଙ୍କରେ ଏପରି ବହୁ ପଦମାନଙ୍କରେ ଶ୍ରୀକୃଷ୍ଣଙ୍କର ରୂପସୌନ୍ଦର୍ଯ୍ୟର ବର୍ଣ୍ଣନା ଶ୍ରୀକୃଷ୍ଣଙ୍କୁ ଅପ୍ରାକୃତ ବା ଦିବ୍ୟ ତତ୍ତ୍ୱ ଭାବରେ ପ୍ରତିପାଦିତ କରୁଥିବାବେଳେ 'ବ୍ରହ୍ମସଂହିତା'କାର ତାଙ୍କୁ ସାକ୍ଷାତ୍ ପରମେଶ୍ୱର ବୋଲି ଦ୍ୱିରୁକ୍ତିରେ କହନ୍ତି;

''ଈଶ୍ୱରଃ ପରମ କୃଷ୍ଣଃ ସଚ୍ଚିଦାନନ୍ଦ ବିଗ୍ରହଃ ।
ଅନାଦିରାଦି ଗୋବିନ୍ଦଃ ସର୍ବକାରଣକାରଣମ୍ ।।''

ଜୟଦେବଙ୍କ 'ଗୀତଗୋବିନ୍ଦ', ବିଲ୍ୱମଙ୍ଗଳଙ୍କ 'କୃଷ୍ଣକର୍ଣ୍ଣାମୃତ' ଅଥବା ଭାରତର ଅଗଣିତ କବିଙ୍କର ରଚନାରେ ଶ୍ରୀକୃଷ୍ଣଙ୍କର ରୂପସୌନ୍ଦର୍ଯ୍ୟର ଅପ୍ରାକୃତତା ସର୍ବତ୍ର ସମର୍ଥିତ ।

ତେଣୁ ଶ୍ରୀକୃଷ୍ଣଙ୍କ କୈଶୋରାବସ୍ଥାରେ ସମଗ୍ର ଗୋପାଙ୍ଗନାକୁଳ ତାଙ୍କର ଶୌର୍ଯ୍ୟତେଜ ସହିତ ସେହି ଦିବ୍ୟରୂପସଂପଦ ପ୍ରତି ହେଲେ ଆକୃଷ୍ଟ । ଏହି ରୂପସଂପଦ ହିଁ ସାଧାରଣତଃ ସମସ୍ତ ପ୍ରେମାକର୍ଷଣର ମୂଳ ଉତ୍ସ । ଅପରୂପ ସୌନ୍ଦର୍ଯ୍ୟର ପ୍ରମୂର୍ତ୍ତ ବିଗ୍ରହ ଶ୍ରୀକୃଷ୍ଣଙ୍କର ଆକର୍ଷଣୀୟ ମନୋହର ବେଶରେ ବନବିହାର, ବଂଶୀବାଦକ ଯମୁନାଗାମିନୀ ଗୋପାଙ୍ଗନାମାନଙ୍କ ସହିତ ହାସ୍ୟ ପରିହାସ ଦ୍ୱାରା ସେମାନଙ୍କର ମନୋହରଣ କରି ନିର୍ଜନ କୁଞ୍ଜମାନଙ୍କରେ ପ୍ରେମାଳାପ ଓ ପ୍ରଣୟ ରଚନା ପାଇଁ ହୋଇଛି ଅନୁକୂଳ । ସେହିପରି ଗୋପପୁରରେ ଘରେ ଘରେ ଅବାଧ ବିହରଣ ପ୍ରକାଶ୍ୟରେ ବା ଗୋପନରେ ସରଳବଣୀ ଆସ୍ୱାଦନ କରୁ କରୁ ଗୋପାଙ୍ଗନାମାନଙ୍କ ଠାରୁ କୌତୁକ ଭର୍ତ୍ସନା ଉପଭୋଗ ସହିତ ସେମାନଙ୍କର ଅଧରାମୃତ ପାନର ଉପଭୋଗ ମଧ୍ୟ ପ୍ରୀତି ପ୍ରଗାଢ଼ତା ପାଇଁ ତତୋଧିକ ଅନୁକୂଳ । ଏହି ପ୍ରେମଲୀଳା ସଂପୂର୍ଣ୍ଣ ଭାବେ ପରକୀୟା, କାରଣ ପ୍ରଣୟିନୀମାନେ ଅଧିକାଂଶ ମଧ୍ୟ ବିବାହିତା କୂଳବଧୂ । କିନ୍ତୁ ଶ୍ରୌତ-ସାମାଜିକ ବିଧି ଅନୁଶାସିତ କଠୋର ବ୍ୟବସ୍ଥା ମଧ୍ୟରେ ଏହି

ପରକୀୟା ପ୍ରେମ ପ୍ରଣୟ ରଚନାର ପ୍ରତି ସ୍ତରେ ସ୍ତରେ ଅପବାଦର ବିପଦ ହେତୁ ନାୟକ ନାୟିକାମାନଙ୍କ ଚିତ୍ତ ଗହନରେ ଭୟ, ସଂକୋଚ, ବିଭ୍ରମ, ଆଶଙ୍କା, ଉତ୍କଣ୍ଠା ଅଥଚ ଅବଦମିତ ଆଶା, ଅଭିଳାଷ, ତୃଷା ଓ ତୃଷ୍ଣାର ବାରମ୍ବାର ଉତ୍‌ଥାନ-ପତନର ସହସ୍ର ଇନ୍ଦ୍ରଧନୁ ଲୀଳା ଯେ କୌଣସି କାବ୍ୟ କବିତାର ରସ ସୌନ୍ଦର୍ଯ୍ୟ ସଂପାଦନରେ ପୂର୍ଣ୍ଣତାର ପ୍ରତୀତି ପ୍ରଦାନ ପାଇଁ ଦୁର୍ଲ୍ଲଭ ଉପାଦାନ । ଦୀନକୃଷ୍ଣଙ୍କର କାବ୍ୟ କୃଷ୍ଣ ଚରିତ ବର୍ଣ୍ଣନାର ଏକ ପ୍ରଗଳ୍ଭ ସଂକଳନ ନୁହେଁ । ଗୋପୀକୃଷ୍ଣଙ୍କର ପ୍ରଣୟ ସୌନ୍ଦର୍ଯ୍ୟର ରୂପାୟନ ଦିଗରେ ଏହା ସୁକୁମାର କବି ଚିତ୍ତର ଏକ ଅନବଦ୍ୟ ଆନ୍ତରୀଣ ସଯତ୍ନ ପ୍ରୟାସ । ତେଣୁ 'ରସକଲ୍ଲୋଳ'କୁ ଏକ ବର୍ଣ୍ଣନାଧର୍ମୀ ଛାନ୍ଦୋବଦ୍ଧ ରଚନା ମାତ୍ର ବୋଲି କଦାପି କୁହାଯାଇ ନପାରେ । ପରକୀୟା ପ୍ରୀତିର ସ୍ୱଭାବ ସୁଲଭ ଚିତ୍ତ ସଂଘର୍ଷକୁ କଳାତ୍ମକ ସୌନ୍ଦର୍ଯ୍ୟ ଦୃଷ୍ଟିରେ ରୂପାୟନ ଦ୍ୱାରା ଓଡ଼ିଆ କାବ୍ୟଧାରାରେ ଏକ ଅନାସ୍ୱାଦିତ ଅଭିନବ ରସସୌନ୍ଦର୍ଯ୍ୟ ଆସ୍ୱାଦନର ସୁଯୋଗ ସୃଷ୍ଟିକରି ଦୀନକୃଷ୍ଣ ଏକ ଯୁଗାନ୍ତରର ସୂତ୍ରପାତ କରିଥାନ୍ତି । ଏହି ଦୃଷ୍ଟିରୁ 'ରସକଲ୍ଲୋଳ' କାବ୍ୟ ଓଡ଼ିଆ ସାହିତ୍ୟରେ ଏକ ନୂତନ ସରଣୀର ସ୍ୱାଗତ-ତୋରଣ । ଏହି ପରକୀୟା ପ୍ରୀତି ଅପ୍ରାକୃତ ବୋଲି ସୂକ୍ଷ୍ମଦୃଷ୍ଟିରେ ପ୍ରତୀତ ହେଲେ ମଧ୍ୟ ତଥାପି ଏହା ପ୍ରାକୃତ, ଲୌକିକ ଓ ଏକାନ୍ତ ବାସ୍ତବ । ପୁନଶ୍ଚ ଏହାର ଅନ୍ତଃସ୍ୱରରେ ରହିଛି ପରମାର୍ଥ ସହିତ ସ୍ୱାର୍ଥର ସମ୍ମିଳିତ ତାନ । ଏପରି ଅତୀନ୍ଦ୍ରିୟରେ ଇନ୍ଦ୍ରିୟ ସର୍ବସ୍ୱ ଲୀଳା-ଲାଳିତ୍ୟ ଉପଜୀବ୍ୟ କରି ଏହି କାବ୍ୟ ହୋଇଛି ଭାବସମୃଦ୍ଧ, ରସସମୃଦ୍ଧ ଓ ଏକାନ୍ତ ମନୋହର ମହନୀୟ ଏକ ଶାଶ୍ୱତ ସାରସ୍ୱତ ସୃଷ୍ଟି-ସଂପଦ ।

ଏହି ପରକୀୟା ପ୍ରୀତିରଚନାର ବିବିଧ ଗୋପନ ମୁହୂର୍ତ୍ତମାନଙ୍କର ବର୍ଣ୍ଣନା ଏକାନ୍ତ କୌତୁହଳପ୍ରଦ ଓ କୌତୁକ ଉତ୍ପାଦକ । ମିଳନର ନିଭୃତ ସ୍ଥଳୀର ସଂକେତ ନେଇ ଦୂତୀ ଭୂମିକାରେ ଯୋଗ୍ୟା ବିବେଚିତ ହୁଅନ୍ତି ଦୈନନ୍ଦିନ ଜୀବନ ଯାତ୍ରାରେ ବିଶେଷ ସହାୟତା ପ୍ରଦାନ କରୁଥିବା ରଜକୀ, ନର୍ତ୍ତକୀ, ବେଶକାରିଣୀ, ମାଳ୍ୟାଣୀ, ବିଧ୍ୟାଧରୀ ପ୍ରଭୃତି । ବିବିଧ କପଟ ଲୀଳା ଧୂରୀଣ ଗୋପାଳକୃଷ୍ଣ, କାଚରା, ଶଙ୍ଖାରି, କୈବର୍ତ୍ତ, ମାଳାକାର, ଘାଟିଆଳ, କଳାଭୂତ ପ୍ରଭୃତି ଛଦ୍ମବେଶଧାରଣ କରି ମଧୁର ମୁରଲୀ ନାଦ ସହିତ ଶୃଙ୍ଗାରୀ ସଂଗୀତ ଗାନ କରି ଗୋପକାମିନୀମାନଙ୍କ ଚିତ୍ତ ହରଣ ସହିତ ସେମାନଙ୍କ ସହିତ ବିବିଧ ହାସ୍ୟ କୌତୁକର ବକ୍ରୋକ୍ତି ମାଧମରେ ଆପଣାର ସମ୍ଭୋଗ ଚେଷ୍ଟା ଅଭିବ୍ୟକ୍ତ କରନ୍ତି । ଏହିସବୁ ଚେଷ୍ଟାରେ ଶକ୍ତିମାନ ଶ୍ରୀକୃଷ୍ଣ ସଂପୂର୍ଣ୍ଣ ଅକୁତୋଭୟ ଥିବାବେଳେ କୁଳ ମର୍ଯ୍ୟାଦାର ଶୃଙ୍ଖଳା ମଧ୍ୟରେ ଥିବା ସେହି କୁଳବଧୂଗଣ ଯେତେ ଭୀତିବିହ୍ୱଳା ଓ ଶଙ୍କିତା ହେଲେ ମଧ୍ୟ ତଥାପି ବାରମ୍ବାର ଏହି ହାସ୍ୟ କୌତୁକପୂର୍ଣ୍ଣ ବକ୍ରୋକ୍ତି ଶୁଣିବାକୁ ସେମାନଙ୍କ ମନରେ ସୃଷ୍ଟ ହେଉଥାଏ ଅସମ୍ବରଣୀୟ ଅଭିଳାଷ । ଏହି ହାସ ପରିହାସର ଶାଣିତ ବକ୍ରୋକ୍ତିର କୁନ୍ତ ବିଦ୍ଧକରେ କାହାର ଶ୍ରୀଅଙ୍ଗ ସୌଷ୍ଠବ, କାହାର ଦେହର ସୁବାସ, କାହାର କୁସୁମଗଭା, କାହାର, ଚନ୍ଦ୍ରବଦନ,

କାହାର ମୋତିହାର, କାହାର ମନୋହାରିଣୀ ବାକ୍‌ଚାତୁରୀ ଇତ୍ୟାଦି । ଏସବୁର ସୁମଞ୍ଜୁଳ ଆଲେଖ୍ୟ ସୃଷ୍ଟିକରନ୍ତି କବି ଦୀନକୃଷ୍ଣ ।

## ୭) ପରକୀୟା ପ୍ରଣୟର ବିକାଶ ପର୍ବ :

ନବମ ଦଶମ ଛାନ୍ଦରେ ଗୋପିକାମାନଙ୍କର ଯମୁନା ସ୍ନାନ ଓ ପୌଗଣ୍ଡାବସ୍ଥାରେ ଉପନୀତ କୃଷ୍ଣଙ୍କର କ୍ରମବର୍ଦ୍ଧିଷ୍ଣୁ ହଟ୍ଟ ଜନିତ ସୀମାତିରିକ୍ତ ଆଚରଣ ସମ୍ବନ୍ଧରେ ନିଜ ନିଜର ମଧୁର ଅନୁଭୂତି ବର୍ଣ୍ଣନା କରି କୃଷ୍ଣ ପ୍ରତି ବାହ୍ୟ ବିରକ୍ତି ପ୍ରକାଶ କରୁଥିଲେ ମଧ ଶ୍ରୀକୃଷ୍ଣ ଠାରେ ମନବଚନରେ ପ୍ରଗାଢ଼ ଆତ୍ମନିବେଦନର ଭାବପୋଷଣ କରନ୍ତି । ଶୀତ ଓ ଗ୍ରୀଷ୍ମ ଋତୁରେ ପୁରେ ପୁରେ ଶ୍ରୀକୃଷ୍ଣଙ୍କର ଅବାଧ ବିହରଣ ଓ ବିବିଧ ବକ୍ରୋକ୍ତି ଓ ଚାଟୂକ୍ତିରେ ଗୋପିକାମାନଙ୍କର ମନୋରଂଜନର ବାଗ୍‌ବିଳାସ ଲୀଳା ବର୍ଣ୍ଣନା ଏହି କାବ୍ୟ କୁ କରେ ଅଧିକ ମନୋଜ୍ଞ । ବସନ୍ତ ଋତୁରେ ଗୋପିକାମାନଙ୍କର ବନ ବିହାର ଓ ନାନା ଜାତି ନବୀନ ପତ୍ର ପୁଷ୍ପରେ ସୁଶୋଭିତ ବନ ଶୋଭା ଦେଖି ସେମାନଙ୍କ ମନରେ ସୃଷ୍ଟି ହୁଏ ଅସୀମ କାମ ଚେଷ୍ଟାର ଭାବନା । ସେମାନଙ୍କର ଏହି ଚେଷ୍ଟାରେ ପାରସ୍ପରିକ କୌତୁକପୂର୍ଣ୍ଣ ଅଭିବ୍ୟକ୍ତିକୁ ଅତ୍ୟନ୍ତ ଲୋଭନୀୟ ଶୈଳୀରେ ଦୀନକୃଷ୍ଣ ବ୍ୟକ୍ତ କରନ୍ତି । କୁସୁମ ସଂଭାରରେ ନିଜେ ନିଜକୁ ଭୂଷିତ କରି ସେମାନେ ଶ୍ରୀକୃଷ୍ଣଙ୍କ ସହିତ ବନ ବିହାର କଲେ ଓ ସର୍ବାଙ୍ଗ ସୁନ୍ଦରୀ ରାଧା ଏବଂ କୃଷ୍ଣଙ୍କ ମଧରେ ପରସ୍ପର ପୁଷ୍ପମାଲ୍ୟ ବିନିମୟ ହୋଇ କୌତୁକ ବିବାହ ଲୀଳା ମଧ ସମ୍ପନ୍ନ ହେଲା । ଗୋପ-ବୃନ୍ଦାବନ ପରି ନିର୍ଜନ ଗୋପନ ଗ୍ରାମ୍ୟ ଗୋଚାରଣ ପରିବେଶ ମଧରେ ଗଢ଼ି ଉଠୁଥିବା ଏହି ସ୍ୱଚ୍ଛନ୍ଦ ପରକୀୟା ପ୍ରେମ ବିଳାସ ଲୀଳାର ବର୍ଣ୍ଣନାର ପୃଷ୍ଠଦେଶରେ ରହିଛି ସତେ ଯେପରି ମଧ୍ୟଯୁଗୀୟ ଜଞ୍ଜାଳହୀନ ଉତ୍କଳର ଦୈନନ୍ଦିନ ପଲ୍ଲୀ ଜୀବନର ନୈସର୍ଗିକ ପରିବେଶରେ ଘଟି ଯାଉଥିବା ବିବିଧ ଘଟଣାମାନଙ୍କର ପ୍ରତ୍ୟକ୍ଷ ପରିପ୍ରକାଶ । ଏ ଦେଶର ପାଠକ ପକ୍ଷେ ତାହା ଅତି ପରିଚିତ ଓ ପ୍ରିୟ ହୋଇଥିବାରୁ ଏହାର କାବ୍ୟରୂପ ପାଠକମାନଙ୍କୁ ମୁଗ୍ଧ ତନ୍ମୟ କରେ । ଆବଲ୍ୟରୁ ଶ୍ରୀକୃଷ୍ଣଙ୍କର ବିସ୍ମୟକର ସୌନ୍ଦର୍ଯ୍ୟ ବିମୁଗ୍ଧା ଗୋପୀମାନଙ୍କ ଚିତ୍ତର ନିବିଡ଼ ଅନୁରାଗକୁ ଅଙ୍କୁରିତ କରାଇ କ୍ରମବର୍ଦ୍ଧିଷ୍ଣୁ କରାଇଥିଲା । ପୌଗଣ୍ଡ ଲୀଳା ଭିତରେ କ୍ରମେ ଏହି ଅନୁରାଗର ପାଦପାଙ୍କୁର ସତେ ଯେପରି ହେଲା ଏକ ବହୁଶାଖୀ ଦ୍ରୁମରେ ପରିଣତ । ଏହି ପର୍ବରେ କୃଷ୍ଣ ଗୋପିକାଙ୍କ ମଧରେ ସୃଷ୍ଟି ହୋଇଥିବା ପରସ୍ପର ପ୍ରତି ସମ୍ଭୋଗେଚ୍ଛାର କମନୀୟ ଚିତ୍ରଣ କବି ଦୀର୍ଘ ଷୋଡ଼ଶଟି ଛାନ୍ଦ ମଧରେ ପ୍ରଦାନକରିଅଛନ୍ତି । ଏଥିରେ ଆଲମ୍ବନ ବିଭାବରେ ବିଦଗ୍ଧା ନବତରୁଣୀ ପରିହାସପଟୁ, ପ୍ରେୟସୀମାନଙ୍କର ଅନ୍ତକରଣ ବୃତ୍ତି ପ୍ରେମର ତାରତମ୍ୟାନୁସାରେ ଫୁଟିଉଠିଛି ନିଶ୍ଚିନ୍ତ ବଶୀଭୂତ ଧୀରଲଳିତ ଶ୍ରୀକୃଷ୍ଣଙ୍କର କମନୀୟ ରୂପକାନ୍ତି, ବିଳାସ, ମାଧୁର୍ଯ୍ୟ, ମାଙ୍ଗଲ୍ୟ, ସ୍ଥୈର୍ଯ୍ୟ, ତେଜ, ଲାଳିତ୍ୟ, ଔଦାର୍ଯ୍ୟ ପ୍ରଭୃତିର ନବନବ ରୂପ । ଦୀନକୃଷ୍ଣ ଅପୂର୍ବ କବିତ୍ୱ ଓ ରସିକତାର ପରିଚୟ ପ୍ରଦାନ

କୁଞ୍ଜବନୁ ଆଜି ଯିବ ନାହିଁ ଗୋ କେହି,
କାମଦେବକୁ ଡରିଲ ନାହିଁ ଗୋ କେହି,
କଟାକ୍ଷରେ ମୋତେ ଚାହଁ ନାହିଁ ଗୋ କେହି ।
କୃଷ୍ଣ ବାଣୀଶୁଣି ବରଜରମଣୀ ଫୁଲ ମାଳେ ମାଳେ ନେଇ,
କରୁଛୁ ବରଣ ତୁମ୍ଭେ ଆମ୍ଭ ପ୍ରାଣ ବୋଲି ଗଳାରେ ଲମ୍ବାଇ, ସେ କେହି,
କଟାକ୍ଷରେ ବକ୍ରକରି ଚାହିଁ, ସେ କେହି,
କଉତୁକେ ଗଳେ ରହି ରହି, ସେ କେହି,
କଞ୍ଜ ନୟନ ହୃଦୟ ମୋହି ସେ କେହି ।

ଏପରି ଲୀଳା ବିଳାସର ବର୍ଣ୍ଣନା କୃଷ୍ଣକଥା ସମ୍ବଳିତ ଗ୍ରନ୍ଥମାନଙ୍କରେ ଅଲଭ୍ୟ । ଏପରି କମନୀୟ ଦୃଶ୍ୟମାନଙ୍କର ବିପୁଳ ବାଙ୍ମୟ ବିଳାସ କବି ଦୀନକୃଷ୍ଣଙ୍କର ସର୍ଜ୍ଜନଶୀଳ କଳ୍ପନା ଦୃଷ୍ଟିର ଅଭିବ୍ୟକ୍ତି ମାତ୍ର । ଅନୁରୂପ ବହୁ ପଦମାନଙ୍କରେ ଗଠିତ ଛାନ୍ଦମାନଙ୍କରେ ତଥାପି ସେ ସବୁର ପୂର୍ଣ୍ଣ ପ୍ରକାଶ କରିବାରେ ଅସାମର୍ଥ୍ୟ ଦେଖାଇ କବି କହନ୍ତି,

''କହିବାକୁ କେ ବା ସାମରଥା, ସେ
କହି ବସିଲେ ହୋଇବ ପୋଥା, ସେ,
କବି ତୁଣ୍ଡ କରାଇବ ବ୍ୟଥା ସେ ।''

ଶୀତ ବସନ୍ତ ଓ ଗ୍ରୀଷ୍ମ ଋତୁମାନଙ୍କରେ ପରିବର୍ତ୍ତନ ପ୍ରବଣା ପ୍ରକୃତିର ନବ ନବ ରୂପଶ୍ରୀ ନବ ପ୍ରଣୟୀ ପ୍ରଣୟିନୀଙ୍କ ସୁକୁମାର ଚିତ୍ତରେ ସୃଷ୍ଟିକରେ ବିବିଧ ପ୍ରେମ କ୍ରିୟା-ପ୍ରକ୍ରିୟା । ଗ୍ରୀଷ୍ମ ଋତୁର ପ୍ରଚଣ୍ଡ ତାପରେ ତାପିତା ଗୋପୀମାନେ ଯମୁନାରେ ଉଲଗ୍ନ ପ୍ରବେଶ କରି ଜଳକ୍ରୀଡ଼ାରେ ଆନନ୍ଦ ବିଭୋର ଥିବାବେଳେ ଶ୍ରୀକୃଷ୍ଣ ଏହି ନୀତିଗର୍ହିତ ଓ ରୁଚି ବିରୁଦ୍ଧ କର୍ମ ଦେଖି ସେମାନଙ୍କର ପାଲଟା ବସ୍ତ୍ରହରଣ କରିନେଇ କଦମ୍ବ ବୃକ୍ଷ ଡାଳରେ ରଖି, ବୃକ୍ଷ ଡାଳରୁ ସେମାନଙ୍କର ଅନାବୃତ ତନିମାର ସୁଷମା ସମ୍ଭାରକୁ ଗୋପନରେ ଉପଭୋଗ କଲେ । ଅବଶେଷରେ ଲଜ୍ଜାବନତା ଉଲଗ୍ନା ଗୋପାଙ୍ଗନାମାନଙ୍କର ବ୍ୟାକୁଳ ନିବେଦନରେ ସେମାନଙ୍କର ବସ୍ତ୍ରସବୁ ସେମାନଙ୍କୁ ପ୍ରତ୍ୟର୍ପଣ କରିଦେଲେ । ସେମାନଙ୍କର ଅଭିନବ ଯୌବନ ଓ ନଗ୍ନ ଅନାବୃତ ତନିମା ଉପଭୋଗ କରିବା ଥିଲା ଶ୍ରୀକୃଷ୍ଣଙ୍କର ବସ୍ତ୍ରହରଣର ଏକମାତ୍ର ଲକ୍ଷ୍ୟ । କାମୋଦ୍ଦୀପକ ବର୍ଷା କାଳରେ ସେମାନଙ୍କ ମଧ୍ୟରେ ପରସ୍ପର ମିଳନ ଓ ସମ୍ଭୋଗ ବାସନା ହୋଇଥିଲା ତୀବ୍ରତର । ଏହିପରି ନାୟକ ନାୟିକାଙ୍କ ମାନସପଟ୍ଟରେ ଋତୁଚକ୍ରର ପରିବର୍ତ୍ତନ କ୍ରମେ ବିବିଧ ଶୃଙ୍ଗାରୀ ଭାବନାର ତୀବ୍ରତା ପ୍ରଦର୍ଶନ ପାଇଁ ପ୍ରାକୃତିକ ଦୃଶ୍ୟପଟ୍ଟରେ ପରିବର୍ତ୍ତିତ ରୂପ ରୂପାନ୍ତରର ପ୍ରଭାବ ଯେପରି ହୋଇଉଠିଛି ଅପରିହାର୍ଯ୍ୟ, ସେହିପରି ମୁଖ୍ୟ ବିଷୟବସ୍ତୁକୁ ପଲ୍ଲବିତ ରୂପଦାନ କରିବାରେ ଏହି ନୈସର୍ଗିକ ସୌନ୍ଦର୍ଯ୍ୟ-ବର୍ଣ୍ଣନା ପାଇଁ

ମଧ୍ୟ କବିଙ୍କୁ ମିଳିପାରିଛି ଅପୂର୍ବ ସୁଯୋଗ । ଦୀର୍ଘ ଷୋଡ଼ଶ ଛାନ୍ଦ ମଧ୍ୟରେ ନାୟକନାୟିକାଙ୍କ ମଧ୍ୟରେ ପରସ୍ପର ଅନୁରାଗର ପ୍ରଗାଢ଼ତା ହୋଇଛି କ୍ରମିକ ଭାବେ ସଂପନ୍ନ । 'ରସକଲ୍ଲୋଳ' କାବ୍ୟର କଥାବସ୍ତୁ କ୍ରମରେ ଋତୁ ଚିତ୍ର ବର୍ଣ୍ଣନା ଶ୍ରୀମଦ୍ ଭାଗବତର ଗୋପଲୀଳାରୁ ହିଁ ସ୍ଥୂଳ ଭାବରେ ଗୃହୀତ । ବର୍ଷା କାଳର ଅବ୍ୟବହିତ ପରେ ଭୂପୃଷ୍ଠରେ ଆସେ ଶରତ୍‌କାଳ । ନିର୍ମଳ ଆକାଶରେ ଚନ୍ଦ୍ରମାର ଶୁଭ୍ର ଜ୍ୟୋତ୍ସ୍ନା ଧରଣୀକୁ ପୁଲକିତ କଲା । ବୃନ୍ଦାବନରେ ସୃଷ୍ଟିହେଲା ସୌନ୍ଦର୍ଯ୍ୟର ବର୍ଣ୍ଣାଢ଼୍ୟ ତରଙ୍ଗ । ଶରତ୍‌କାଳୀନ ଧବଳିମା ଚତୁର୍ଦ୍ଦିଗରେ ବିଚ୍ଛୁରିତ କରିଦେଲା ସ୍ୱଚ୍ଛ ସରସ ଶୁଭ୍ରତା । କବି ଲେଖିଛନ୍ତି;

> ''କମଳନେତ୍ର ଦେଖିଲେ ଦିନେ,
> କୁମୁଦବନ୍ଧୁ ଉଦୟ ଗଗନେ ।
> କରିଅଛି ସବୁ ଦିଗ ଧବଳ,
> କମନୀୟ ଦିଶେ ମହୀମଣ୍ଡଳ ।
> କର୍ପୂର ମୋଡି ବିଞ୍ଚିଲା ପରାୟେ,
> କି ଅବା କ୍ଷିତି ହେଲା କ୍ଷୀରମୟେ ।
> କାହାର ଯଶ ପ୍ରକାଶ ହୋଇ,
> କେତେ ଶୁକଳକୁ ଦେଲା ଲୁଚାଇ ।''

ଦୀନକୃଷ୍ଣଙ୍କର ଶରତକାଳୀନ ଏହି ଧବଳିମାର ବର୍ଣ୍ଣନା କବିବର ରାଧାନାଥ ଓ ମଧୁସୂଦନଙ୍କୁ ମଧ ମୁଗ୍ଧ ଓ ଉଦ୍‌ବୁଦ୍ଧ କରିଅଛି । ଭାଗବତର ଅନୁସରଣରେ ଏହି ଶରତ କାଳରେ ହିଁ ଶ୍ରୀକୃଷ୍ଣ ବୃନ୍ଦାବନରେ ରାସ ରଚନା କରିବାର ବର୍ଣ୍ଣନା କରନ୍ତି ଦୀନକୃଷ୍ଣ । ଶରତକାଳୀନ ଜ୍ୟୋତ୍ସ୍ନା ବିଧୌତ ଚିତ୍ତୋଲ୍ଲାସକାରିଣୀ ପୂର୍ଣ୍ଣିମା ରଜନୀରେ ନିର୍ଜ୍ଜନ ପ୍ରହରରେ ଗୋପୀପ୍ରେମମୁଗ୍ଧ କୃଷ୍ଣ ବୃନ୍ଦାବନରେ ସୁମଧୁର ମୁରଲୀ ଧ୍ୱନି ଦ୍ୱାରା ଗୋପବାସିନୀ କୁଳବଧୂମାନଙ୍କ ଚିତ୍ତକୁ କଲେ ଶୃଙ୍ଗାରୀ ଲାଳସାରେ ଉଚ୍ଚାଟିତ ଓ ଅତିଶୟ ଚଳ-ଚଞ୍ଚଳ । ସେମାନେ ଏହି ମୁରଲୀ ମୂର୍ଚ୍ଛନାରେ ସମସ୍ତ ବାହ୍ୟଜ୍ଞାନ ହରାଇ କୃଷ୍ଣ ସହିତ ମିଳିତ ହେବାର ବ୍ୟଗ୍ରତାରେ ଏପରି ଉଦ୍‌ବିଗ୍ନ ହେଲେ ଯେ ସେମାନଙ୍କର ଅଙ୍ଗସଜ୍ଜା ଅବସରରେ ନାନା ବିଭ୍ରମ ସୃଷ୍ଟିକରି ବିକୃତ ଅସମ୍ଭାଳ ଅବସ୍ଥାରେ ବୃନ୍ଦାବନକୁ ଦ୍ରୁତଗତିରେ ଅଗ୍ରସର ହେଲେ । ସେମାନଙ୍କର ଚିତ୍ତ ଚାଞ୍ଚଲ୍ୟର ଏହି ଅବସ୍ଥାକୁ ଅତ୍ୟନ୍ତ ମର୍ମସ୍ପର୍ଶୀ ଭାବରେ ରୂପାୟନ କରନ୍ତି ଦୀନକୃଷ୍ଣ । ସେମାନଙ୍କର ଏପରି କୁଳଶୀଳ ଲଙ୍ଘନ, ପତିଶ୍ୱଶୁରାଦି ଆତ୍ମୀୟ ସ୍ୱଜନଙ୍କୁ ଉପେକ୍ଷା, ସ୍ୱଗୃହ ତ୍ୟାଗ ଓ ଜାର ଭାବରେ ପର ପୁରୁଷ ମିଳନ ଉତ୍କଣ୍ଠାର ଲଜ୍ଜାହୀନ ଆଚରଣରେ ଶ୍ରୀକୃଷ୍ଣ ବିସ୍ମୟ ପ୍ରକାଶ କରନ୍ତେ ସେମାନେ ନିଜ ନିଜର ପ୍ରସ୍ଫୁଟିତ ପ୍ରଣୟର ଅନତିକ୍ରମଣୀୟ ମିଳନ ଅଭୀପ୍ସାର ଯଥାର୍ଥତା ପ୍ରତିପାଦନ ନିମିତ୍ତ ଏହି ଜାରପ୍ରୀତିକୁ କୁଳଧର୍ମ ସଂଭ୍ରମ

ପରିତ୍ୟାଗ ତୁଳନାରେ ଶ୍ରେଷ୍ଠତା ପ୍ରଦାନ କରିଥିଲେ । ଦୀନକୃଷ୍ଣଙ୍କର ବର୍ଣ୍ଣନାନୁସାରେ ଏହି ମୁରଲୀର ଯାଦୁକରୀ ମୂର୍ଚ୍ଛନା ସକଳ ଗୋପାଙ୍ଗନାଙ୍କ ମନରେ ସୃଷ୍ଟିକଲା ମନ୍ମଥ ପୀଡ଼ାର ତୀବ୍ର ଶିହରଣ ଓ ଉନ୍ମାଦ-ଉଚ୍ଚାଟନ । ସେମାନଙ୍କର ଏହି ମୁରଲୀଧ୍ୱନିର ଅନୁସରଣରେ ବୃନ୍ଦାବନକୁ ଦ୍ରୁତଗତିରେ ଗୋପବଧୂମାନଙ୍କର ଅଭିସାର କରିବାର ଲୋଭନୀୟ ବର୍ଣ୍ଣନା ଭାଗବତ ପୁରାଣରେ ସୂଚିତ ହୋଇଥିଲେ ମଧ ଦୀନକୃଷ୍ଣଙ୍କର ପଲ୍ଲବିତ ରୂପାୟନ ପାଠକ ଚିତ୍ତରେ ଯେପରି ବିସ୍ମୟ ସଂଚାର କରାଏ, ସେହି ବ୍ରଜକାମିନୀମାନଙ୍କର ଉନ୍ମାଦ ଦଶା ପ୍ରତି ସଂବେଦନା ସଂଚାର କରାଏ ମଧ । ନିର୍ଜନ ରାତ୍ରିରେ ସେମାନଙ୍କୁ ଏକାକିନୀ ଏପରି କାମୋନ୍ମାଦିନୀ ଅବସ୍ଥାରେ, ବିବିଧ କାମଚେଷ୍ଟାରେ ବିହ୍ୱଳିତା ଦେଖି ଶ୍ରୀକୃଷ୍ଣ କହନ୍ତି;

''କି ଗୋ ଗୋପୀ ତୁମ୍ଭେ ଏଡ଼େ ସାହସୀ,
କାହିଁ ପାଇଁ ଏତେ ରାତ୍ରେ ଅଇଲ,
କୁଳଶୀଳ ଲାଜ କାହିଁ ଥୋଇଲ ।
କେ ବୋଲଇ ତୁମ୍ଭମାନଙ୍କୁ ଭୀରୁ,
କରିଛି ବିଚାର ଅନାଇଁ ଦୂରୁ ।
କେ କଲା ତୁମ୍ଭଙ୍କୁ ଏଡ଼େ ଅଜ୍ଞାନ ?'' ଇତ୍ୟାଦି,

ଏହାର ପ୍ରତ୍ୟୁତ୍ତରରେ ଭାଗବତ ଗ୍ରନ୍ଥରେ ଗୋପିକାମାନେ ଗମ୍ଭୀର ଭାବରେ ନିଜ ନିଜର ଆତ୍ମସମର୍ପଣର ଯଥାର୍ଥତା ପ୍ରତିପାଦନ କରି ଶ୍ରୀକୃଷ୍ଣଙ୍କ ସହ ଏହି ମିଳନ ତୁଳନାରେ ସକଳ ଆର୍ଯ୍ୟଧର୍ମର ମର୍ଯ୍ୟାଦା ଲଙ୍ଘନ ଓ ସ୍ୱାମୀଶ୍ୱଶୁରାଦିଙ୍କ ପ୍ରତିଷ୍ଠାଦିର ତୁଚ୍ଛତା ପ୍ରତିପାଦନ କରିଥିବା ବେଳେ ଦୀନକୃଷ୍ଣଙ୍କର ଏହି ଲଳିତ କାବ୍ୟରେ ସେ ଗମ୍ଭୀରତା ନାହିଁ, ଅଛି ବରଂ ସରଳା-ଅବଳା-ସୁଲଭ ପ୍ରତ୍ୟୁତ୍ତରରେ ସ୍ନିଗ୍ଧ ଅନୁରାଗର କମନୀୟ ରଙ୍ଗିମା । ସେମାନେ କହନ୍ତି;

''କିମ୍ପା ଡାକିଲ ଗୋପୀ ଆସ ଆସ,
କରୁଛ ଏବେ କାହିଁକି ନିରାଶ ।
କଲ ଆମ୍ଭଙ୍କୁ ସବୁ ରୂପେ ନାଶ,
କୃପାଳୁ ହୋଇ ଦୟା ନାହିଁ ଲେଶ ।
କାହିଁକି ଏବେ ଯିବୁ ତା କହ
କିଣିଛି ଆମ୍ଭଙ୍କୁ ତୁମ୍ଭ ସେନେହ ।''

ସେହି କୁଳବଧୂମାନଙ୍କର କୃଷ୍ଣପ୍ରୀତିର ପ୍ରଗାଢ଼ତା ସେମାନଙ୍କୁ ଅନତିକ୍ରମ୍ୟ ଦୁଶ୍ଛେଦ୍ୟ ଗାର୍ହସ୍ଥ ଧର୍ମ ଶୃଙ୍ଖଳାକୁ ଛିନ୍ନ କରି ସର୍ବତୋଭାବେ ପ୍ରେମାସ୍ପଦଠାରେ ଆତ୍ମନିବେଦନର ଅନନ୍ୟ ସମର୍ପଣ ଭାବରେ ତ୍ରସ୍ତଚକିତ ଗୋପୀନାଥ ସେମାନଙ୍କର

ସେହି କାମ ଦୋହଦ ପୂର୍ଣ୍ଣ କରିବା ଅଭିପ୍ରାୟରେ ଉଦ୍ୟତ ହୋଇ ଆସିଲେ । ମଧୁ-ମଧୁର ମୂରଲୀ ଧ୍ୱନିରେ ଉନ୍ମତ୍ତା ସେହି ଗୋପକାମିନୀମାନଙ୍କ ସହିତ ବିବିଧ କାମଚେଷ୍ଟାନୁକୂଳ ହାସ ପରିହାସର ଆନନ୍ଦାତିଶଯ୍ୟରେ ଅଶେଷ ସୁଷମାର ବିପଣୀତୁଲ୍ୟା ବନ ବିଥିକାରେ ବିଚ୍ଛୁରିତ ହୋଇଯାଇ ଉଦ୍ଦାମ ନୃତ୍ୟଗୀତାଦିରେ ବନଭୂମିକୁ କୋଳାହଳ ମୁଖରିତ କରୁଥିବା ଅବସରରେ ଅନ୍ୟମାନଙ୍କର ଅଜ୍ଞାତସାରରେ ମଦନମୋହନ ଶ୍ରୀକୃଷ୍ଣ ଗୋପିକା ଶିରୋମଣି ଶ୍ରୀରାଧା ସହିତ ଅଜ୍ଞାତ ବନପ୍ରଦେଶକୁ ଅପସରି ଗଲେ । ପଥକ୍ଳାନ୍ତା ସୁହାଗିନୀର ନିବେଦନରେ ତାକୁ ସ୍କନ୍ଧରେ ବସାଇ ଧୀର ମନ୍ଥର ଗତିରେ କୌଣସି ନିଭୃତ କୁଞ୍ଜକୁ ଯାତ୍ରା କରୁଥିବାବେଳେ କାନ୍ତ ଚିତ୍ତହରଣ କରିବାକୁ କ୍ଷମ ହୋଇଥିବା ଆପଣାର ପ୍ରୀତି-ଉତ୍କର୍ଷ ପାଇଁ ଗର୍ବାଭିମାନ କରିବାରୁ କୃଷ୍ଣ ତାହାକୁ ଏକାକିନୀ ତ୍ୟାଗ କରି ନିଘଞ୍ଚ ବନ ମଧ୍ୟରେ ଅନ୍ତର୍ହିତ ହୋଇଗଲେ । ପ୍ରେମାସ୍ପଦର ଏହି ଆକସ୍ମିକ ଅନ୍ତର୍ଦ୍ଧାନରେ ପ୍ରେମପାଗଳିନୀ ସେହି ଗୋପାଙ୍ଗନାଗଣ ଶୋକାତୁରା ହୋଇ ବହୁ ପଥ ଅନୁସରଣ ଓ ଅନ୍ୱେଷଣ କରି ବ୍ୟର୍ଥହେବା ପରେ ନୈରାଶ୍ୟ ଜର୍ଜ୍ଜରିତା ଓ ବିବଶା ହୋଇ ଉଚ୍ଚ ସ୍ୱରରେ ବନପଥକୁ ମୁଖରିତ କରି କ୍ରନ୍ଦନ ସହିତ କୃଷ୍ଣର ଏହି ନିର୍ମମ ଆଚରଣ ପାଇଁ ତା'ର ଅତୀତ ଗୁଣ ଅବିଗୁଣମାନ ଦର୍ଶାଇ କ୍ରୁଦ୍ଧ ଭାବରେ ଇତର ଭର୍ତ୍ସନାମାନ କରିବାର ଦୃଶ୍ୟ ଅଭୂତ । ଚେତନ ଅଚେତନ ଜ୍ଞାନ ହରାଇ ସେମାନେ ବନଭୂମିର ତରୁଲତାଦିଙ୍କୁ ମଧ୍ୟ ସେହି ପ୍ରେମାସ୍ପଦର ସନ୍ଧାନ ଜିଜ୍ଞାସା କରି ରୋରୁଦ୍ୟମାନ ସ୍ୱରରେ କହନ୍ତି;

''କହହେ କଦମ୍ବ ନକରି ବିଳମ୍ବ କାହିଁ ତୁମ୍ଭ ଫୁଲମାଳୀୟା,
କଳଧଉତ କାନ୍ତି ଦୁକୂଳିୟା,
କାଳିନ୍ଦୀ କୂଳୀୟା କଦମ୍ବମୂଳୀଆ ବରଜସଙ୍ଗ ମେଳୀୟା,
ସେ ମୋହନ,
କେଳିକଳାପ କଳାପଚୂଳୀଆ,
କମନୀୟ ମକର କୁଣ୍ଡଳୀୟା,
କଲେ କି ପ୍ରମାଦ ଛାଡ଼ି ଅପବାଦ ମୁଖଚନ୍ଦ୍ର ମଣ୍ଡଳୀୟା,
ସେ ମୋହନ ।''

କୃଷ୍ଣଙ୍କୁ କଳାନାଗ, ଶଠ, କୁଳିଶହୃଦୟ, କାମିନୀଘାତକ, କୃପଣ ପ୍ରଭୃତି ବହୁ ଅକଥ୍ୟ ଭାଷାରେ ଭର୍ତ୍ସନା କରୁ କରୁ ତରୁଲତାମାନେ କୃଷ୍ଣ ସଂବାଦ ଦେବାରେ ବ୍ୟର୍ଥ ହେଉ ଥିବାରୁ ସେମାନଙ୍କୁ ମଧ୍ୟ ଭର୍ତ୍ସନା କରନ୍ତି । ପ୍ରତ୍ୟେକ ଗୋପୀର କ୍ରୋଧ ଓ ଭର୍ତ୍ସନା ମଧ୍ୟ ପରସ୍ପର ଠାରୁ ଭିନ୍ନ । ରୋରୁଦ୍ୟମାନା ଗୋପୀମାନଙ୍କର କ୍ରୁଦ୍ଧ ଅଭିଯୋଗମାନଙ୍କର ଏ ସମବେତ ଐକତାନିକ ଉଚ୍ଚସ୍ୱରକୁ ଏକାନ୍ତ ଅବିମିଶ୍ର ଭାବରେ ସ୍ୱାଭାବିକ ରୀତିରେ ଚିତ୍ରଣ କରି କବି କହନ୍ତି;

"କେ ବୋଲେ ପୁତନା-କେଶୀ ପ୍ରାଣଘେନା କେ ବୋଲେ ହେ ଗଛ ଉପୁଡ଼ା,
କେ ବୋଲଇ ଆହେ କାଳୀ  ଘଉଡ଼ା,
କିମ୍ପା ଏଡ଼େ ଦୁଃଖ ଦେଉଅଛ ଦୁଃଖ-ହରା, ଅଘାସୁର ଫୋଡ଼ା,
ହେ ମୋହନ,
କେ ବୋଲଇ ହେ ତୃଣା ତଣ୍ଡିଚିପା,
କାହିଁ ରହିଲା ତୁମ୍ଭ ଅନୁକଂପା,
କଷ୍ଟ କାଳେ ଆମ୍ଭ ପାଶକୁ ନଇଲା, ତାହାକୁ ବର୍ଜିଲା, କିମ୍ପା ।"

ପ୍ରତି ମୁହୂର୍ତ୍ତରେ କୃଷ୍ଣ ରୂପ ଦର୍ଶନ କାମନା କରୁଥିବା ଗୋପୀମାନେ ସମସ୍ତ ବନଭୂମିର ସୀମୀତ ଜଗତକୁ କୃଷ୍ଣମୟ ଦେଖି ଏପରି ସ୍ତନିତ ରୋଦନ ସତ୍ତ୍ୱେ କୃଷ୍ଣ ସନ୍ଧାନ ନପାଇ ସେହି ବିରହିଣୀମାନେ ଆପଣାର ଭାଗ୍ୟ ନିନ୍ଦା କରୁକରୁ ଚତୁର୍ଦ୍ଦିଗରେ ବିଚ୍ଛୁରିତ ଚନ୍ଦ୍ର, ଜ୍ୟୋତ୍ସ୍ନା, ଚକ୍ରବାକ, କୁବଳୟାଦି ପୁଷ୍ପ, ମଧୁରମରୁତାଦି ସମସ୍ତ ଉଦ୍ଦୀପନ ବିଭାବମାନଙ୍କୁ ସେମାଙ୍କର ଦାହିକାଗୁଣ ପାଇଁ ବାରମ୍ବାର ତିରସ୍କାର କରି ଯମୁନା ତଟରେ ତା'ର କୃଷ୍ଣ ସାନ୍ନିଧ ଲାଭର ପ୍ରଶଂସା କରି ତା'ଠାରୁ ମଧ କୃଷ୍ଣ ସଂବାଦ ପ୍ରାପ୍ତି ପାଇଁ ନିବେଦନ ଜଣାଇବା ବେଳେ କୃପାଳୁ କୃଷ୍ଣ ହେଲେ ଅପ୍ରତ୍ୟାଶିତ ଭାବେ ଉପସ୍ଥିତ ।

ବିଷମ ବିରହର ଦୁଃସହ ସ୍ଥିତିରେ ପ୍ରଗାଢ଼ ପ୍ରଣୟନିଷ୍ଠା ସାନ୍ଦ୍ରତମ ରୂପ ଲାଭ କରୁଥିବା ଅବସରରେ ପ୍ରେମାସ୍ପଦର ଏପରି ଅପ୍ରତ୍ୟାଶିତ ଆବିର୍ଭାବ ସତେ ଯେପରି ସେମାନଙ୍କର ନୈରାଶ୍ୟ ସିନ୍ଧୁକୁ ଶୁଷ କରି ଅଗାଧ ଆନନ୍ଦର ମହୋର୍ମିମାଳାରେ ଉଦ୍‌ବେଳିତ କରିଦେଲା । ଏହି ଅବସ୍ଥା ବର୍ଣ୍ଣନରେ ନିଜକୁ ଅସମର୍ଥ ଅନୁଭବ କରି କୃଷ୍ଣଦାସ କହନ୍ତି;

"କୃଷ୍ଣଙ୍କୁ ଦେଖି ଗୋପୀ ହେଲେ ଯାହା,
କେ କହିବ ଅବା ବଚନେ ତାହା ।
କଳାକର ଦର୍ଶନ, କଲେ କୁମୁଦ ବନ,
କୋଟିନିଧି ପାଇଲା ମହା ଦରିଦ୍ର ଜନ ।"

ବ୍ରଜାଙ୍ଗନାମାନଙ୍କର ବ୍ରଜେନ୍ଦ୍ର ନନ୍ଦନପ୍ରୀତି ଏହିଠାରେ ହିଁ ଶୀର୍ଷାରୋହଣ କରେ । ଅନନ୍ତ ମୂର୍ତ୍ତିରେ ବିରାଜିତ କୃଷ୍ଣ ସେହି ଗୋପରମଣୀମାନଙ୍କ ସହିତ ରଚନା କଲେ ଯୁଗ୍ମ ଯୁଗ୍ମ ହୋଇ ମହାମିଳନର ଆବେଶ ଭିତରେ ମହାରାସ । ସେମାନଙ୍କର ବିବିଧ ରୀତିର ସମ୍ଭୋଗ ବିଳାସର ବିପୁଳ ଚିତ୍ରଣ କରୁ କରୁ କବି ଜୟଦେବଙ୍କ 'ଗୀତଗୋବିନ୍ଦ'ର ଅନୁସରଣରେ ରାଧାକୃଷ୍ଣଙ୍କର ପୁରୁଷାୟିତ ଲୀଳାବିଳାସ ଓ ମନ୍ମଥ ସଂଗ୍ରାମ କଥା ମଧ ବର୍ଣ୍ଣନା କରିଛନ୍ତି । ଆପଣାର ଇଷ୍ଟ ଦେବତାଙ୍କର ଏହି ଶୃଙ୍ଗାର

ବିଳାସ ବର୍ଣ୍ଣନାର ପ୍ରଥମ ଶିଳ୍ପୀ ଥିଲେ ବୋଧହୁଏ କାଳିଦାସ । କାଳିଦାସଙ୍କର ଏହି କାବ୍ୟକୀର୍ତ୍ତି ତା'ର ସକଳ ଐଶ୍ୱର୍ଯ୍ୟ ସତ୍ତ୍ୱେ ସମାଲୋଚକମାନଙ୍କ ଦ୍ୱାରା ନିନ୍ଦିତ ହୋଇଆସିଥିଲେ ମଧ ଏହି ଭକ୍ତକବିଗଣ ତଥାପି ଏହାକୁ ମଧୁର ରସଷ୍ଠାନରେ ଚିତ୍ରଣ କରିବାର ଲୋଭ ସମ୍ବରଣ କରିପାରି ନାହାନ୍ତି । କବି ସମ୍ରାଟ ଉପେନ୍ଦ୍ର ଭଂଜ ମଧ ବୈଦେହୀଶ ବିଳାସରେ ହୋଇଛନ୍ତି ସେହି ଲୀଳାବିଳାସ ଚିତ୍ରଣ ଲୋଭର ବଶବର୍ତ୍ତୀ ।

ପ୍ରଣୟିନୀ ଗୋପାଙ୍ଗନାକୁଳ ପ୍ରଣୟର ସର୍ବତୋପଲବ୍ଧି କରନ୍ତି; ପ୍ରଣୟୀ ପରମାତ୍ମାଙ୍କୁ ରୂପ-ରସ-ଗନ୍ଧ-ସ୍ପର୍ଶ-ଶବ୍ଦ-ମନନ-ଆଲିଙ୍ଗନ-ଆଶ୍ଳେଷ ମଧ ଦେଇ ବିପୁଳ ତୃପ୍ତି ଅନୁଭବ ସତ୍ତ୍ୱେ ସେମାନେ ତଥାପି ଅତୃପ୍ତା, ତଥାପି ଅକ୍ଳାନ୍ତା । ନିରନ୍ତର ସେହି ପ୍ରଣୟର ପିପାସାର ପ୍ରଜ୍ୱଳିତ ଶିଖା ସେମାନଙ୍କର ପ୍ରଲୁବ୍ଧ ମନୋଭୂମିରେ ଦେଦୀପ୍ୟମାନ । ପ୍ରଣୟର ସମ୍ଭୋଗ ଅନ୍ତେ କୃଷ୍ଣ ସେମାନଙ୍କର ଅଙ୍ଗବିନ୍ୟାସର ଉପଚାର କରି ବସନ୍ତି, ଅସରନ୍ତି ସେ ଆନନ୍ଦ ଉଲ୍ଲାସ ।

ଦୀନକୃଷ୍ଣଙ୍କର କାବ୍ୟ ପରିକଳ୍ପନାର ଅନ୍ତିମ ଲକ୍ଷ୍ୟ ଏହିଠାରେ ହିଁ ପ୍ରାୟ ପରିପୂର୍ତ୍ତି ଲାଭ କରିଥାଏ । ଯେଉଁ ପରକୀୟା ପ୍ରଣୟ ସାଧନର ଚିତ୍ରରୂପ ଦେବାକୁ ବିପୁଳ ଶକ୍ତିରେ ପ୍ରୟାସ କରି କବି କୃଷ୍ଣ ଦାସ ଗୋପଲୀଳାନ୍ତର୍ଗତ ବହୁ ଘଟଣାକୁ ଉପେକ୍ଷା କରି ଆସିଛନ୍ତି, ସେହି ପ୍ରଣୟ ସୌରଭକୁ ଦୀର୍ଘ ଆଠ ଛାନ୍ଦ ମଧରେ ବର୍ଣ୍ଣନା କରି ମଧ 'ଏ ରସ କହୁଥିଲେ ଅଶେଷ' ବୋଲି ଉପସଂହାର କରିବା ପରେ, ନିଶାନ୍ତରେ ନୀଳାଦ୍ରି ନବରରେ ପାହାନ୍ତି ଶଙ୍ଖ ବାଜିଲା ଓ ନିତ୍ୟକର୍ମ ସେବାଦି ସମାପନାନ୍ତେ କରୁଣା ହୃଦୟରେ କଳ୍ମଷୀ ଲୋକଙ୍କୁ କଳମଷ ପଙ୍କରୁ ଉଦ୍ଧାର କରିବାକୁ କୃଷ୍ଣ କଳାପର୍ବତରେ ବିଜୟ କଲେ । ସେହି ପ୍ରଭୁ ମହିମା ଓ କ୍ଷେତ୍ର ମହିମା ଉଲ୍ଲେଖ ସହିତ କବି ହୁଅନ୍ତି ଆତ୍ମ ସଚେତନ ଓ ଅନ୍ତର୍ମୁଖୀ ତାଙ୍କର ମନରେ ଭରି ଉଠେ ଅଶେଷ ଗ୍ଳାନି, କାରଣ କୁଚକ୍ରୀମାନଙ୍କର ଷଡ଼ଯନ୍ତ୍ରର ଶରବ୍ୟ ହୋଇ ସେ ହୋଇଥିଲେ ସେହି ଆନନ୍ଦମୟ ଲୀଳା ଦର୍ଶନରୁ ବଞ୍ଚିତ ।



ଷଷ୍ଠ ପରିଚ୍ଛେଦ

# ବିପ୍ରଲମ୍ଭ ଶୃଙ୍ଗାରର କରୁଣ ପର୍ଯ୍ୟାୟ

ପୂର୍ବେ କଥିତ ଯେ, ଓଡ଼ିଆ ସାହିତ୍ୟରେ ବ୍ରଜରସର କଲ୍ଲୋଳ ସୃଷ୍ଟି କରିବା ନିମିତ୍ତ ଦୀନକୃଷ୍ଣଙ୍କର ଏହି କାବ୍ୟଟି ପରିକଳ୍ପିତ । ଯେଉଁ ଶ୍ରୀକୃଷ୍ଣଙ୍କର ବିବିଧ କୌତୁକ ବର୍ଣ୍ଣନା ସହିତ ତାଙ୍କ ନାମ ଗୁଣାଦିର ମାହାତ୍ମ୍ୟ ପ୍ରକଟନ ଲକ୍ଷ୍ୟରେ କବି ନାବକେଳି, ଭୂତକେଳି ଅଥବା ନାମରତ୍ନଗୀତା ରଚନା କରିଥିଲେ ସେହି ଶ୍ରୀକୃଷ୍ଣ କଥାରେ ନିହିତ ରହିଥିବା ରସସୌନ୍ଦର୍ଯ୍ୟର ଗଙ୍ଗୋତ୍ରୀକୁ କାବ୍ୟ ମାଧ୍ୟମରେ ଅମନ୍ଦଗାମିନୀ କଳକଲ୍ଲୋଳିନୀରେ ରୂପାନ୍ତରିତ କରାଇବା ଲକ୍ଷ୍ୟରେ ହିଁ କବିଙ୍କର ଏହି ଅଭିନବ କାବ୍ୟର ପରିକଳ୍ପନା । ସମଗ୍ର କୃଷ୍ଣକଥା ହେଉଛି ମୂଳତଃ କରୁଣ ରସର ଆଧାର । ନିଶ୍ଚିନ୍ତ ମୃତ୍ୟୁମୁଖରୁ ତ୍ରାହି ଲଭିବାର ଉପାୟ ସ୍ୱରୂପ ମହାପ୍ରତାପୀ ଭୁବନ ବିଜୟୀ-ହନନ ଉଦ୍ୟତ-କଂସ ଆପଣାର ଭଗିନୀ, ଭଗିନୀ-ପତିଙ୍କୁ ବହୁ ଅଶ୍ରାବ୍ୟ ଇତର ଭାଷାରେ ଭର୍ତ୍ସନା କରି ବିବାହ ବେଦିରୁ ନେଇ କରନ୍ତି କାରାରୁଦ୍ଧ । ସେମାନଙ୍କର ସମସ୍ତ ସନ୍ତାନମାନଙ୍କୁ ଜାତ ହେବା ମାତ୍ରେ କଂସ ହସ୍ତରେ ସମର୍ପଣ କରିଦେବାର ସତ୍ୟକରି ନିଶ୍ଚିନ୍ତ ପ୍ରତିଶ୍ରୁତି ଦେବାରୁ ହିଁ କଂସର ଉତ୍ତୋଳିତ କୃପାଣ ଚୋଟ ମୁଖରୁ ଦେବକୀର ପ୍ରାଣରକ୍ଷା କରାଯାଇ ପାରିଥିଲା । ସତ୍ୟରକ୍ଷା କରି ପୁତ୍ର ସନ୍ତାନ ଜନ୍ମହେବା ମାତ୍ରେ ଗୋଟିକ ପରେ ଗୋଟିଏ ଛଅ ଗୋଟି ଶିଶୁ ସନ୍ତାନଙ୍କୁ ଶୋକବିଦୀର୍ଣ୍ଣ ବସୁଦେବ, ଗର୍ଭଧାରିଣୀ ଦେବକୀ କୋଳରୁ ନେଇ କଂସ ହସ୍ତରେ ଅର୍ପଣ କରିଥିଲେ ଏବଂ କଂସ ସମସ୍ତଙ୍କୁ ନିର୍ମମ ଭାବେ ଅଟ୍ଟହାସ୍ୟ ସହିତ ହତ୍ୟା କରିବାର କରୁଣ ଗାଥା ଏ ଦେଶର କାବ୍ୟ କବିତା ଧାରାକୁ କରିଛି ଅନୁପମ କରୁଣ ରସରେ ରସାପ୍ଳୁତ । ଅବଶେଷରେ ଅଷ୍ଟମ ଗର୍ଭରେ ଜାତ ଶ୍ରୀକୃଷ୍ଣଙ୍କର ପ୍ରାଣରକ୍ଷା ନିମିତ୍ତ ଭୟଙ୍କର ବର୍ଷଣ ମୁଖର ନିରନ୍ଧ୍ର ତମିସ୍ରିତ ନିର୍ଜନ ନିଶିଥରେ ଉଦ୍‌କୂଳ ପ୍ରବାହା ଯମୁନା ଗର୍ଭରେ ବସୁଦେବ ଆପଣାର ଜୀବନକୁ ଚରମ ଶଙ୍କଟାପନ୍ନ କରାଇ ଦୀର୍ଘପଥ ଅତିକ୍ରମ ପରେ ଗୋପାଳ ପଲ୍ଲୀସ୍ଥ ସ୍ୱମିତ୍ର ଗୃହରେ ଲୁକ୍କାୟିତ କରାଇବା ପ୍ରଭୃତି ଘଟଣା ଅସାଧାରଣ ଭାବେ କରୁଣ ଓ ଏପରି ଘଟଣା ସମଗ୍ର ବିଶ୍ୱପରଂପରାରେ ପଟାନ୍ତର ହୀନ । ତଥାପି ଶିଶୁକୃଷ୍ଣ ନିରାପଦ ନୁହନ୍ତି, ଏବଂ ଗୋପପୁରରେ ମଧ ତାଙ୍କୁ ହତ୍ୟା କରିବା ପାଇଁ କଂସର ଧାରାବାହିକ ସୁପରିକଳ୍ପିତ ସଯତ୍ନ ଷଡ଼ଯନ୍ତ୍ରମାନ ସତତ ଅପ୍ରତିହତ ରହିଥାଏ । ଏକ ମର୍ଯ୍ୟାଦାସମ୍ପନ୍ନ ରାଜକୁଳରେ ଜନ୍ମଲାଭ କରି ମଧ ଶ୍ରୀକୃଷ୍ଣଙ୍କୁ ଗୋପାଳ ପଲ୍ଲୀରେ ଅଜ୍ଞାତବାସ କରି

ଗୋପାଳ ବାଳକମାନଙ୍କ ସହିତ ସମଗ୍ର ବାଲ୍ୟଜୀବନ ନାନା ସଂକଟ ମଧ୍ୟରେ ଗୋଚାରଣ କରାଇବାର କଷଣମାନ ଭୋଗ କରିବାକୁ ହୋଇଥିଲା । ଶ୍ରୀକୃଷ୍ଣଙ୍କର ଓ ତାଙ୍କର ଜନକଜନନୀଙ୍କର ଏହି ଜୀବନ କାହାଣୀ କେବଳ ନିପୀଡ଼ିତ, ଅତ୍ୟାଚାରିତ, ଲାଞ୍ଛିତ ଜୀବନର ଦୁଃସହ କାରୁଣ୍ୟର ଗାଥା, ଯାହାକି ବିଶ୍ୱର ପ୍ରତ୍ୟେକ ମଣିଷ ମନରେ ସୁଗଭୀର ଦୁଃଖାନୁଭୂତିର ହାହାକାର ସୃଷ୍ଟିକରେ । କିନ୍ତୁ ଆପଣାର ଜନ୍ମରହସ୍ୟ ସମ୍ବନ୍ଧରେ ଅଜ୍ଞାତ ଗୋପାଳକୃଷ୍ଣଙ୍କୁ ତାଙ୍କର ପିତାମାତା ନନ୍ଦ ଯଶୋଦାଙ୍କର ବିମଳ ବାତ୍ସଲ୍ୟ, ମୁକ୍ତ ବନଭୂମିରେ ଅବାଧ ବିଚରଣ, ଗୋଚାରଣ ବେଳେ ଶିଙ୍ଗାବଂଶୀ ବାଦନ ସହିତ ସଖାମାନଙ୍କ ସହିତ କ୍ରୀଡ଼ାବିଳାସ, ପତ୍ରଠୁଙ୍ଗାରେ ବନଭୋଜନ, ଯମୁନାଗାମିନୀ ଗୋପବଧୂମାନଙ୍କ ସହିତ ସୁମଧୁର ହାସ-ପରିହାସ ଓ ଗୋପନ-ପ୍ରଣୟ ବିଳାସ ବିମୋହିତ କରି ରଖିଥିଲା । କ୍ରମ ପଲ୍ଲବିତ ହୋଇ ଆସୁଥିବା ଏହି ପ୍ରୀତି ଲତିକାଟି ଯେତେବେଳେ କୈଶୋର ଦଶାରେ ତାଙ୍କର ବିଶ୍ୱବିମୋହନ ରୂପ ବିମୁଗ୍ଧା ତରୁଣୀମାନଙ୍କ ସହିତ ରାସବିଳାସରେ ଶୀର୍ଷାରୋହଣ କରି ପୁଷ୍ପିତ ହୋଇ ଉଠୁଥିଲା, ଠିକ୍ ସେତିକିବେଳେ ହଠାତ୍ ପ୍ରଚାରିତ ହେଲା କଂସାଦେଶରେ ରାମ ସହିତ କୃଷ୍ଣଙ୍କର ମଥୁରାଯାତ୍ରାର ମର୍ମଦାହୀ ସଂବାଦ । କଂସାଦେଶରେ ଗୋପପୁରରେ ଉପସ୍ଥିତ ହୁଅନ୍ତି କଂସ ଡଗର ଅକ୍ରୂର । ରାମକୃଷ୍ଣଙ୍କର ଅସାଧାରଣ ଶକ୍ତି, ସାମର୍ଥ୍ୟ, କୃତିତ୍ୱ ଓ ଅଲୌକିକ ଲୋକପ୍ରିୟତା ସଂବନ୍ଧରେ ସଂପୂର୍ଣ୍ଣ ଅବହିତ ଥିଲେ ମଥୁରା ଗଣରାଜ୍ୟର ସେନାପତି କୂଟନୀତି ବିଶାରଦ ଅକ୍ରୂର । କଂସର ଭଗିନୀପତି ହୋଇଥିବାରୁ କୃଷ୍ଣହତ୍ୟା ସଂବନ୍ଧୀୟ ପ୍ରସ୍ତୁତ ସମସ୍ତ ଷଡ଼ଯନ୍ତ୍ର ବିବରଣୀ ଜଣାଇ କୃଷ୍ଣ-ଆନୟନ ରୂପକ ଏକ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ପ୍ରଦାନ କରିଥିଲେ ମଧ୍ୟ କଂସର ଅତ୍ୟାଚାରରୁ ମଥୁରାଗଣ ରାଜ୍ୟକୁ ରକ୍ଷାକରିବାର ଏକ ଅପୂର୍ବ ସୁଯୋଗ ଲାଭକରି ଅକ୍ରୂର ହୁଅନ୍ତି କୃଷ୍ଣ ଆନୟନ ନିମିତ୍ତ ଅତ୍ୟନ୍ତ ଉତ୍ସୁକ ଓ ଅଧୀର । ଗୋପପୁରରେ କୃଷ୍ଣଙ୍କର ଅଭୂତ ପୂର୍ବ ଅସାଧାରଣ ଲୋକପ୍ରିୟତା, ପ୍ରତିଷ୍ଠା ଓ ପ୍ରୀତି ବନ୍ଧନ ଭିତରୁ କୃଷ୍ଣଙ୍କୁ ବିମୁକ୍ତ କରି ନେବାରେ ପୂର୍ଣ୍ଣ ସାଫଲ୍ୟ ଲାଭ ନିମିତ୍ତ ଅକ୍ରୂର ନିଜର ସମସ୍ତ କୂଟନୈତିକ ବୁଦ୍ଧି ପ୍ରୟୋଗ କରିବାରେ ଯତ୍ନକରି ଶେଷରେ ସାଫଲ୍ୟଲାଭରେ ନିଜକୁ କୃତାର୍ଥ ଜ୍ଞାନ କରିଥିଲେ । କୃଷ୍ଣ ବଳରାମଙ୍କୁ ସେମାନଙ୍କ ପିତାମାତାଙ୍କ ଷଟ୍‌ପୁତ୍ର ବିନାଶ ଓ କଟୁଭର୍ତ୍ସନା ସହିତ ଦୀର୍ଘ କାରାବାସର ସୀମାହୀନ ମାନସିକ ଯନ୍ତ୍ରଣା ସମ୍ବନ୍ଧରେ ଏକାନ୍ତରେ ପ୍ରକାଶ କରି ପିତାମାତାଙ୍କୁ ସେହି ଦୁଃଖ ଦାବାଗ୍ନିରୁ ମୁକ୍ତ କରିବାର କର୍ତ୍ତବ୍ୟବୋଧ ସମ୍ବନ୍ଧରେ ସଚେତନ କରାଇବାବେଳେ, ନନ୍ଦ ଯଶୋଦାଦିଙ୍କୁ ସେ ଧନୁଯାତ୍ରା ଦର୍ଶନ ନିମିତ୍ତ ରାମକୃଷ୍ଣଙ୍କ ସହିତ ଯାତ୍ରାର ନିମନ୍ତ୍ରଣ ଜ୍ଞାପନ କରାନ୍ତି । କିନ୍ତୁ ଗୋପୀ ଗୋପାଳବୃନ୍ଦ ତାଙ୍କର ପ୍ରାଣପ୍ରିୟ ଶ୍ରୀକୃଷ୍ଣଙ୍କୁ ନିଷ୍ଠୁର ଅତ୍ୟାଚାରୀ କଂସାସୁର କବଳକୁ ଠେଲି ଦେବାକୁ ସଂପୂର୍ଣ୍ଣ ନାସ୍ତିବାଣୀ ଶୁଣାଇ ଦେବାରୁ ଅକ୍ରୂର

ସେମାନଙ୍କୁ କଂସର ପ୍ରତାପ ଓ ସମଗ୍ର ଗୋପବାସୀଙ୍କୁ ପରାଭବ ଦେବାର ଭୟ ପ୍ରଦର୍ଶନ କରାଇ କୃଷ୍ଣ ବଳରାମଙ୍କୁ ରଥାସୀନ କରିନେବାର ମାର୍ଗ ପ୍ରଶସ୍ତ କରି ନିଅନ୍ତି । ଅକ୍ରୂର ଆଗମନର ଉଦ୍ଦେଶ୍ୟ ପ୍ରଚାରିତ ହେବା ପରେ ସମଗ୍ର ଗୋପପୁରରେ କ୍ଷଣମାତ୍ର ନିସ୍ତବ୍ଧତା ପରେ ସୃଷ୍ଟି ହୋଇଥିଲା ଯେପରି ଅକାଳ ବଜ୍ରପାତ ସହିତ ପ୍ରଚଣ୍ଡ ଭୂକମ୍ପନ । କଂସ ଉଲ୍ଲୁରୀ ନେଇ ଅକ୍ରୂର ନନ୍ଦ ହସ୍ତରେ ପ୍ରଦାନପୂର୍ବକ ସମସ୍ତ ସନ୍ଦେଶ ପ୍ରକାଶ କରନ୍ତେ, ପୁତ୍ରବତ୍ସଳ ବୃଦ୍ଧ ନନ୍ଦରାଜାଙ୍କ ମନରେ ଯେଉଁ ଭୟଙ୍କର ବିଷାଦର ଝଟିକା ବହିବାକୁ ଆରମ୍ଭ କଲା ତାହା ଭାଷାରେ ପ୍ରକାଶ କରିବାକୁ ଅସମର୍ଥ ମନେକରି କବି କହନ୍ତି;

''କେ କହିବ,
ଶୁଣି ତା ସେ ହୋଇଲେ ଯାହା,
କହିବାକୁ, ବଚନେ ଆସୁନାହିଁ ତାହା ।''

ଅପୁତ୍ରିକ ନନ୍ଦରାଜା ବୃଦ୍ଧକାଳରେ କୃଷ୍ଣଙ୍କୁ ଲାଭକରି ଯେଉଁ ଅପରିମିତ ପରମାନନ୍ଦ ଲାଭରେ କୃତାର୍ଥ ହୋଇ କ୍ଷଣମାତ୍ର ନିଜର ଦୃଷ୍ଟିରୁ ତାଙ୍କୁ ଅନ୍ତର କରିପାରୁ ନଥିଲେ, ଏବେ ନିର୍ଦ୍ଦୟ କଂସାସୁର ପୁରକୁ ଏକାକୀ ତାକୁ ପ୍ରେରଣ କରିଦେବାର କଳ୍ପନାରେ ତାଙ୍କର ପିତୃ ହୃଦୟରେ ଯେଉଁ ଅସହ୍ୟ ଭୀଷଣ ଆଘାତ ଲାଗି ତାଙ୍କୁ ବିଚଳିତ କଲା ତାହାର ବର୍ଣ୍ଣନା କରିବାକୁ କବି ସ୍ୱକୀୟ ବଚନର ଏପରି ସ୍ୱଳ୍ପତା ସ୍ୱୀକାର କରନ୍ତି । କିନ୍ତୁ ଯେତେବେଳେ କୃଷ୍ଣଙ୍କର ମଥୁରା ଗମନର ବାର୍ତ୍ତା ମୁହୂର୍ତ୍ତ ମାତ୍ରକେ ସମଗ୍ର ଗୋକୁଳରେ ବିଦ୍ୟୁତ ବେଗରେ ପ୍ରସାରିତ ହୋଇଗଲା, ସେତେବେଳେ କାମକୁତୁକିନୀ ଗୋପାଙ୍ଗନାମାନଙ୍କ ମଧରେ ସୃଷ୍ଟିହେଲା କ୍ରନ୍ଦନର ମହାରୋଳ । ପ୍ରିୟତମର ସଦ୍ୟ ବିରହଜନିତ ସ୍ୱକୀୟ ଦୁଃସହ ଦୁର୍ଦ୍ଦଶା କଥା ଚିନ୍ତାକରି ନିରନ୍ତର ସେମାନଙ୍କ ନୟନରେ ସୃଷ୍ଟିହେଲା ଅଶ୍ରୁର ଦୁର୍ବାର ବନ୍ୟା, ମୁକ୍ତ କଣ୍ଠରେ ଉଚ୍ଚବିଳାପଧ୍ୱନି, କବିଙ୍କ ଭାଷାରେ;

''କେ କରେ ମହାଶୋକ କେ ହୋଏ ଦକଦକ
କେ ଦୀର୍ଘେ ଛାଡ଼ଇ ନିଃଶ୍ୱାସ,
କେ ଘନରତୁ ପିକ ପ୍ରାୟେ ହୋଇଲେ ମୂକ
କେ ବୋଲେ ଛାଡ଼ି ପ୍ରାଣ ଆଶ ସେ, କେ ବୋଲଇ,
କୃଷ୍ଣ ସଂଗତେ ଆମ୍ଭେଯିବା,
ପାଇବା ପାଇଁ କଉଁ ସୁଖ, ଗୋପେ ଥିବା ଗୋ ।''

ସମଗ୍ର କୃଷ୍ଣ କଥା ହେଉଛି ବିସ୍ମୟ, ଅଦ୍ଭୁତ ଓ ଅଲୌକିକତାରେ ପରିପୂର୍ଣ୍ଣ ଉତ୍କଣ୍ଠା ବହୁଳ ଅସୀମ ରହସ୍ୟାଚ୍ଛନ୍ନ ଗାଥା । ପ୍ରତ୍ୟେକଟି ପର୍ଯ୍ୟାୟରେ ରହିଛି ନାଟକୀୟ

ବିସ୍ମୟ ଓ ଚମତ୍କାରମାନଙ୍କର ସମାବେଶ । ମୃତ୍ୟୁ ସମ୍ବନ୍ଧରେ ଭବିଷ୍ୟବାଣୀ ଶ୍ରବଣରେ ବିଭୀତ ଅତ୍ୟାଚାରୀ କଂସ ଆପଣାର ଜୀବନକୁ ପ୍ରତିମୁହୂର୍ତ୍ତରେ ସଂକଟାପନ୍ନ ଓ ମୃତ୍ୟୁ ଛାୟାରେ ବେଷ୍ଟିତ ଜ୍ଞାନ କରି କୃଷ୍ଣ ନିଧନର ସକଳ ଚେଷ୍ଟାରେ ବିଫଳ ହେବାରୁ ମନରେ ତା'ର ଯେତେବେଳେ ଆସନ୍ନ ମରଣର ଭୟ ସର୍ବାଧିକ ଘନୀଭୂତ ହୋଇ ଉଠିଲା, ଧନୁଯାତ୍ରା ଉତ୍ସବ ଦର୍ଶନ ନିମିତ୍ତ କୃଷ୍ଣ ବଳରାମଙ୍କୁ ଆମନ୍ତ୍ରଣ କରି ହତ୍ୟାକରିବାର ସକଳ ଉପାୟ ବ୍ୟର୍ଥ ହେବାରୁ ସେତେବେଳେ ଏକ ବିସ୍ତୃତ ଷଡ଼ଯନ୍ତ୍ର ଆପଣାର ମିତ୍ରମାନଙ୍କ ସାହାଯ୍ୟରେ ପ୍ରସ୍ତୁତ କରିଥିଲା । ସେହି ଷଡ଼ଯନ୍ତ୍ରର ଅନ୍ତିମ ପର୍ଯ୍ୟାୟ ରୂପେ କୃଷ୍ଣ ବଳରାମଙ୍କୁ ମଥୁରା ରାଜସଭାକୁ ଆନୀତ କରି ତାଙ୍କୁ ହତ୍ୟାକରିବାର ପ୍ରୟାସରେ ସାଫଲ୍ୟ ଲାଭ ନିମିତ୍ତ ସେ ମନ୍ତ୍ରୀ ଅକ୍ରୂର ଠାରେ ହିଁ ନିର୍ଭୟରେ ଦାୟିତ୍ୱ ନ୍ୟସ୍ତ କରିଥିଲେ । ଗୋକୁଳରେ ବାତ୍ସଲ୍ୟ ଓ ଶୃଙ୍ଗାର ଭାବ ଜନିତ ହର୍ଷୋଲ୍ଲାସ ପଲ୍ଲବିତ ଓ ପୃଥୁଳ ହୋଇ ଉଠୁଥିବା ବେଳେ କୃଷ୍ଣବଳରାମଙ୍କର ଜୀବନର ଆକସ୍ମିକ ଅନିଶ୍ଚୟତା, ମୃତ୍ୟୁର ଆଶଙ୍କା ଓ ବିଭୀଷିକା ପ୍ରତି କ୍ଷଣରେ ହୋଇ ଉଠୁଥିଲା କ୍ରମିକ ଭାବେ ନିବିଡ଼ତର ଓ ଘନୀଭୂତ । ଅବଶେଷରେ କୃଷ୍ଣ ବଳରାମଙ୍କୁ ସଂହାର କରି ନିଶ୍ଚିତ ମୃତ୍ୟୁ କବଳରୁ ତ୍ରାହି ପାଇବାର କ୍ଷୀଣ ଆଶାଟି ଏହି ଷଡ଼ଯନ୍ତ୍ର ମାଧମରେ ପଲ୍ଲବିତ ହୋଇଉଠି ଅକ୍ରୂରକୁ ଗୋପପୁରରେ ଉପନୀତ କରାଇ ପାରିଲା । ଅକ୍ରୂରର ଏହି ଅପ୍ରତ୍ୟାଶିତ ଆଗମନ କିନ୍ତୁ ଗୋକୁଳର ସମସ୍ତ ସୁଖ ସମ୍ଭୋଗର କୋଳାହଳପୂର୍ଣ୍ଣ ମହୋତ୍ସବକୁ ମୁହୂର୍ତ୍ତ ମାତ୍ରକେ କରିଦେଲା ଧ୍ୱସ୍ତବିଧ୍ୱସ୍ତ । ତେଣୁ ବର୍ଷ ବର୍ଷ ବ୍ୟାପୀ ନିରନ୍ତର ଆନନ୍ଦ ମହୋତ୍ସବର ହେଲା ମୁହୂର୍ତ୍ତ ମାତ୍ରକେ କ୍ରନ୍ଦନର ହାହାକାରପୂର୍ଣ୍ଣ କୋଳାହଳରେ ରୂପାନ୍ତରିତ । ଗୋକୁଳର ଏହି ଶୋକାକୁଳିତ ଅବସ୍ଥାର ସଂପୂର୍ଣ୍ଣ ଚିତ୍ର ଦେବାକୁ କବି ନିଜର ଅସାମର୍ଥ୍ୟ ପ୍ରକାଶ କରିଥିବା ସତ୍ତ୍ୱେ ଦୀର୍ଘ ତିନିଗୋଟି ଛାନ୍ଦ ମଧ୍ୟରେ କୃଷ୍ଣପ୍ରିୟା ଗୋପାଙ୍ଗନାମାନଙ୍କର କାରୁଣ୍ୟ ବିଦୀର୍ଣ୍ଣ ମାନସିକ ସ୍ଥିତିର ରୂପାୟନ କରିବାରେ ପ୍ରୟାସ କରିଛନ୍ତି । ମଥୁରାଯାତ୍ରା ଉଦ୍ୟମରୁ ନିବୃତ୍ତ ହେବା ନିମିତ୍ତ ଗୋପୀମାନଙ୍କର ସକଳ ଆକୁଳ ଆବେଦନକୁ ଶ୍ରୀକୃଷ୍ଣ ବହୁ ପ୍ରବୋଧନା, ଆଶ୍ୱାସନା ଓ ଚାଟୁବାଣୀରେ ଆଶୁ ପ୍ରତ୍ୟାବର୍ତ୍ତନର ଦୃଢ଼ ପ୍ରତିଶ୍ରୁତି ଦ୍ୱାରା ନିରସ୍ତ କରାଇ ସେମାନଙ୍କ ଠାରୁ ମେଲାଣି ନେବାର ଦୃଶ୍ୟଟି ଦୀନକୃଷ୍ଣଙ୍କ ସମ୍ବେଦନଶୀଳ ସରାଗ କବି ମାନସରେ ଚମତ୍କାର ବାସ୍ତବ ରୂପ୍ ଲାଭକରିଛି, ଯାହାକୁ ଅଭିବ୍ୟକ୍ତ କରି ତାଙ୍କର କଳ୍ପିତ ଏହି କୃଷ୍ଣ କହନ୍ତି;

''କରି ମନ ପୂରୁଣା କର ଏବେ କରୁଣା
ଅନାଅ ସରାଗ ନୟନେ,
କରଧରି ଯେତେ ହେଁ କହୁଅଛି ସେନେହେ
ଅବଶ୍ୟ ପଡୁଥିବ ମନେ ଗୋ, ଗୋପୀମାନେ,

କଲୁ ଗମନ ପିଠିଆଇଁ,
କର ଯେ ଯାହା କର୍ମ ଯାଇ,
କନକ ମହୀଧର　　　　　　　କମଳନାଥଙ୍କର
ପ୍ରାୟେ ତୁମ୍ଭଙ୍କୁ ମନେଦେଇ ଗୋ, ।।
କପଟ ଚାଟୁ ହରି　　　　　　ଏମନ୍ତ କହି କରି
ଯେତେବେଳେ ବାହାର ହେଲେ,
କନ୍ୟାଖମ୍ଭ ପରାୟେ　　　　　ହୋଇ ସବୁ ଗୋପିଏ
ଅପଲକରେ ଚାହୁଁଥିଲେ, ସେ କୃଶୋଦରୀ,
ଅଦୃଶ୍ୟ ହେଲା ମାତ୍ରେରଥ,
କପାଳରେ ମାରିଲେ ହାଥ,
କେ ବୋଲେ ଆହୋନାଥ　　　　କରିଗଲ ଅନାଥ
ହରି ସକଳ ମନୋରଥ ସେ ।

ବିସ୍ତାରିତ ବର୍ଣ୍ଣନାର ସମ୍ଭାବନା ଥିବା ସତ୍ତ୍ୱେ ଆପଣା କାବ୍ୟର ପ୍ରଧାନ ଉଦ୍ଦେଶ୍ୟକୁ ସମ୍ମୁଖରେ ରଖି ମଥୁରାରେ ଧନୁଭଞ୍ଜନ କୁବଳୟ ହସ୍ତୀ ସହିତ ମାହୁନ୍ତ ମାରଣ, ଚାଣୁର ମୁଷ୍ଟିକାଦି ମଲ୍ଲମାନଙ୍କୁ ନିଧନ ଓ କଂସ ସଂହାରର ସଂକ୍ଷିପ୍ତ ସୁଠାମ ସଂଗତ ବର୍ଣ୍ଣନା ଅପେକ୍ଷା ଶ୍ରୀକୃଷ୍ଣଙ୍କ ରୂପ ମାଧୁର୍ଯ୍ୟ ଦର୍ଶନରେ ମଥୁରାର ନରନାରୀମାନଙ୍କର ମାନସିକ ବିକ୍ରିୟା ଚିତ୍ରଣ ସହିତ କୁବୁଜାର ଅନିନ୍ଦ୍ୟ ରୂପ ଲାବଣ୍ୟ ଲାଭ ଓ କୃଷ୍ଣାନୁରାଗର ବର୍ଣ୍ଣନାରେ କବି ଉତ୍ସାହିତ ହୋଇଉଠିଛନ୍ତି । କଂସ ସଂହାର ପରେ ଉଗ୍ରସେନକୁ ମଥୁରାଧିପତି ପଦରେ ଅଭିଷିକ୍ତ କରିସାରିବା ପରେ ଦାୟିତ୍ୱ ଝଂଝାଳରୁ ଅବ୍ୟାହତି ପାଇବା ମାତ୍ରେ କୃଷ୍ଣ ଚିତ୍ତରେ ଉଦ୍ଭାସିତ ହେଲା ଗୋକୁଳରୁ ବିଦାୟକାଳୀନ ପ୍ରିୟତମା ପ୍ରଣୟିନୀମାନଙ୍କର ବିରହାକୁଳିତ ଦୃଶ୍ୟାଦିର ସଦ୍ୟ ସ୍ମୃତି । ଅସ୍ଥିର ଚିତ୍ତରେ ସୁଦାମ ସୁବଳାଦି ସଖାଙ୍କୁ ପ୍ରବୋଧନ ଦେଇ ଗୋପ ପ୍ରେରଣ କଲାବେଳେ କୃଷ୍ଣ ବଳରାମଙ୍କ ଗହଣରେ ଗୋକୁଳ ଫେରିବାର ଦୃଢ଼ ଆଶା ବହନ କରି ଅପେକ୍ଷମାଣ ଥିବା ଏହି ସଖାଗଣ ହତାଶାରେ ହେଲେ ମ୍ରିୟମାଣ ଓ କ୍ରନ୍ଦନ ଜର୍ଜରିତ । ଶ୍ରୀକୃଷ୍ଣର ଏହି କଠୋର ନିର୍ମମ ଆଚରଣ ଦେଖି, ଅନନ୍ୟୋପାୟ ଏହି ନିଷ୍କପଟ ଗୋପ ସଖାମାନଙ୍କର କୋହ ଓ ମାନସିକ କଷଣ ହୋଇଉଠିଛି ଦୁର୍ବିସହ ।

''କ୍ରୋଧେ କଉଁ ସଖା ବୋଲେ, ହେ ପଦ୍ମତୋଳା
କାଟିଦେଲୁ ଏକାବେଳେ ସବୁରିଗଳା,
କଉଁବଳେ ପ୍ରାଣ ଅଛି ନଜାଣୁ ତାହା,
କୁଣ କେତୁ ହଟ ଅବା କରିଛି ଏହା ।

x　　　　x　　　　x

କଷ୍ଟ କଷ୍ଟ ହୋଇ ଗୋପପୁରକୁ ଗଲେ,
କଂସ ତମ ହଂସ ମଧୁପୁରେ ରହିଲେ ।''

କୁବୁଜାର ମନୋବାଂଛା ପୂର୍ଣ୍ଣ କରିବା ପରେ ଶ୍ରୀକୃଷ୍ଣଙ୍କ ଚିତ୍ତକୁ ଦଂଶନ କରେ ଗୋପବାସୀଙ୍କ ପ୍ରତି କରିଥିବା ସ୍ୱକୃତ ଅନ୍ୟାୟ ଓ ନିଷ୍ଠୁର ଆଚରଣର ବିକଟ କୃଷ୍ଣସର୍ପ; କୁଳଶୀଳ ମର୍ଯ୍ୟାଦା ଲଂଘନ କରି କାୟମନୋବାକ୍ୟରେ ନିଜ ନିଜକୁ ଜାର ଭାବରେ ତାଙ୍କ ଠାରେ ଅର୍ପଣ କିରଥିବା ସେହି ପ୍ରଣୟିନୀମାନଙ୍କର ସହସ୍ର ସ୍ମୃତି, ସେମାନଙ୍କର ରୂପ ଗୁଣ ଓ ବେଶଭୂଷାଦି ସହିତ ଅନୁରାଗ, ହାସ୍ୟ ପରିହାସ, ଶୃଙ୍ଗାର ଚେଷ୍ଟାଦି ସହିତ ମିଳନ କାଳୀନ ସୁମଧୁର ସ୍ମୃତିମାନଙ୍କର ସ୍ୱତଃ ଉଦ୍ଭାସ କୃଷ୍ଣଙ୍କ ଅନ୍ତରରେ ସୃଷ୍ଟିକଲା ବିଷମ ବିରହର ପ୍ରବଳ ପ୍ରକମ୍ପନ । ଅନୁରୂପ ବିରହ ଯନ୍ତ୍ରଣାରେ ମଧ କୃଷ୍ଣ ମନୋହାରିଣୀ ଗୋପାଙ୍ଗନାମାନଙ୍କ ସହିତ ଶ୍ରୀରାଧା ହେଲେ ଗୋକୁଳରେ ମର୍ମାହତା । କୃଷ୍ଣ ଗୋପିକାମାନଙ୍କ ମଧରେ ସୃଷ୍ଟି ହୋଇଥିବା ବିଚ୍ଛେଦର ଏହି ଦୁସ୍ତର ତରଙ୍ଗିଣୀ ଶ୍ରୀକୃଷ୍ଣଙ୍କ ଦ୍ୱାରା ହିଁ ଘଟଣା ପ୍ରବାହର କର୍ତ୍ତବ୍ୟାନୁରୋଧରେ ସ୍ୱକୃତ ବା ସ୍ୱସୃଷ୍ଟ । ତେଣୁ ବିରହିଣୀ ଗୋପିକାମାନଙ୍କର ଦୁଃସାଧ ପ୍ରଣୟ କୀର୍ତ୍ତିର ଏହି ଦୁରନ୍ତ ପରିଣତି ପାଇଁ ଶ୍ରୀକୃଷ୍ଣ ହିଁ ଯେ ସ୍ୱୟଂ ଦାୟୀ, ତାହା ସେ ଅନ୍ତରରେ ଅନୁଭବ କରି କିଂକର୍ତ୍ତବ୍ୟବିମୂଢ଼ ଓ ସନ୍ତପ୍ତ ହୃଦୟରେ ଉଦ୍ଧବଙ୍କୁ ଗୋକୁଳ ପ୍ରେରଣ କରି ସେମାନଙ୍କର ଶୋକ ସନ୍ତାପ ହରଣ କରିବାର ଅନ୍ତିମ ପ୍ରୟାସର ଘଟଣା ପର୍ଯ୍ୟାୟମାନ ଏହି ପ୍ରଣୟଗାଥାର କାରୁଣ୍ୟକୁ ନିବିଡ଼ ଓ ଘନୀଭୂତ କରାଇ ଦେବାକୁ ସର୍ବତୋଭାବେ ହୋଇଛି ସହାୟକ ଓ ଅନୁକୂଳ ସାମଗ୍ରୀ । କୃଷ୍ଣ କଥାର ଏହି ବିଭାବଟି ଅସଂଖ୍ୟ କବି-କଳାକାର ଓ ଶିଳ୍ପୀ ଚିତ୍ତରେ ସଂଚାର କରି ଆସିଛି ଆସ୍ତରଣହୀନ ଆବେଗ, ଆଲୋଡ଼ନ । ଏହି ଆବେଗର ଗଭୀରତା ହିଁ ସେମାନଙ୍କୁ ସ୍ୱ ସ୍ୱ କଳାକର୍ମରେ ତା'ର ବାସ୍ତବ ରୂପାୟନ ପାଇଁ କରିଛି ଅନୁପ୍ରେରିତ । କବି କୃଷ୍ଣଦାସଙ୍କ ଚିତ୍ତଗହନରେ ଏହିସଂବେଦନର ଆବେଗସାନ୍ଦ୍ରତା ତାଙ୍କର ଏହି କାବ୍ୟର ପରିବେଶକୁ କରିଛି ଅନବଦ୍ୟ ଭାବସୌନ୍ଦର୍ଯ୍ୟରେ ସୁଶୋଭିତ । ମାଧୁର୍ଯ୍ୟ ରସସୃଷ୍ଟିରେ ସହାୟକ ଉଦ୍ଦୀପନ ବିଭାବ ଭାବରେ ଋତୁଚିତ୍ରମାନଙ୍କର ଉପସ୍ଥାପନା ତଥା ରାସମହୋତ୍ସବର ସମ୍ଭୋଗ ଶୃଙ୍ଗାରରେ ଗୀତନୃତ୍ୟ, ବିଲୁଣ୍ଠନ, କ୍ରୋଶନ (ଚିତ୍କାର) ଗାତ୍ରମୋଟନ, ହୁଙ୍କାର, ଜୃମ୍ଭଣ, ଦୀର୍ଘଶ୍ୱାସ, ଲାଳସ୍ରାବ, ଅଟ୍ଟହାସ୍ୟ, ଘୂର୍ଣ୍ଣନ, ହିକ୍କା, ସ୍ମିତହାସ, ପ୍ରଭୃତି ବିବିଧ ସାତ୍ତ୍ୱିକ ବିକାରମାନଙ୍କର ରୂପାୟନ ଯେପରି କରିଥିଲେ ଦୀନକୃଷ୍ଣ, ଏବେ ବିଚ୍ଛେଦକାଳୀନ, ବିପ୍ରଲମ୍ଭକାଳୀନ ସାତ୍ତ୍ୱିକମାନଙ୍କର ପ୍ରକାଶାଭିବ୍ୟକ୍ତି ଲାଭ କରନ୍ତି ତଦପେକ୍ଷା ଅଧିକ ଦୀପ୍ତିମନ୍ତ ସୌନ୍ଦର୍ଯ୍ୟ । ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ସ୍ୱରଭଙ୍ଗ, ବେପଥୁ, ବୈବର୍ଣ୍ଣ୍ୟ, ଅଶ୍ରୁ ଓ ବିଳାପାଦିମାନଙ୍କର ମନୋଜ୍ଞ ରୂପାୟନ କୌଶଳରେ ନିହିତ ରହିଛି ଦୀନକୃଷ୍ଣଙ୍କ ସ୍ୱକୀୟ ପ୍ରତିଭାର ବିକଚ ବିଭା । ମଥୁରାରେ ଏକାନ୍ତ ବିମର୍ଷ ମାନସ ଶ୍ରୀକୃଷ୍ଣ ପ୍ରାଣପ୍ରିୟା

ରାଧାଦି ଗୋପାଙ୍ଗନାମାନଙ୍କର ରୂପଗୁଣାଦିର ସ୍ମରଣ ସହିତ ସେମାନଙ୍କ ସହିତ ଅଭିସାର, କଟାକ୍ଷ, ଚୁମ୍ବନ, ଆଶ୍ଳେଷ, ଓ କୁଟ୍ଟମିତାଦି ବିବିଧ ସମ୍ଭୋଗ ବିଳାସମାନ ବାରମ୍ବାର ଝୁରିହୋଇ ଅବାରିତ ଅଶ୍ରୁଧାରାରେ କ୍ଷୀଣକାନ୍ତି ହେଲେ । ଗୋକୁଳରେ ଶ୍ରୀରାଧାର ଦୁର୍ବିସହ ବିରହାବସ୍ଥାରେ ତା'ର ସମଦୁଃଖିନୀ ସଖୀମାନଙ୍କର ବ୍ୟଗ୍ରବ୍ୟାକୁଳ ବିବିଧ ଚେଷ୍ଟା ସ୍ମରଣ କରି କୃଷ୍ଣ କହନ୍ତି;

''କେ ଉଶୀର ଖୋଳୁଥିବ, କେ ପଲ୍ଲବ ତୋଳୁଥିବ
କେ ଚନ୍ଦନ ବୋଳୁଥିବ ନେଇ,
କେ ଆଳଟ ବିଞ୍ଚୁଥିବ, କେ ପନୀର ସିଞ୍ଚୁଥିବ
ଶ୍ୱାସ ମୁଞ୍ଚୁଥିବ ଥାଇଁ ଥାଇଁ, ସେ କଉଁସଖୀ,
ଡାକୁଥିବ ଶିବ ରକ୍ଷାକର,
କୋଳାହଳ, ନାଦେ ପୂରିଥିବ ପୁର ସେ ।'' ଇତ୍ୟାଦି

ପ୍ରଣୟିନୀ କୁଳର ଏହି ଅବସ୍ଥା ସ୍ମରଣରେ ବିରହ ବିଧୂର ଭାବଗ୍ରାହୀ କୃଷ୍ଣ ଅବିଳମ୍ବେ ସେମାନଙ୍କୁ ଆଶ୍ୱାସନା ଦେବା ନିମିତ୍ତ ପ୍ରେରଣ କରନ୍ତି ନିଜର ଆତ୍ମୀୟ ପ୍ରିୟ ସଖା ପ୍ରତ୍ୟୁତ୍ପନ୍ନ ମତି, ନୀତିକୁଶଳ ଯଦୁସେନାପତି ଉଦ୍ଧବଙ୍କୁ ।

ଭାଗବତ ବର୍ଣ୍ଣିତ ଉଦ୍ଧବ ଗୋପଯାତ୍ରା ଓ ପ୍ରବେଶ ସମ୍ବନ୍ଧୀୟ ବିସ୍ତାରିତ ମାର୍ମିକ ବିବରଣୀ ନନ୍ଦ ଯଶୋଦାଙ୍କ ସହିତ ବାର୍ତ୍ତାଳାପ, ରାତ୍ରିଯାପନ ଓ ଦୀର୍ଘ ଦଶ ମାସ ଅବସ୍ଥାନ ମଧ୍ୟରେ ଗୋପାଙ୍ଗନାମାନଙ୍କର ଦୁଃଖ ଦର୍ଶନ ଓ ସେମାନଙ୍କ ଚିତ୍ତରୁ ମନ୍ଥର ପ୍ରୟାସରେ ଆଂଶିକ ଶୋକାପନୋଦନ ପ୍ରଭୃତି ମଧ୍ୟରୁ କେବଳ କାବ୍ୟାଭିମୁଖୀ ଅଂଶମାନଙ୍କୁ ଉପଯୋଗ କରନ୍ତି କବି କୃଷ୍ଣଦାସ । ଚରମ ନିର୍ଦ୍ଦୟ ମହାପରାକ୍ରମଶାଳୀ କଂସର ବିବିଧ ଷଡ଼ଯନ୍ତ୍ରମାନଙ୍କୁ ପ୍ରତିହତ କରି ରକ୍ଷାପାଇ ଆସୁଥିବା କିଶୋର କୃଷ୍ଣଙ୍କ ପାଇଁ କେବଳ ତାଙ୍କର ଭାଗ୍ୟର ଶକ୍ତିଶାଳିତା ଓ ଦୈବର ଶୁଭ ଅନୁକମ୍ପା ବୋଲି ବିଶ୍ୱାସ କରି ଆସିଥିବା ପ୍ରଣୟିନୀ ଗୋପିକାଗଣ ନିଜ ନିଜକୁ ମଧ ସୌଭାଗ୍ୟଶାଳିନୀ ଜ୍ଞାନ କରିଆସୁଥିବା ବେଳେ ସେମାନଙ୍କର ପ୍ରେମାସ୍ପଦ ଏହି ସୁକୁମାର ଶ୍ରୀକୃଷ୍ଣଙ୍କ ପ୍ରତି ପ୍ରଣୟ ନିଷ୍ଠାର ପ୍ରଗାଢ଼ତା ହେଉଥିଲା ଦିନୁଁ ଦିନୁଁ କ୍ରମବର୍ଦ୍ଧିତ । କାଳୀନ୍ଦୀ ହ୍ରଦରୁ ଶତେଭାର ପଦ୍ମ ପ୍ରେରଣ ପାଇଁ କଂସର ନିର୍ବିରୋଧ ଆଦେଶ ହେତୁ କାଳିନ୍ଦୀରେ ପଦ୍ମତୋଳିବା ବେଳେ କାଳୀ ଦଂଶନରୁ କୃଷ୍ଣଙ୍କ ମୁକ୍ତିଲାଭ ଦେଖି ଶଙ୍କାକୁଳିତା ଗୋପୀମାନଙ୍କର ଚିତ୍ତଚାଞ୍ଚଲ୍ୟର ଚିତ୍ରଟିଏ ଦେଇ ଦୀନକୃଷ୍ଣ ଲେଖିଛନ୍ତି;

''କେ ବୋଲଇ ବିହି କି କରୁଥିଲା ମୋ କଣ୍ଠ ମରକତ ମାଳିକି,
କେ ବୋଲଇ ମୋତେ ଅନ୍ଧକରି ନେଉଥିଲା କେ ନେତ୍ର ପିତୁଳିକି,
କଉଁ ଗୋପିକା, ବୋଲେ ସେବିଥାଇଁ କାଳୀକି,

କୃପା କଟାକ୍ଷୀ କୃପାରେ ସିନା ଦେଇଅଛନ୍ତି ସୁଖଶଙ୍ଖାଳିକି ।
କେ ବୋଲଇ ପ୍ରତେ ନାହିଁ ତ ଦେଖିବାଯାଏ ମକରକୁଣ୍ଡଳିକି,
କେ ବୋଲଇ ତାଙ୍କଠାରେ ଏହି କଥା ଛାର କାହିଁ ପାଇଁ ଭାଳିକି,
କଉଁ କଥାଏ, କେତେ କେତେ କଥା ଗଲାନି,
କଅଁଳା ପୁଅ ଦିନରୁ ଆମ୍ଭ କାହ୍ନୁ କଉଁ ବିଚିତ୍ର ନ କଲାନି ?''

ମନରେ ବିବିଧ ଅମଙ୍ଗଳ ଆଶଙ୍କା ଓ ମଙ୍ଗଳ ଆଶା ଓ ଆଶ୍ୱାସନାର ଲୁଚକାଳି ଖେଳ ଭିତରେ ଆପଣାର ପ୍ରିୟ ପ୍ରେମାସ୍ପଦ ପ୍ରତି ସେମାନଙ୍କ ଚିତ୍ତ ଗହନରେ ଅଜ୍ଞାତସାରରେ କେବଳ କ୍ରମ ପଲ୍ଲବିତ ଓ ବର୍ଦ୍ଧିଷ୍ଣୁ ହୋଇ ଆସିଥିଲା ନିଜ ନିଜର ସଯତ୍ନ ପୋଷିତ ସୁମଧୁର ଅନୁରାଗ ନିଷ୍ଠା । ତେଣୁ ଗୋପାଙ୍ଗନାଙ୍କ ଚିତ୍ତରେ ଶ୍ରୀକୃଷ୍ଣ ପ୍ରୀତିର ପ୍ରଗାଢ଼ତା ପାଇଁ କଂସ ରାଜାଙ୍କର ସକଳ ଷଡ଼ଯନ୍ତ୍ର ମଧ୍ୟ ସତେ ଯେପରି ଗତାନୁଗତିକ ଧାରାରେ ପରୋକ୍ଷ ଆଶୀଷ ବୋଲି ବିଚାର କରାଯାଇଥାଏ । ଏହି ପ୍ରୀତି ପ୍ରଗାଢ଼ତା ହଠାତ୍ କ୍ଷିପ୍ରତର ହୋଇଉଠିଲା ଯେତେବେଳେ କୃଷ୍ଣଙ୍କୁ ଗୋପପୁରରୁ ବିଛିନ୍ନ କରିନେବା ପାଇଁ କଂସରାଜାଙ୍କର ସେହି ନିଷ୍ଠୁର ଆଦେଶ ହେଲା ପ୍ରଚାରିତ । ନିର୍ମମ ନିଷ୍ଠୁର ଭୟଙ୍କର ରାକ୍ଷସ କଂସ କବଳକୁ ଗୋପ ଗୋପୀମାନଙ୍କର ଏହି ପ୍ରାଣପ୍ରିୟ ସୁକୁମାର କିଶୋରଚନ୍ଦ୍ରଙ୍କୁ ସଜ୍ଞାନ ଭାବରେ ଠେଲି ଦେବାର କଳ୍ପନା କରି ନପାରି ଅନନ୍ୟୋପାୟ ଏହି ଶାନ୍ତ ସରଳ ଗୋପାଳ ପଲ୍ଲୀଟି ହୋଇ ଉଠିଥିଲା ଆର୍ତ୍ତବିଳାପରେ କୋଳାହଳ ମୁଖରିତ । କୋଳାହଳର ଏହି ଐକତାନିକ ସ୍ୱରରେ ପ୍ରତ୍ୟକ୍ଷ ଯୋଗଦେଇ ସ୍ୱୟଂ କବି କହନ୍ତି;

କୃଷ୍ଣଦାସ ମାନସ ହୋଏ ଅତି ବିରସ
ହରଷ କେତେବେଳେ ହୋଏ,
କିଶୋରୀ ଗୋପିଙ୍କର କଂସ ଦୁଷ୍ଟ ପାମର
କଥା ମନରେ ଚିନ୍ତିବାୟେ ସେ, କି ନିଷ୍ଠୁର
ପ୍ରଭୁମାନଙ୍କର ହୃଦୟ,
କରିଥିଲେ କେତେ ପ୍ରକାର, ସେ ଅଭୟ,
କହୁଁ କହୁଁ ସେ ଏବେ ମଧୁପୁରକୁ ଯିବେ
ପ୍ରୀତିଠାରେ କରି ନିର୍ଦ୍ଦୟ ।

ଯେଉଁ ପ୍ରେମାସ୍ପଦର ଅଖିଳ ଚିତ୍ତାକର୍ଷକ-ଲୋଭନୀୟ ରୂପଶ୍ରୀକୁ ନିମିଷ ମାତ୍ର ଦୃଷ୍ଟି ଅନ୍ତରାଳକୁ ଛାଡ଼ି ନ ଦେବାକୁ ଗୋପାଙ୍ଗନାମାନେ ସତତ ଯତ୍ନଶୀଳ ସେ ଏକ ଅନିଶ୍ଚିତ ଅବଧି ହେବେ ମଥୁରାରେ କଂସାସୁରର କବଳିତ । ଏହି ଅନିଶ୍ଚିନ୍ତକାଳର ବିଚ୍ଛେଦ ଜନିତ ଯନ୍ତ୍ରଣା ସେମାନଙ୍କୁ ଯେତିକି ଶୋକାକୁଳିତ କରିଦେଇଥିଲା ତଦପେକ୍ଷା

ଅଧିକ ଶଂକିତ କରିଥିଲା କଂସ କବଳରେ ସେହି ପ୍ରେମାସ୍ପଦର ଅନିର୍ଣ୍ଣିତ ପରିଣତି । ଏକ କ୍ଷୁଧିତ ହିଂସ୍ର ପଶୁର ମୁଖ ଗହ୍ୱର ମଧ୍ୟକୁ ଠେଲି ଦେବା ପରି ଦୁଷ୍ଟ ପାମର କଂସ କବଳକୁ ଶ୍ରୀକୃଷ୍ଣଙ୍କୁ ଠେଲି ଦେବା ଦ୍ୱାରା କୃଷ୍ଣଙ୍କର ଭବିଷ୍ୟତ ଯେ ଘୋର ସଂକଟାପନ୍ନ ବା ନିଶ୍ଚିତ ମୃତ୍ୟୁର ହେବ କବଳିତ ଏପରି ପରିଣତି କଳ୍ପନା କରି ସେମାନଙ୍କର ଶୋକ ସଂବିଗ୍ନତା ଶତଗୁଣିତ ହେବା ସ୍ୱାଭାବିକ । ତେଣୁ କଂସର ଏହି ନିର୍ମମ ହତ୍ୟାଭୟ ବିଷୟ ଗୋପିକାମାନଙ୍କ କ୍ରନ୍ଦନର ପ୍ରତି ସ୍ତରରେ ଉଙ୍କିମାରି ସେହି କ୍ରନ୍ଦନ ସ୍ୱରକୁ କରିଛି ଅଧିକ ତୀବ୍ର ଓ କରୁଣ । ଏକ ସମୟରେ ଏହି ଦୁଇଟି କଷଣକୁ ବାରମ୍ବାର ସୂଚିତ କରାଇ କବି କହିଛନ୍ତି,

''କଷ୍ଟୁ ତରିବା ପାଇଁ          ପ୍ରୀତି ବୋଇତ ନେଇ
        ତୁମ୍ଭ ସଙ୍ଗ-ସିନ୍ଧୁରେ ମେଳି,
କୁଳଶୀଳ ବେଭାର          ସବୁ ଏକ ପ୍ରକାର
        ଅମ୍ବର କରିଣ ଅଞ୍ଜଳି । ହେ କୃପାନିଧି !
        କେତେ କାଳ ବାଣିଜ୍ୟ କଲୁଁ
        କେତେ ସୁଖରେ ଦିନ ନେଲୁ ।
କଂସ ଦୂତବତାସ          କଲାତ ଏବେ ନାଶ
        ଦେଖୁଁ ଦେଖୁଁ ଦୁଃଖକୁ ଗଲୁ । ହେ କୃପାନିଧି !

କଂସକୁ ସମ୍ପୂର୍ଣ୍ଣ ବିରୋଧ ପ୍ରୟାସରେ ବ୍ୟର୍ଥତା ଓ ପରାଜୟର ଗ୍ଳାନିରେ ଓ ବିଷାଦର ଘନାନ୍ଧକାର ମଧ୍ୟରେ ଅନନ୍ୟୋପାୟା ଓ ଅସହାୟା ହୋଇ କାଳାତିପାତ କରିବା ବ୍ୟତୀତ ସେମାନଙ୍କର ଉପାୟାନ୍ତର ନଥିଲା ।



**ସପ୍ତମ ପରିଚ୍ଛେଦ**

# କାରୁଣ୍ୟ-ଲାଞ୍ଛିତ ଶୃଙ୍ଗାର ରସର ଅନ୍ତିମ ରାଗ

କୃଷ୍ଣଦୂତ ଉଦ୍ଧବ ଗୋକୁଳରେ କୃଷ୍ଣ-କୁଶଳ ସଂବାଦ ଦେବା ପୂର୍ବରୁ ଗୋପୀମାନେ କଂସଦୂତ ଅକ୍ରୂରର କୁକର୍ମଜନିତ ପରିଣତି ସମ୍ବନ୍ଧରେ ପ୍ରଥମେ ତାଙ୍କୁ ପ୍ରଶ୍ନ କଲେ । ଅକ୍ରୂର ମାଧ୍ୟମରେ ନିଷ୍ଠୁର ରାଜାଦେଶ ଜାରିକରି କୃଷ୍ଣଙ୍କୁ ଗୋକୁଳରୁ ବିଚ୍ଛିନ୍ନ କରିନେବା ତୁଲ୍ୟ ଅପକର୍ମର ପରିଣତି ସ୍ୱରୂପ କଂସ ଲଭିଲା ମୃତ୍ୟୁଦଣ୍ଡ । କିନ୍ତୁ ସେହି ଆଦେଶକୁ କାର୍ଯ୍ୟକାରୀ କରିଥିବା ଅନ୍ୟତମ ନିଷ୍ଠୁର ଅକ୍ରୂରର ପରିଣତି-ପରାଭବକୁ ଜାଣିବାକୁ ଦୀନକୃଷ୍ଣଙ୍କର ଗୋପୀମାନେ ଉଦ୍ଧବକୁ ବାରମ୍ବାର ଜିଜ୍ଞାସା କରି ତାଙ୍କୁ ବିଚଳିତ କରିଦେଲେ ।

କଂସର ସକଳ ଷଡ଼ଯନ୍ତ୍ରକୁ ପଣ୍ଡକରି କଂସ ସଂହାର କରିଥିବା କୃଷ୍ଣର କୁଶଳ ପ୍ରତ୍ୟାଗମନକୁ ଅଭିନନ୍ଦିତ କରିବା ପାଇଁ ଅପେକ୍ଷମାଣା ବିରହ-ବିଧୂରା ଗୋପାଙ୍ଗନାଙ୍କ ଠାରେ କୃଷ୍ଣର ସଦ୍ୟ କୁବ୍‌ଜା ପ୍ରୀତିର ସଂବାଦର ତୀକ୍ଷ୍ଣ ନାରାଚ ସେମାନଙ୍କର ମର୍ମସ୍ଥଳକୁ ଭେଦକରି ସାରିଥିଲା । ମାତ୍ର ଚାରିଦିନ ପରେ ପ୍ରତ୍ୟାଗମନର ପ୍ରତିଶ୍ରୁତି ଦେଇ ଯାଇଥିବା ସେହି ପ୍ରାଣପ୍ରିୟଙ୍କର ବାହୁଡ଼ା ପଥକୁ ଚାତକର ଆଶାୟୀ ଦୃଷ୍ଟିରେ ବାରମ୍ବାର ଅନ୍ୱେଷଣ କରୁଥିବା ଗୋପୀମାନଙ୍କୁ ନିରାଶ କରି କୃଷ୍ଣଙ୍କର ମଥୁରାରେ ଦୀର୍ଘଦିନ ଅବସ୍ଥାନ ଓ ଆଶ୍ୱାସନା ଦାନ ନିମିତ୍ତ ଉଦ୍ଧବକୁ ପ୍ରେରଣରୁ କୃଷ୍ଣଙ୍କର କୁବ୍‌ଜା ପ୍ରୀତି ନିମଜ୍ଜନର ପ୍ରଗାଢ଼ତା ସମ୍ବନ୍ଧରେ ସେହି ବିରହିଣୀ କୃଷ୍ଣପ୍ରିୟା ଗୋପୀମାନଙ୍କର ସମସ୍ତ ସନ୍ଦେହ ସତ୍ୟ ଭାବରେ ଦୃଢ଼ୀଭୂତ ହୋଇଗଲା । ଆବାଲ୍ୟରୁ ଶତ ଶତ ଅବିସ୍ମରଣୀୟ ସ୍ମୃତି ବିଜଡ଼ିତା ଏହି ପ୍ରଣୟିନୀମାନେ ନିଜ ନିଜର ପ୍ରଣୟକୁ ଏହି ସପତ୍ନୀ ପ୍ରୀତିର ନବୀନ ସ୍ଫୂର୍ତ୍ତି ସମ୍ମୁଖରେ ମ୍ଳାନ, ନିଷ୍ପ୍ରଭ, ଉପେକ୍ଷିତ ଓ ବିଡ଼ମ୍ବିତ ଜ୍ଞାନକରି ତୀବ୍ର ଅସୂୟା, ବିଦ୍ୱେଷ, କ୍ରୋଧ ଓ ବିଦ୍ରୋହ ପ୍ରକାଶ କରନ୍ତି, ଯାହାକୁ ସାହିତ୍ୟ ଶାସ୍ତ୍ରକାରମାନେ କହନ୍ତି ଖଣ୍ଡିତା ଓ କଳହାନ୍ତରିତା ଭାବ । ନିଜ ପରି ଅଶକ୍ତ, ନିର୍ବଳ ତରୁଣୀମାନଙ୍କ ପ୍ରତି କୃଷ୍ଣଙ୍କ ପରି ଅତିଶକ୍ତିମାନ ପୁରୁଷର ଏହା ଭୟାନକ ଅନ୍ୟାୟ ଓ ଅବିଚାର ବିବେଚନା କରି ଏହାର କ୍ଷୀଣ-କରୁଣ ପ୍ରତିବାଦ ମାତ୍ର ସେହି କୃଷ୍ଣଦୂତ ଠାରେ ପ୍ରକାଶ କରିବାକୁ ଉଦ୍ୟତ ହୋଇଥିଲେ ସେହି ସ୍ପଷ୍ଟବାଦିନୀ ପ୍ରଗଲ୍‌ଭା ଗୋପକାମିନୀଗଣ । ଏହି ଗାଥାର ମୂଳ ଉତ୍ସ ରୂପେ ବିବେଚିତ ଭାଗବତାଦି ପୁରାଣମାନଙ୍କରେ ଶ୍ରୀକୃଷ୍ଣଙ୍କୁ ପରମେଶ୍ୱର, ପୂର୍ଣ୍ଣ ବ୍ରହ୍ମ, ସର୍ବବ୍ୟାପୀ ସର୍ବାନ୍ତର୍ଯ୍ୟାମୀ, ପ୍ରଭୃତି ଗୁଣ ଦ୍ୱାରା ଚିହ୍ନିତ କରାଯାଇ ଅଛି । ଉଦ୍ଧବଙ୍କର ଗୋପାଙ୍ଗନାମାନଙ୍କ ଠାରୁ ଅଭିମାନ ଓ ଅଭିଯୋଗ ଭିତରୁ ସେମାନଙ୍କର

ପ୍ରୟୋଜନଶୂନ୍ୟ କୃଷ୍ଣ ପ୍ରୀତିର ପ୍ରଗାଢ଼ତା ଅନୁଭବ କରି ସେ ପୂର୍ବ ରାତ୍ରିରେ ନନ୍ଦ ଯଶୋଦାଙ୍କ ବାତ୍ସଲ୍ୟ ପ୍ରେମଠାରେ ଆପଣାର ସମସ୍ତ ଶାସ୍ତ୍ରବ୍ୟୁତ୍ପତ୍ତି ଓ ଶକ୍ତିମତ୍ତାର ଅସାରତା ଅନୁଭବ କରି ସାରିଥିବା ବେଳେ ଶ୍ରୀକୃଷ୍ଣଙ୍କୁ ସର୍ବଶକ୍ତିମାନ ପରମତତ୍ତ୍ୱ ରୂପେ ଉପସ୍ଥାପିତ କରାଇବାର ସକଳ ସାହସ ଓ ଉତ୍ସାହ ହରାଇ ବସିଛନ୍ତି । ବିଶେଷତଃ ଭାଗବତାନୁସାରେ ଠିକ୍ ସେହି ସମୟରେ ଏକ କୃଷ୍ଣଭ୍ରମରର ଗୋପୀଙ୍କ ଠାରେ ବାରମ୍ବାର ଗୁଞ୍ଜରଣକୁ ଦେଖି କୃଷ୍ଣ ବିରହରେ ସମସ୍ତମାନସିକ ଭାରସାମ୍ୟ ହରାଇ ବସିଥିବା ହେତୁ ସେମାନେ ତାହାକୁ ମଧ୍ୟ କୃଷ୍ଣ ଦୂତ ଅଥବା କୃଷ୍ଣ ସଖା ରୂପେ ବିବେଚନା କରି ଦଶଗୋଟି ଶ୍ଳୋକର ପରିମିତ ପରିବେଶରେ ନିଜ ପ୍ରେମର ପ୍ରୟୋଜନଶୂନ୍ୟତା, ସ୍ୱାଭାବିକତା, ଉତ୍ସର୍ଗପ୍ରବଣତାର ଯେଉଁ ଚରମ ନିଦର୍ଶନମାନ ଦେଇଛନ୍ତି ତାହା ସତେ ଯେପିର ବିଶ୍ୱର ସକଳ ସାହିତ୍ୟରେ ଅତୁଳନୀୟ ଦୀପ୍ତିରେ ରହିଛି ବିରାଜିତ ।

ଏକ ପକ୍ଷରେ ସେହି କୃଷ୍ଣ ପ୍ରିୟାମାନଙ୍କର କୃଷ୍ଣଙ୍କୁ ଆବାଲ୍ୟ ସ୍ନେହ ଶ୍ରଦ୍ଧାରେ ଲାଳନ ପାଳନ, ହାସ ପରିହାସ ମଧ୍ୟରେ ବାଳୁତ କୃଷ୍ଣର ସମସ୍ତ ବାଚନିକ, ମାନସିକ ଓ କାୟିକ ଉପଦ୍ରବକୁ ଉଲ୍ଲସିତ ଚିତ୍ତରେ ସମର୍ଥନ ଓ ସହନ, ଏବଂ ତା'ର ପ୍ରୀତିଲାଳସା ଚରିତାର୍ଥ କରିବାକୁ ଯାଇ ଆପଣାର କୁଳଶୀଳ ମର୍ଯ୍ୟାଦାଦି ଲଙ୍ଘନ ରୂପ ଦୁଃସାହସିକ ଦୁଷ୍କର୍ମ କରି ଆପଣାର ଦେହ ମନ, ହୃଦୟକୁ ସେହି ପ୍ରେମାସ୍ପଦର ପରମ ପ୍ରୀତି ସଂପାଦନ ପାଇଁ ସମର୍ପଣ, ଅପର ପକ୍ଷେ ଅଲଙ୍ଘନୀୟ କଂସାଦେଶରେ ଗୋକୁଳ ତ୍ୟାଗ ବେଳେ ଆଶୁ ପ୍ରତ୍ୟାବର୍ତ୍ତନର ପ୍ରତିଶ୍ରୁତି ଭଙ୍ଗ, ଅଭିନବ ଯୌବନା କୁବୁଜା ସହିତ ପ୍ରଣୟ ରଚନା, ମଥୁରା ଯାତ୍ରାର ଲକ୍ଷ୍ୟ ହାସଲ ସତ୍ତ୍ୱେ କର୍ତ୍ତବ୍ୟର ଦୁହାହି ଦେଇ ଗୋକୁଳକୁ ଅପ୍ରତ୍ୟାବର୍ତ୍ତନ ଏବଂ ଦୀର୍ଘ ବ୍ୟବଧାନ ପରେ ଦୂତ ପ୍ରେରଣ ଦ୍ୱାରା ସେମାନଙ୍କର ବିରହୋପଶମ କରିବାର ପ୍ରୟାସରୁ ପ୍ରିୟତମ ପ୍ରଣୟୀ ଗୋପୀନାଥର ମିଥ୍ୟାବାଦିତା, ପ୍ରତାରଣା ଓ ବିଶ୍ୱାସଘାତକତା ଏହି କଥାଂଶର ବେଦନାମୟ ପ୍ରବାହକୁ ଅଧିକ କ୍ଷିପ୍ରଗତି ଓ ଉଦ୍‌ବେଳ କରିଦିଏ । ରସଶାସ୍ତ୍ରୀୟ ବିଚାର ଦୃଷ୍ଟିରୁ କୃଷ୍ଣଙ୍କର ମଥୁରାଗମନ କାଳୀନ ଆତୁରତାରେ ପ୍ରତିଫଳିତ ହୋଇଥିଲା ଯେଉଁ ବିପ୍ରଲମ୍ଭ ଶୃଙ୍ଗାର, ତାହା କ୍ରମେ ଘନୀଭୂତ ଓ ପ୍ରଗାଢ଼ ହେଲା କୁବୁଜା ରମଣ ଜନିତ ସପତ୍ନୀ ବିଳାସର ସମ୍ବାଦ ଜନିତ ଦୁଃସହ ଅନ୍ତର୍ବେଦନାର ଖଣ୍ଡିତା ଓ କଳହାନ୍ତରିତା ଭାବର ପରିସ୍ଫୁରଣରେ । କିନ୍ତୁ ଦୀର୍ଘ ବ୍ୟବଧାନ ପରେ ସେମାନଙ୍କ ମନରେ ଆଶ୍ୱାସନା ବା ସନ୍ତୋଷ ବିଧାନ ପାଇଁ ସ୍ୱୟଂ ଆସି ପ୍ରୟାସ କରିବା ପରିବର୍ତ୍ତେ ଏକ ଅନ୍ତରଙ୍ଗ ସେବକ ମାଧ୍ୟମରେ କୁଶଳ ଜିଜ୍ଞାସା ପ୍ରୟାସରୁ ଶ୍ରୀକୃଷ୍ଣ ପ୍ରତ୍ୟାବର୍ତ୍ତନ ଓ ପୁନର୍ମିଳନର ସମସ୍ତ ଆଶା ହେଲା ଶୋଚନୀୟ ଦୁଃସ୍ୱପ୍ନରେ ପରିଣତ । ଏଣୁ ଆପଣାର ସମର୍ପିତ ସକଳ ପ୍ରଣୟ ଚେଷ୍ଟାର ଏଡି ଦୁରନ୍ତ ପରିଣତି କଳ୍ପନାରେ ଭଗ୍ନ ହୃଦୟା ଗୋପୀଚିତ୍ତରେ ଜନ୍ମ ନେଲା ପରିସମାପ୍ତି ହୀନ କାରୁଣ୍ୟର ସର୍ବଗ୍ରାସୀ ଦାବାଗ୍ନି । ଏହି ଅଦମନୀୟ କାରୁଣ୍ୟର ଉପଶମ ପାଇଁ ଉଦ୍ଧବଙ୍କର କୃଷ୍ଣଙ୍କୁ ପରମେଶ୍ୱର ରୂପେ ଉପସ୍ଥାପନା ଓ ଗୋପୀମାନଙ୍କର ତାଙ୍କ ସହିତ ପ୍ରଣୟ ବିଳାସ ପାଇଁ ସୌଭାଗ୍ୟଶାଳିତାର ପ୍ରଶଂସା

ପ୍ରୟାସ ରୂପକ ଘୃତାହୁତି, ସେହି ହୁତାଶନକୁ ପ୍ରଶମିତ କରିବାର ପ୍ରୟାସ ସଂପୂର୍ଣ୍ଣ ବ୍ୟର୍ଥ ଓ ବିପରୀତ ଉଦ୍ୟମ ତୁଲ୍ୟ ପ୍ରତୀତ ହୋଇଥିଲା । ଭାଗବତ ପୁରାଣରେ ବର୍ଣ୍ଣିତ ଯେ ଗୋକୁଳ ପ୍ରବେଶ କରି ନନ୍ଦ ଗୃହରେ ରାତ୍ରି ଯାପନ ଅବକାଶରେ କୃଷ୍ଣଦୂତ ଉଦ୍ଧବ ଅତ୍ୟନ୍ତ ବିଚକ୍ଷଣତା ସହ ଶ୍ରୀକୃଷ୍ଣଙ୍କୁ ପରମେଶ୍ୱର, ସର୍ବଜ୍ଞ, ସର୍ବ ବିଦ୍ୟମାନାଦି ମହିମା ପ୍ରତିପାଦନ କରି ନନ୍ଦ ଯଶୋଦାଙ୍କ ପୁତ୍ର ବିରହ ବେଦନା ଅପନୋଦନର ପ୍ରୟାସ କରି ସେମାନଙ୍କର ଅଗାଧ ବାତ୍ସଲ୍ୟ ସମ୍ମୁଖରେ ନିଜର ସମସ୍ତ ବିଚକ୍ଷଣ ବୁଦ୍ଧି ଓ ଶାସ୍ତ୍ରମତାର ପରାଭବ ଅନୁଭବ କରିଥିଲେ । ତତ୍ପର ଦିନ ପ୍ରଭାତରେ ଯମୁନା ସ୍ନାନ ସାରି ଆହ୍ନିକାଦି କୃତ୍ୟ ବେଳେ ଗୋକୁଳ ନାରୀମାନଙ୍କର କୃଷ୍ଣ ସ୍ମୃତି ସମ୍ବଳିତ କରୁଣ ଗୀତଧ୍ୱନିମାନ ଶ୍ରବଣରେ ସେ ଏପରି ବିହ୍ୱଳିତ ହେଲେ ଯେ ଆପଣାର ଆହ୍ନିକ ମନ୍ତ୍ରାଦିକୁ ବିସ୍ମୃତ ହୋଇ ସେମାନଙ୍କର ମଙ୍ଗଳ ଗୀତିକାକୁ ଏହି ନୀରସ ମନ୍ତ୍ରୋଚ୍ଚାରଣ ଠରୁ ଅଧିକ ପବିତ୍ର ଓ ମଙ୍ଗଳପ୍ରଦ ବିବେଚନା କଲେ । ନନ୍ଦ ଦ୍ୱାରରେ ସୁସଜ୍ଜିତ ରଥ ଦେଖି ଗୋପିମାନଙ୍କର ଔତ୍ସୁକ୍ୟ ଓ କୌତୂହଳ ପୂର୍ଣ୍ଣ ହୃଦୟ ବିଦାରକ ବାର୍ତ୍ତାଳାପ ନୀରବ ଶ୍ରବଣରେ ଉଦ୍ଧବ ସ୍ତମ୍ଭୀଭୂତ ହୋଇଥିଲେ । ଉଦ୍ଧବଙ୍କ ରୂପ, ବୟସ ଓ ବେଶଭୂଷାଦି ସେମାନଙ୍କ ମନରେ ଶ୍ରୀକୃଷ୍ଣ ଭ୍ରମ ସଂଚାର କରିଥିଲେ ମଧ ତାଙ୍କୁ କୃଷ୍ଣଙ୍କର ନିଜ ଲୋକ ବୋଲି ଜାଣି ତାଙ୍କ ଆଗମନର ଉଦ୍ଦେଶ୍ୟ ଜାଣିବା ପାଇଁ ହେଲେ ଉଦ୍‌ବିଗ୍ନ-ମାନସ । କୃଷ୍ଣ ବିରହରେ ସେମାନଙ୍କର ଅତ୍ୟନ୍ତ ଶୀର୍ଣ୍ଣଦେହ, ମଳିନ ବେଶ, ଅଯତ୍ନ କେଶ ପାଶ-ରୂପକୁ ଧୂମଭସ୍ମାଚ୍ଛାଦିତ ଅଗ୍ନି ସଦୃଶ ନିରୀକ୍ଷଣ କରି ଉଦ୍ଧବ ହେଲେ ସ୍ତମ୍ଭୀଭୂତ । ଐଶ୍ୱର୍ଯ୍ୟଶାଳୀ ଯଦୁପତି କୃଷ୍ଣ ଆପଣାର ବିରହକାତର ଜୀର୍ଣ୍ଣ ଶୀର୍ଣ୍ଣ ମଳିନ ପିତାମାତାଙ୍କ କୁଶଳ ଜାଣିବାକୁ ନିଜେ ନ ଆସି ରାଜକୀୟ ଆଡ଼ମ୍ବରରେ ଭୃତ୍ୟଟିଏ ପଠାଇ ଥିବାର ଅବିମୃଶ୍ୟକାରିତା ବିଷୟରେ ତୀବ୍ର ସମାଲୋଚନା ଗୋପୀମାନଙ୍କର ତପ୍ତ ହୃଦୟରୁ ଶୁଣି ସେ ମର୍ମାହତ ହୋଇଥିଲେ । ତତ୍ପରେ ସେମାନେ ସିଧା ନନ୍ଦ ମନ୍ଦିରକୁ ନଯାଇ ଗୋପଦାଣ୍ଡକୁ ନ ଆସିବାକୁ କଠୋର ସ୍ୱରରେ ପରାମର୍ଶ ଦେବାରୁ ଉଦ୍ଧବ ଆତ୍ମଗ୍ଲାନିରେ ଅଭିଭୂତ ହୋଇ ଯାଇଥିଲେ । ତତ୍ପରେ ସେମାନେ ଉଦ୍ଧବଙ୍କୁ ଶ୍ରୀକୃଷ୍ଣଙ୍କର ଶ୍ରେଷ୍ଠ ସଖା ଓ ସୁବିବେକୀ ବୋଲି ପୂର୍ବରୁ ଜାଣିଥିବାର ଉଲ୍ଲେଖ କରି ସ୍ୱାର୍ଥାଭିମୁଖୀ ଓ ନିଃସ୍ୱାର୍ଥ ସହଜାତ ପ୍ରୀତି ମଧ୍ୟରୁ କେଉଁଟି ଅବିନଶ୍ୱର ବୋଲି ବିବେଚନା କରି ପ୍ରକାଶ କରିବାକୁ ପରାମର୍ଶ ଦେଲେ । ମଧୁପର ପୁଷ୍ପପ୍ରୀତି, କାମାତୁରର ନାରୀ ପ୍ରୀତି, ଗଣିକାର ଧନୀ ପ୍ରୀତି, ପ୍ରଜାଙ୍କର ରାଜାପ୍ରୀତି, ବିଦ୍ୟାର୍ଥୀଙ୍କର ଆଚାର୍ଯ୍ୟପ୍ରୀତି, ପୁରୋହିତଙ୍କର ଯଜମାନ ପ୍ରୀତି, ପକ୍ଷୀମାନଙ୍କର ଫଳବୃକ୍ଷ ପ୍ରୀତି, ଅତିଥିମାନଙ୍କର ଗୃହସ୍ଥ ପ୍ରୀତି, ମୃଗମାନଙ୍କର ବନପ୍ରୀତି, ଜାରମାନଙ୍କର ପରସ୍ତ୍ରୀ ପ୍ରୀତିମାନଙ୍କର କପଟ ଅଭିନୟ ସମ୍ବନ୍ଧରେ ସ୍ମରଣ କରାଇ କୃଷ୍ଣ ସହିତ ସେମାନଙ୍କର ଅହୈତୁକୀ ପ୍ରୀତି ବା ପ୍ରୟୋଜନ ବିହୀନ ପ୍ରୀତି ହେତୁ ସେମାନଙ୍କର ବିରହ ସନ୍ତାପର ପୁନଃ ପୁନଃ ପ୍ରଜ୍ୱଳନ ସମ୍ବନ୍ଧ ଉଲ୍ଲେଖ କରିଥିଲେ । ଏହା ହେଉଛି ମୂଳ ଭାଗବତର ଭାବଘନ ବିବରଣୀ । କିନ୍ତୁ ଶ୍ରୀକୃଷ୍ଣଙ୍କ ଗୋପୀମାନେ ସଂପୂର୍ଣ୍ଣ ପରିଚିତ ଉତ୍କଳୀୟ ଲୌକିକ ରୀତିରେ ନିଜ ନିଜର ପ୍ରୟୋଜନହୀନ ପ୍ରୀତି

ପାଇଁ ଏପରି ଚରମ ଯନ୍ତ୍ରଣା ଭୋଗ କରୁଥିବାର ଉଲ୍ଲେଖ କରି ନିଜକୁ କାକର ପିକଶିଶୁ ପାଳନ, କୃପଣ ପ୍ରଭୁଠାରେ ଲୋଭୀ-ସେବକର ଆଶା ପୋଷଣ, କରସ୍ଥ ଚିନ୍ତାମଣିର ମହାଚିନ୍ତା ଉତ୍ପାଦନ, ଅମୃତର ବିଷଫଳ ପ୍ରଦାନ, କୃଷିକାରର କୃଷିହାନି ହେତୁ କଳନ୍ତର ଲୋଭରେ ମୂଳଧନ ହରାଇବାର ଦୁର୍ଦ୍ଦଶା, ମଧୁମକ୍ଷୀର ମଧୁ ସଂଚୟ, କୁମୁଦର ଚନ୍ଦ୍ରପ୍ରୀତି, କୋକ ଦମ୍ପତିଙ୍କର ନିଶିଥ ଦଶା, କରଗତ ଶୁକପକ୍ଷୀର ବନଗମନ, ପ୍ରଭୃତିର ପ୍ରୀତି ପରିଣାମରେ ଯେଉଁ ବ୍ୟର୍ଥତା, ନୈରାଶ୍ୟ ଓ ସନ୍ତାପ ସୃଷ୍ଟି ହୁଏ ତଦପେକ୍ଷା ସେମାନଙ୍କର ସନ୍ତାପ ଶତଗୁଣରେ ଅଧିକ ପ୍ରଖର ବୋଲି ପ୍ରତିପାଦନ ପୂର୍ବକ କୃଷ୍ଣଙ୍କର ସ୍ୱାର୍ଥପରତା ଓ ନିଷ୍ଠୁରତାର ପ୍ରକୃତ ସ୍ୱରୂପକୁ ନିଃସଙ୍କୋଚରେ ପ୍ରକାଶ କରି ଦିଅନ୍ତି । ତଥାପି କୃଷ୍ଣ ଦୂତକୁ ଗୋକୁଳରେ ପାଇ ଗୋପିକାମାନେ କୃଷ୍ଣ ସଂବାଦ ଜାଣିବାକୁ ଅସୀମ ଆନନ୍ଦୋଲ୍ଲାସରେ ହୋଇଥିଲେ ଉତ୍ସାହିତ । କୃଷ୍ଣ ବଳରାମଙ୍କ କୁଶଳ ସମ୍ବାଦ ପାଇଁ ଗୋପୀମାନେ କିପରି ଦୁଃସହ ବିରହରେ କାଳାତିପାତ କରୁଛନ୍ତି ତାହା ନିଜ ନିଜର ଅଭିବ୍ୟକ୍ତିରେ ଜଣାଇ ଶ୍ରୀକୃଷ୍ଣଙ୍କର ପ୍ରତିଶ୍ରୁତି ଭଙ୍ଗ ଓ କଠୋର ହୃଦୟକୁ ନିନ୍ଦା କରି ଅଭିମାନରେ ନାନା ଅଭିଯୋଗମାନ ପ୍ରକାଶ କଲେ । ପୁନଶ୍ଚ କୃଷ୍ଣଙ୍କର ଏହି ନିଷ୍ଠୁରତା ପାଇଁ କୁବୁଜାର ପ୍ରୀତିକୁ ବାରମ୍ବାର ଦାୟୀ କରି ଅତିଶୟ କ୍ରୁଧିତା ହୋଇ ଉଠି ବଡ଼ ଲୋକମାନଙ୍କର ଅସଙ୍ଗତ ଆଚରଣଠାରେ ସାନମାନଙ୍କର ଚରମ ଅସହାୟତାର ବହୁ ଦୃଷ୍ଟାନ୍ତମାନ ଦେଇ ନିଜ ନିଜ ଅଭିଯୋଗର ବ୍ୟର୍ଥତାକୁ ମଧ ଗ୍ଳାନି ସହିତ ସ୍ୱୀକାର କରିନେବାକୁ ବାଧ ହୁଅନ୍ତି । ପ୍ରବଳ ପରାକ୍ରମୀ ଶକ୍ତିମାନ ପୁରୁଷ ଯେତେ ଭାବଗ୍ରାହୀ ଓ ହୃଦୟଗ୍ରାହୀ ହେଲେ ମଧ ସେମାନଙ୍କ ଠାରେ ଦୀନ-ଦୁର୍ବଳା ସରଳା ତରୁଣୀମାନଙ୍କର ଐକାନ୍ତିକ ଅନୁରାଗ ଓ ପ୍ରୀତ୍ୟର୍ପଣ ଯେ ବାରମ୍ବାର ହୁଏ ଚରମ ହତାଶା ଓ ବ୍ୟର୍ଥତାରେ ପର୍ଯ୍ୟବସିତ ଏକଥା ମର୍ମେ ମର୍ମେ ଅନୁଭବ କରି ସେହି ନୈରାଶ୍ୟ ଜର୍ଜ୍ଜରିତା ତରୁଣୀଗଣ ଉଦ୍ଧବଙ୍କୁ କହନ୍ତି;

''କି କରନ୍ତି ବଡ଼ ପ୍ରଭୁମାନେ
କିଛି ବିଚାରନ୍ତି ନାହିଁ ମନେ
କଲେ ଅବେଭାର    କି ବୋଲିବେ ନର
ନୀତିବନ୍ତ ବିଚକ୍ଷଣମାନେ ହେ, ଉଦ୍ଧବ ।

କହିବାକୁ ଆଉ କିଛି ନାହିଁ
କୁଜପିଠି ଅଛି ସବୁ କହି
କୁକର୍ମ କରିବା    କେତେ ତାକୁ ଅବା
କହିବାକୁ ଆଉ ଆନ ନାହିଁ ହେ ଉଦ୍ଧବ ।''

କୃଷ୍ଣଙ୍କ ପରି ବଡ଼ ଲୋକମାନଙ୍କର ମିଥ୍ୟା, ମଧୁରଚାଟୁ ଓ କୁଟିଳ ଆଚରଣର ବିଷମୟ ପରିଣତିକୁ ଏବେ ସେମାନେ ନିରୁପାୟ ହୋଇ ନୀରବରେ ସହନ କରୁଥିବାର ସଂବାଦ ଉଦ୍ଧବଙ୍କ ମାଧ୍ୟମରେ ହିଁ ଶ୍ରୀକୃଷ୍ଣଙ୍କୁ ଜଣାଇ ଦେଇଥାନ୍ତି । ପୁନଶ୍ଚ ଶ୍ରୀକୃଷ୍ଣଙ୍କ

ପରି ବଡ଼ଲୋକ ଓ ପ୍ରେମାସ୍ପଦର ବିପକ୍ଷରେ ଏପରି ଗୁରୁତର ଅଭିଯୋଗମାନ କରିବାରେ ନିଜ ନିଜର ସୀମାଲଘନ ଓ ଅନୁଚିତ ଆଚରଣ ସମ୍ବନ୍ଧରେ ସଚେତନ ହୋଇ ଗୋପୀମାନେ କହନ୍ତି;

''କହିବ ଯେ ତୁମ୍ଭେ ଆଭିରୀ
କଲେ ସେ ତୁମ୍ଭଙ୍କୁ ଏଡ଼େକରି,
କାଖେ କୋଳେଧରି ନାନା ସେବା କରି
ତାହାଙ୍କର ଆମ୍ଭେ ପରିଚାରୀ ହେ, ଉଦ୍ଧବ !
କଥା ପ୍ରସଙ୍ଗେ କହିଲୁ ଏହା
କରନ୍ତୁ ସେ ଯାହା ଇଚ୍ଛା ତାହା,
କୁମ୍ଭକାର ଭହା ପ୍ରାୟେ ଅନ୍ତର୍ଦାହା
କଲେ କୁବୁଜାଙ୍କ କାମଦୁହା, ହେ ଉଦ୍ଧବ !''

ପରକୀୟା ପ୍ରୀତି ସରଣୀରେ ସହଜ ସମାବିଷ୍ଟ ସହସ୍ର ମନୋବେଦନା, ଶଙ୍କିତ ହୃଦୟର ଅସୀମ ସ୍ପନ୍ଦନ ଓ ଅଦମ୍ୟ କୋହରେ କମ୍ପିତ କୃଷ୍ଣ କଥାର ଏହି ପର୍ଯ୍ୟାୟଟି ଶୃଙ୍ଗାର ସାଧନାର ବିପ୍ରଲମ୍ଭ ପର୍ଯ୍ୟାୟ ଅତିକ୍ରମ କରି କାରୁଣ୍ୟରେ ଆତ୍ମ ସମର୍ପଣ କରି ଦେଇଛି । ଏହାର ଛବିଳ କାବ୍ୟାୟନ ଚିତ୍ର ସେହି ପ୍ରଣୟୀ ପ୍ରଣୟିନୀମାନଙ୍କର ହୃଦଗହନର ସହସ୍ର ବିଳାପ ଧ୍ୱନିକୁ ପାଠକ ହୃଦୟରେ ଅବିମିଶ୍ର ଭାବରେ ପ୍ରତିଧ୍ୱନିତ କରିଦିଏ । ବିଶେଷତଃ ରାଜନୈତିକ ଦାୟିତ୍ୱ ଝଂଝାଳ ମଧ୍ୟରେ ନିମଜ୍ଜିତ ଶ୍ରୀକୃଷ୍ଣଙ୍କ ସ୍ମୃତିରୁ ଅତୀତ ପ୍ରଣୟର ସୁମଧୁର ସ୍ମୃତିରାଜି ଅପସୃତ ହୋଇଯିବାର ପ୍ରଶସ୍ତ ସୁଯୋଗ ଥାଇପାରେ, କିନ୍ତୁ ଏହି ଚିର ଦୁଃଖିନୀ ସରଳା ଅବଳା ବ୍ରଜାଙ୍ଗନାମାନଙ୍କର ବିରହ ଦାବାଗ୍ନି ସେମାନଙ୍କୁ ସତେ ଯେପରି ଜୀବନ୍ତ ଦଗ୍ଧ କରିଦିଏ । ତେଣୁ ସଦ୍ୟ ବିଚ୍ଛେଦର ଏହି ଦୁଃସହ ଯନ୍ତ୍ରଣାରୁ ତ୍ରାହି ପାଇବା ନିମିତ୍ତ ସେମାନେ ଅଜସ୍ର କାକୁତି ମିନତି ସହିତ ଉଦ୍ଧବଙ୍କୁ ଅକୃତ୍ରିମ ସ୍ତୁତି ଓ ପ୍ରଶଂସା ସହ ନିବେଦନ କରି କହନ୍ତି;

''କପିଳ କୋପେ ସଗର ପୋୟେ
କରିଥିଲେ ଯେଉଁ ରୂପେ କାୟେ
କାଳେ ସେହି ରୂପେ ହେଲୁ କାମ କୋପେ
ତୁମ୍ଭେ ହୁଅ ଭଗୀରଥ ପ୍ରାୟେ ହେ ଉଦ୍ଧବ,
କୃଷ୍ଣ ଗଙ୍ଗା ଆଣି ବେଗେ ଦିଅ,
କୀର୍ତ୍ତି ସମସ୍ତ ଲୋକର ପାଅ,
କରୁଛୁଁ ବିନତି ଗୋକୁଳ ଯୁବତୀ
ଆମ୍ଭମାନଙ୍କୁ ପ୍ରସନ୍ନ ହୁଅ ହେ ଉଦ୍ଧବ ।''

''କୃପା କଲା ଲୋକ, ନୋହିବ ବିବେକ
ଆପଣା ଲୋକରେ ଯେବେ,

କାକୁସ୍ଥେ କହିବା, ପରେ କୁହାଇବା,
କଉଁ କାର୍ଯ୍ୟ ହେବ ତେବେ ସେ ।
କଥା କଡ଼ାକରେ ଲେଖା ନୋହେ,
କେତେ ଅଧୈର୍ଯ୍ୟ ମାତ୍ରକ ରହେ ସେ ।''

ଏପରି ଅଭିମାନ ଓ ଭର୍ତ୍ସନାଦି ଦ୍ୱାରା କପଟୀ କୃଷ୍ଣର ନିଷ୍ଠୁର ହୃଦୟରେ ଦୟା ବା ସମବେଦନା ସଂଚାର କରାଇବାର ବିଡ଼ମ୍ବିତ ପ୍ରୟାସର ଅସାରତା କଥା ମଧ୍ୟ ଉପଲବ୍ଧି କରି ଗୋପୀମାନେ କହନ୍ତି;

''କଢ଼ି କୁସୁମକୁ ଫୁଟାଇ ବାସକୁ
ପ୍ରବେଶ କରିଛି କେହି,
କରତା ବିମନ ହେଲେ ତାହା ଆନ
କରିବା କଥା ହିଁ ସେହି ସେ
କରି ଓଟାରି ଯଉଁ ପ୍ରୀରତି,
କଷ୍ଟ ତହୁଁ ବଡ଼ନାହିଁ କ୍ଷିତି ସେ ।''

ଓଡ଼ିଶାର ଜଳବାୟୁ ମଧ୍ୟରେ ନିର୍ମିତ ହୋଇଥିବା ଏହି ସରଳା ନିରୀହା ନିଷ୍କପଟା ପ୍ରେମିକାମାନଙ୍କରା ଉତ୍‌ପୀଡ଼ିତ, ଅବହେଳିତ ପ୍ରତାରିତ ଶୋକାଭିଭୂତ ଅବସ୍ଥା ଓ ସେମାନଙ୍କର ସକଳ ଆଶାର ଅସାରତାକୁ ଅତ୍ୟନ୍ତ ବାସ୍ତବ ଓ ବିଶ୍ୱସ୍ତ ଭାବରେ ପ୍ରକାଶିତ କରାଇ ଦେବାକୁ ଉପରୋକ୍ତ ପଂକ୍ତିମାନଙ୍କର ଅର୍ଥପୂର୍ଣ୍ଣ ସାମର୍ଥ୍ୟ ସହଜ ଅବଧାରଣୀୟ । ପୁନଶ୍ଚ ଏହି ବାସ୍ତବତାର ବିଶିଷ୍ଟ ସ୍ୱରଟି ଆହୁରି ସୁବୋଧ ହୋଇ ଉଠେ ଯେତେବେଳେ ବିରହ କାଳୀନ ଅଶେଷ ପ୍ରଣୟ ସ୍ମୃତିରେ ଗୋପୀମାନେ ସେମାନଙ୍କର ଏହି ମନୋବେଦନାକୁ କୁବୁଜା ଅନ୍ତରାଳରେ ଗୋପୀନାଥଙ୍କୁ ଅବଗତ କରାଇବାକୁ କାକୁସ୍ଥ ନିବେଦନ ଜଣାଇ କହନ୍ତି;

''କୋଟି କୋଟି ଦଣ୍ଡବତ ପୁଣ୍ଡରୀକ
ନେତ୍ରଙ୍କୁ ଆମ୍ଭ କହନ୍ତି;
କୁବୁଜା ପାଖରେ ଥିବା ସମୟରେ
ଦୁଃଖ ଏକା ନ କହିବ, ସେ,
କଟୁ ନୋହିଲେ ତାହାଙ୍କ ବୋଲ,
କଲେ ଏହା ସେ ଆମ୍ଭଙ୍କୁ ସଲ ସେ ।''

ପ୍ରିୟ ପ୍ରେମାସ୍ପଦର ସପତ୍ନୀ ବିଳାସ, ଓ ଉପେକ୍ଷା ଜର୍ଜରିତା ହତଭାଗିନୀ ଗୋପୀମାନଙ୍କର ଏହି ଚରମ ଅସହାୟତା ଓ କାରୁଣ୍ୟ ମଧ୍ୟରେ ନିହିତ ରହିଛି ସଂସାରର ସକଳ ଉପେକ୍ଷିତା ହତଭାଗିନୀ ପ୍ରଣୟିନୀମାନଙ୍କର ବ୍ୟର୍ଥ ବିଳାପର କରୁଣ ମୂର୍ଚ୍ଛନା ! ବିରହ ଶୋକୋଚ୍ଛ୍ୱାସରେ ଅଭିଭୂତା ଗୋପାଙ୍ଗନାମାନେ ବାଷ୍ପାକୁଳିତ ଗଦ୍‌ଗଦ୍ କଣ୍ଠରେ ନିର୍ବାକ୍ ହୋଇ ଯିବା ପରେ ନିସ୍ତବ୍ଧତା ଭଙ୍ଗକରି ସମ୍ବେଦନଶୀଳ

ମୃଦୁ କଣ୍ଠରେ ଉଦ୍ଧବ କୃପାଳୁ ଶ୍ରୀକୃଷ୍ଣଙ୍କର ଅଶେଷ ଦୟାଳୁତାର ମହନୀୟତା ବର୍ଣ୍ଣନାକ୍ରମେ ତାଙ୍କ ସହିତ ଏତେ ଆତ୍ମୀୟତା ଓ ଏକ ନିଷ୍ଠ ଅବ୍ୟଭିଚାରିଣୀ ପ୍ରଣୟ ବିଳାସର ଅଦ୍ଭୁତ ସୌଭାଗ୍ୟକୁ ବନ୍ଦନା କରି କହନ୍ତି;

"କୁବୁଜା ଚନ୍ଦନ ଟିକାକେ ବନ୍ଦନ କରି ପାଇଲା ଯେ ସୁଖ,
କର୍ତ୍ତବ୍ୟ ମନବଚନ ଦେଲା ଲୋକ କଥା କାହିଁ ପାଇଁ ଲେଖ, ସେ,
କୃଷ୍ଣ ମହିମା ଅତି ଅପାର,
କହି କେ ଅବା ପାଇବ ପାର ସେ ।
କଷ୍ଟେ କଷ୍ଟେ ଯୋଗୀ ଯୋଗବାଟ ଜଗି ଦେଖନ୍ତି ନାହିଁ ଯାହାକୁ
କଉଁ ଭାଗ୍ୟବଳେ ଏତେକାଳ କୋଳେ ଘେନି ଖେଳିଲ ତାହାକୁ ସେ,
କୃଷ୍ଣ କଲେ ଏଡ଼ିକି ସୁଦୟା,
କହ କଲେ ଆମ୍ଭକୁ ନିର୍ଦ୍ଦୟା ସେ ।
କଉଁ ଇନ୍ଦ୍ର ଚନ୍ଦ୍ର ଅମର, ନରେନ୍ଦ୍ର ତୁମ୍ଭଙ୍କୁ ହେବେ ସମାନ,
କର୍ମ କରି କର୍ମକାଣ୍ଡ କରି ଚର୍ମ କିମ୍ପା କର ଅଭିମାନ ସେ,
କୃଷ୍ଣ ତୁମ୍ଭ ଠାରେ କଲେ ଯାହା,
କଉଁ ଲୋକ ପାଇ ନାହିଁ ତାହା, ସେ ।"

ପରକୀୟା ଭାବରେ ଗୋପୀକୃଷ୍ଣଙ୍କର ଏହି ଅଦ୍ଭୁତ ପ୍ରଣୟ ବ୍ୟାପାରର ଅବଧି କଳନା କରିବାରେ ନିଜକୁ ଅସମର୍ଥ ମନେକରି ଉଦ୍ଧବ ଏହାକୁ ତ୍ରିଭୁବନ ଦୁର୍ଲ୍ଲଭ ବୋଲି ବିଶ୍ୱାସ କରିବା ମଧ୍ୟରେ ଏହାକୁ ଅବାଙ୍ମାନସ ଗୋଚର ଅତୀନ୍ଦ୍ରିୟର ଅପ୍ରାକୃତ ଲୀଳା ବୋଲି ଯେଉଁ ଦୃଢ଼ ପ୍ରତ୍ୟୟ ପୋଷଣ କରି ଦେଇଥିଲେ, ସେହି ବିଶ୍ୱାସକୁ ଏ ଦେଶର ସମଗ୍ର ଲୌକିକ ଓ ଶାସ୍ତ୍ରୀୟ ପରଂପରା ଅପ୍ରତିହତ ଓ ଅବିସମ୍ବାଦିତ ଭାବେ ସ୍ୱୀକାର କରିନେଇ ଐହିକତା ମଧ୍ୟରେ ପାରତ୍ରିକତା ବା ସ୍ୱାର୍ଥ ମଧ୍ୟରେ ପରମାର୍ଥର, ଆନନ୍ଦ ମଧ୍ୟରେ ପରାମାନନ୍ଦ ପ୍ରାପ୍ତିର କୃଚ୍ଛ୍ରସାଧନା କରି ଆସୁଅଛି । କୋଟି କୋଟି ମଣିଷ ଗୋପୀ-ପଣୟ ଭାବାନୁଭୂତିର ସଯତ୍ନ ସାଧନା ମାଧ୍ୟମରେ ମହାଭାବର ଆବିଷ୍ଟତା ସଂଚାର କରାଇ ଜନ୍ମ ଜନ୍ମାନ୍ତର ମଧ୍ୟରୁ ପରିତ୍ରାଣ ପାଇଁ ଆଜୀବନ ତପଶ୍ଚରଣ କରି ଆସୁଛନ୍ତି । ଏହା କେବଳ ବ୍ରଜଭୂମିର ଦେଶ ଭାରତ ବର୍ଷ ମାତ୍ର ନୁହେଁ ସମଗ୍ର ବିଶ୍ୱର ଅଗଣିତ ଜନମାନସରେ ଏହି ବ୍ରଜଭାବ ମାଧୁର୍ଯ୍ୟ ଆସ୍ୱାଦନର ଜିଜ୍ଞାସା, ପିପାସା ଓ ମୁମୁକ୍ଷାକୁ କ୍ରମ ଶକ୍ତିଶାଳୀ କରି ଆସୁଅଛି; ଯାହାକୁ ଆଧାର କରି ସମଗ୍ର ଧରିତ୍ରୀ ପୃଷ୍ଠରେ ଆର୍ନ୍ତର୍ଜାତୀୟ କୃଷ୍ଣଚେତନା ସଂଘ ନାମରେ ମହାନ ଏକ ଆଧ୍ୟାତ୍ମିକ-ସମାଜ ମଧ୍ୟ ସଂଗଠିତ ହୋଇ ପାରିଅଛି । ଏହି ଭାବର ସାଧନାକୁ ସମର୍ଥନ ଜଣାଇ ବୈଦିକ ପରଂପରାରେ ଏକ ସୁଦୃଢ଼ ଦାର୍ଶନିକ ପଦ୍ଧତି ମଧ୍ୟ ପ୍ରତିଷ୍ଠିତ ହୋଇଅଛି ଯାହାକି ବେଦାନ୍ତର 'ଅଚିନ୍ତ୍ୟ ଭେଦାଭେଦ' ନାମରେ ବିଖ୍ୟାତ, ଏବଂ ଗୋକୁଳର ଏହି ଗୋପୀବଲ୍ଲଭ କୃଷ୍ଣ ପୂର୍ଣ୍ଣ ବ୍ରହ୍ମ ପରମେଶ୍ୱର ଭାବରେ ଆରାଧିତ ।

ଗୋପୀନାଥ କୃଷ୍ଣଙ୍କୁ ସବୁ ଶାସ୍ତ୍ର ପୁରାଣ ଓ ଲୋକ ବିଶ୍ୱାସରେ ପରମତତ୍ତ୍ୱ ଈଶ୍ୱର ବୋଲି ପ୍ରତିପାଦିତ କରାଯାଇଥିଲେ ମଧ୍ୟ ତାଙ୍କର ପିତାମାତା ନନ୍ଦ ଯଶୋଦା ବା ପ୍ରଣୟିନୀ ଗୋପାଙ୍ଗନାଦି ବ୍ରଜବାସୀମାନେ ଉଦ୍ଧବଙ୍କର ସେହି ପରାମର୍ଶ-ଉପଦେଶକୁ ସଂପୂର୍ଣ୍ଣ ପ୍ରତ୍ୟାଖ୍ୟାନ କରି ଦେଇଥିଲେ । ଧାର୍ମିକ ବିଶ୍ୱାସରେ ଉତ୍ସାହିତ ଦୀନକୃଷ୍ଣ ହୁଏତ ଶାସ୍ତ୍ରବାକ୍ୟାନୁରୋଧରେ ଶ୍ରୀକୃଷ୍ଣଙ୍କୁ ଯୋଗଗମ୍ୟ, ପୂର୍ଣ୍ଣ ବ୍ରହ୍ମ ଓ ଈଶ୍ୱର ବୋଲି ବିଶ୍ୱାସ ସ୍ଥାପନ କରିଛନ୍ତି, କିନ୍ତୁ ତାଙ୍କର ରସକଲ୍ଲୋଳ କାବ୍ୟର କବି ଚେତନାରେ ଶ୍ରୀକୃଷ୍ଣ ଆଦୌ ପରମେଶ୍ୱର ନୁହନ୍ତି । ସେ ସତେଯେପରି ଏହି ଧୂଳି ଧୂସରିତ ଧରଣୀର ଜଣେ ପରିହାସ ପଟୁ, କୌତୁକ ପ୍ରିୟ ପ୍ରଣୟୀ ମାତ୍ର, ଏବଂ ଯାହାର ଉପସ୍ଥିତି ବିଶ୍ୱର ସର୍ବତ୍ର ଓ ଉତ୍କଳର ପ୍ରତି ପଲ୍ଲୀର ସରଳ ସମାଜ ଭିତରେ ଅନୁଭବ କରାଯାଇ ପାରେ । ଗୋପାଙ୍ଗନାମାନଙ୍କର ସପତ୍ନୀ-ଅସୂୟା, ଓ ଖଣ୍ଡିତା ଭାବ ଯେପରି ସବୁ ଅବଳାଙ୍କ ମଧ୍ୟରେ ଅତି ସାଧାରଣ କଥା, ତାହାର ଏକ କଳାତ୍ମକ କାବ୍ୟରୂପ ପ୍ରଦାନ କରନ୍ତି କବି ଦୀନକୃଷ୍ଣ । ଗୋପାଙ୍ଗନାଙ୍କ ବିଚ୍ଛେଦରେ କୃଷ୍ଣଙ୍କର ଶୀର୍ଣ୍ଣତା, କାନ୍ତିହୀନତା ବୈବର୍ଣ୍ଣ୍ୟ ଓ ଅଶ୍ରୁସିକ୍ତାବସ୍ଥାର ଉଲ୍ଲେଖ କରି ଉଦ୍ଧବ ସେମାନଙ୍କ ଚିତ୍ତରେ ସମ୍ବେଦନ ସଂଚାର ପ୍ରୟାସ କରନ୍ତେ ଗୋପୀମାନେ କ୍ରୋଧାନ୍ୱିତା ହୋଇ କଂସମୃତ୍ୟୁ ପରେ କୃଷ୍ଣ ଗୋପପୁରକୁ ପ୍ରତ୍ୟାବର୍ତ୍ତନ ନ କରିବାର କାରଣ ଏକମାତ୍ର ତାଙ୍କର କୁବୁଜାପ୍ରୀତି ବୋଲି ଅଭିଯୋଗ କରି ତାଙ୍କର ନିଷ୍ଠୁରତା ଓ କୁକର୍ମ ପାଇଁ ତାଙ୍କୁ ବିବିଧ ଦୃଷ୍ଟାନ୍ତ ସହିତ ଶୋକ ଗଦ୍‌ଗଦ୍ ହୋଇ ନିନ୍ଦା କରିବାକୁ ଆରମ୍ଭ କଲେ । ବିଶେଷତଃ ପ୍ରାଣବଲ୍ଲଭା ପ୍ରଣୟିନୀମାନଙ୍କୁ ଅପ୍ରତ୍ୟାଶିତ ଭାବେ ଉପେକ୍ଷା ଓ ଅନାଦର କରି ଅନ୍ୟ ସହବାସ କରୁଥିବା ପ୍ରଣୟୀ ଶ୍ରୀକୃଷ୍ଣଙ୍କର କୁବ୍ଜା ସହିତ ପ୍ରଣୟ ସମ୍ଭୋଗର ସମ୍ବାଦ ଥିଲା ସେମାନଙ୍କ ପାଇଁ ସର୍ବାଧିକ ଶୋକର କାରଣ । ଏହି କୁବ୍ଜାପ୍ରୀତି ସେମାନଙ୍କର ବିରହାଗ୍ନିକୁ କରି ଦେଇଥିଲା ସର୍ବାଧିକ ପ୍ରବଳ । ଏହା ସେମାନଙ୍କର ଅନତିକ୍ରମଣୀୟ ଚରମ ଦୁର୍ଭାଗ୍ୟ ବୋଲି ସେମାନେ ବିଶ୍ୱାସ କରିନେଇ କେବଳ ଅନ୍ତର୍ଦାହୀ ହୁତାଶନରେ ଦଗ୍ଧୀଭୂତ ହେବା ବ୍ୟତୀତ ଉପାୟାନ୍ତର ନଥିଲା । ଅନ୍ୟ ନାରୀପ୍ରତି ସଦ୍ୟ ଆସକ୍ତ ହୋଇ ଉଠୁଥିବା ପ୍ରାଣପ୍ରିୟ ପ୍ରେମାସ୍ପଦର ଏପରି ଉପେକ୍ଷା ଓ ଅବିଚାର ବିଶ୍ୱର ଯେକୌଣସି ପ୍ରଣୟିନୀ ପକ୍ଷେ ଯେପରି ଦୁଃସହ ଓ ଭାଗ୍ୟର ବିଡ଼ମ୍ବନା, ଗୋପିକାମାନଙ୍କ ପ୍ରତି କୃଷ୍ଣଙ୍କର ଏପରି ପ୍ରତ୍ୟାବର୍ତ୍ତନର ପ୍ରତିଶ୍ରୁତି ଭଙ୍ଗ, ଅବିଶ୍ୱାସ, ଉପେକ୍ଷା ଓ ପ୍ରବାସରେ ପୁଣି ଅନ୍ୟ ନାରୀ ସମ୍ଭୋଗ ତଦପେକ୍ଷା ସହସ୍ର ଗୁଣରେ ଅଧିକ ମର୍ମନ୍ତୁଦ । ଅତ୍ୟନ୍ତ ପ୍ରିୟ ଓ ନିଜସ୍ୱ ଜ୍ଞାନରେ ପ୍ରଣୟର ଅର୍ଘ୍ୟ ଢାଳି ଯେଉଁମାନେ କୁଳଶୀଳ ମର୍ଯ୍ୟାଦା ରକ୍ଷାର ସକଳ ଧର୍ମ ଲଙ୍ଘନ କରିବାର ଦୁଃସାହାସ କରିଥିଲେ, ସେମାନଙ୍କର ସେହି ପ୍ରୀତିର ଅନ୍ତରାଳରେ ଯେ ଘୋର ଅବିଶ୍ୱାସ ଓ କପଟତାର ଭୟଙ୍କର ପ୍ରାଣଘାତକ ଗହ୍ୱରଟିଏ ରହିଥିଲା, ସେ କଥା ଚିନ୍ତାକରି ସେମାନେ ଆପଣାର ସେହି ପ୍ରଣୟ ରଚନାକୁ ନିଜ ନିଜର ଜଘନ୍ୟ ଅପକର୍ମ ବୋଲି ଘୋର ଅନୁତାପ କରି କହନ୍ତି;

''କୁଳଶୀଳ ଲାଜ ଭୟ ଛାଡ଼ି
କଇତବ ପୀରତିରେ ଲଡ଼ି,
କୃପଣକୁ ଲୋଭୀ ପ୍ରାୟେ ତାକୁ ଲଭି
ଆଶା ଅନଳେ ମରୁଛୁଁ ପୋଡ଼ି, ହେ ଉଦ୍ଧବ ।''

ଆପଣାର ଶୋଚନୀୟ ଦୁର୍ବଳତା ଓ ଚରମ ପରାଜୟବୋଧ ପରି ବ୍ୟର୍ଥତାର ମର୍ମନ୍ତୁଦ ଗ୍ଳାନିରେ ଭାଙ୍ଗିପଡ଼ି ଦୁଃସହ ଅନ୍ତର୍ବେଦନାରେ ନୀରବ ଅଶ୍ରୁମୋଚନ କରି ତଥାପି କୃଷ୍ଣ ପ୍ରତ୍ୟାଗମନର କ୍ଷୀଣାଶାରେ ପ୍ରାଣମାତ୍ର ଧାରଣ କରୁଥିବାବେଳେ ଉଦ୍ଧବଙ୍କର ଉପସ୍ଥିତି ସେମାନଙ୍କୁ ଧୈର୍ଯ୍ୟହରା ପାଗଳିନୀ ପରି ଉତ୍‌କ୍ଷିପ୍ତ ଓ ପ୍ରଗଲ୍ଭା କରିଦେଲା । ପୁଞ୍ଜିଭୂତ ଅକୁହା କୋହ ଆତ୍ମପ୍ରକାଶର ସୁଯୋଗ ପାଇ ଭୟଙ୍କର କପଟତା, ଓ ପ୍ରତାରଣାରେ ଆଚ୍ଛନ୍ନ ରହିଥିବା ଶ୍ରୀକୃଷ୍ଣଙ୍କର ଲୋକ ଦେଖାଣିଆ ସୁବିଧାବାଦୀ ସ୍ୱାର୍ଥବୁଦ୍ଧି-ସର୍ବସ୍ୱ ପ୍ରଣୟ ପିପାସାର ସାଧୁତା ସମ୍ବନ୍ଧରେ କଟୁ ଭର୍ତ୍ସନାର ସ୍ପଷ୍ଟ ନିର୍ଭୟ କଠୋର ସ୍ୱର ଉତ୍ତୋଳନ କରୁ କରୁ ସେମାନେ ରୁଦ୍ଧକଣ୍ଠା ହୋଇଉଠିଥିଲେ । କ୍ରମେ ସେମାନଙ୍କର ଶୋକଉଚ୍ଛ୍ୱାସ ହେଲା ଐକତାନିକ ଉଚ୍ଚସ୍ୱରରେ ମର୍ମଦାହୀ ବିଳାପରେ ପରିଣତ ।

ଗୋପାଙ୍ଗନାମାନଙ୍କର କୃଷ୍ଣ ପ୍ରୀତିର ପ୍ରଗାଢ଼ ନିଷ୍ଠା, କୃଷ୍ଣପ୍ରାଣତା ଏବଂ ଐକାନ୍ତିକ ଆତ୍ମୋତ୍ସର୍ଗର ଅଭୂତପୂର୍ବତା, ଅଶ୍ରୁତପୂର୍ବତା ଓ ଅନନ୍ୟ ରୂପତା ଦେଖି ମହାରଥୀ, ମହାସାନ୍ଧିବିଗ୍ରହିକ କୂଟନୀତି ବିଶାରଦ ବୃହସ୍ପତି ଶିଷ୍ୟ ନୀତି ପ୍ରବୀଣ ଉଦ୍ଧବ, ହତଚକିତ, ନିର୍ବାକ ଓ ନିସ୍ପନ୍ଦ ହୋଇ ଉଠିଛନ୍ତି । ସେମାନଙ୍କର ଅଭିଯୋଗର ସ୍ୱରରେ ଉଦ୍‌ବେଳ ପ୍ରକାଶ ପାଉଥିବା ସେହି ଅନନ୍ୟ ସୁଲଭ ସୁମଧୁର ପ୍ରଗାଢ଼ ପ୍ରୀତିର ଉର୍ଜ୍ଜ୍ୱଳ ରୂପ ଦେଖି ସେ ନୀରବ ବିସ୍ମୟରେ ଅଭିଭୂତ ଓ ଅବଶ ହୋଇଗଲେ । ଅବଶେଷରେ ଗୋପୀମାନେ ସେମାନଙ୍କର ଏହି ମନୋବେଦନା ଶ୍ରୀକୃଷ୍ଣଙ୍କୁ ଅବଗତ କରାଇବା ନିମିତ୍ତ କାକୁସ୍ଥ ନିବେଦନ କରି କହନ୍ତି;

''କହିବାକୁ ଏତେକ ତୁମ୍ଭଙ୍କୁ
କୃପା କରିବ ବାରେ ଆମ୍ଭଙ୍କୁ
କୃଷ୍ଣ ସତ୍ୟବାଦୀ ହେଲେ ସତ୍ୟବାଦୀ,
ହୋଇ ନାଶିଲେ ଆମ୍ଭ ଦମ୍ଭଙ୍କୁ ହେ, ଉଦ୍ଧବ ।''



# ସୌନ୍ଦର୍ଯ୍ୟ ଶିଖରରେ ସ୍ୱକୀୟ ଉତ୍କର୍ଷ

ଶ୍ରୀମଦ୍‌ଭାଗବତାଦି ପୁରାଣାନୁସାରେ ସେହି ସରଳା ଗ୍ରାମ୍ୟା ଆଭିରୀ ଗୋପୀମାନଙ୍କର ଏହି ବିରହିଣୀ ଜୀବନର କାରୁଣ୍ୟ, ଜ୍ଞାନଦୀପ୍ତ ଯଦୁବୀର ଉଦ୍ଧବଙ୍କର ହୃଦୟରେ ସୃଷ୍ଟି କରିଥିଲା ଅପୂର୍ବ ଭାବାନ୍ତର । ସେମାନଙ୍କର କୃଷ୍ଣାନୁରାଗର ଅଶ୍ରୁତ ପୂର୍ବ ତଥା ଅଭୂତପୂର୍ବ ପ୍ରଗାଢ଼ତାରେ ସେ ଦ୍ରବୀଭୂତ ହୋଇ ସେମାନଙ୍କର ସେହି ବିରହ ହୁତାଶନକୁ ପ୍ରଶମିତ କରିବାର ସକଳ ପ୍ରୟାସର ନ୍ୟୁନତା ଉପଲବ୍ଧି କରି ନିସ୍ତବ୍ଧ-ନିସ୍ପନ୍ଦ ଭାବରେ କେବଳ ସେମାନଙ୍କର କୃଷ୍ଣ ସ୍ମୃତି ରୋମନ୍ଥନର କରୁଣ ଗାଥାମାନ ଶ୍ରବଣ କରିଥିଲେ । ତାଙ୍କର ଦଶମାସ ଗୋକୁଳାବସ୍ଥାନ ମଧ୍ୟରେ କେବଳ ଗୋପୀମାନଙ୍କ ଉଦ୍ଦେଶ୍ୟରେ ଆଣିଥିବା କୃଷ୍ଣ ସନ୍ଦେଶ ବାଣୀକୁ ହିଁ ପାଥେୟ କରି ଗୋପୀମାନଙ୍କର କରୁଣ ଉଚ୍ଚବିଳାପ ସମୟରେ ସଂକୋଚର ସହ ସେ ବାରମ୍ବାର ଉଚ୍ଚାରଣ କରୁଥିଲେ,

> ''ଭବତୀନାଂ ବିୟୋଗେମେ ନହି ସର୍ବାତ୍ମନା କ୍ୱଚିତ,
>
> x x x
>
> ଅଲଭରାସାଃ କଲ୍ୟାଣ୍ୟୋ ମା଼ଽପୂର୍ମଦ୍‌ବୀର୍ଯ୍ୟଚିନ୍ତୟା ।''

ଏହି ପଦମାନ ଆବୃତ୍ତି କରି ସେ ସେମାନଙ୍କ ହୃଦୟ ବ୍ୟଥାକୁ ବହୁ ଭାବରେ କାଳକ୍ରମେ ଅର୍ଦ୍ଧଶମିତ କରାଇଥିଲେ । ସେହି ଜଗଦ୍‌ବନ୍ଦ୍ୟା ପ୍ରେମିକା ଶିରୋମଣିମାନଙ୍କର ପ୍ରେମନିଷ୍ଠାରେ ବିମୋହିତ ଉଦ୍ଧବ ସେମାନଙ୍କ ପାଦସ୍ପର୍ଶ କରି ପ୍ରଣାମ ଜଣାଇବାର ସାହାସ କରି ନପାରି ପର ଜନ୍ମରେ ଏହି ସୌଭାଗ୍ୟ ଲାଭ ନିମିତ୍ତ ବୃନ୍ଦାବନର ଲତାଗୁଳ୍ମ ଭାବରେ ଜନ୍ମ ନେବାର ସଂକଳ୍ପ କାମନା କରି କହିଥିଲେ,

> ''ଆସାମହୋ ଚରଣରେଣୁ ଜୁଷାମହଂ ସ୍ୟାଂ
>
> ବୃନ୍ଦାବନେ କମପି ଗୁଳ୍ମଲତୌଷଧିନାମ୍ ।'' ଇତ୍ୟାଦି

କିନ୍ତୁ ଦୀନକୃଷ୍ଣଙ୍କର ଉଦ୍ଧବ କିଂକର୍ତ୍ତବ୍ୟବିମୂଢ଼ ହୋଇ ଗୋପିମାନଙ୍କର ଏତାଦୃଶ ଅଭିବ୍ୟକ୍ତିମାନ ଶୁଣି ହର୍ଷ ସନ୍ତୋଷ ମନରେ ମଥୁରା ଯାଇ ଗୋକୁଳ କୁଶଳ ବାର୍ତ୍ତା ଜିଜ୍ଞାସୁ ଅପେକ୍ଷମାଣ କୃଷ୍ଣଙ୍କ ଠାରେ ଗୋପପୁରରେ ସୃଷ୍ଟି ହୋଇଥିବା ମହାବିଷାଦର ଏକ ବିସ୍ତୃତ ବିବରଣୀ ପ୍ରଦାନ କଲେ । ଶ୍ରୀମଦ୍ ଭାଗବତରେ ଉଦ୍ଧବ

ଠାରୁ କୁଶଳ ସମ୍ବାଦ ପାଇ ଶ୍ରୀକୃଷ୍ଣ ପ୍ରସନ୍ନ ହୋଇଥିବାର ସଂକ୍ଷିପ୍ତ ପଦଟିଏ ଥିବାବେଳେ ଦୀନକୃଷ୍ଣଙ୍କର ଉଦ୍ଧବ ପ୍ରଦତ୍ତ ଗୋପ ସନ୍ଦେଶ ଆହୁରି ଏକ ପ୍ରାଣସ୍ପର୍ଶୀ କବିତାର ଛାନ୍ଦ ସୃଷ୍ଟି କରିଅଛି । ଗୋକୁଳରେ ସୃଷ୍ଟି ହୋଇଥିବା କୃଷ୍ଣ ବିରହ ଜନିତ ଚରମ ଦୁର୍ଦ୍ଦଶାର ବିବରଣୀ ରୁ ହିଁ ଉଦ୍ଧବଙ୍କର ଦୀର୍ଘ ଅନୁଭବର ଗଭୀରତା ହୁଏ ବିଶଦଭାବେ ପ୍ରକଟିତ । ପ୍ରୟୋଜନଶୂନ୍ୟ ପ୍ରେମସାଧନାରେ ଐକାନ୍ତିକ ନିଷ୍ଠା, ସାଧୁତା ଓ ଆନ୍ତରିକତାର ଗଭୀରତା ହିଁ ବିରହ କାଳରେ ପ୍ରଣୟୀ ପ୍ରଣୟିନୀଙ୍କ ଚିତ୍ତରେ ସୃଷ୍ଟି କରେ ବିବିଧ ସାତ୍ତ୍ୱିକ ବିକାର । ତନ୍ମଧ୍ୟରେ ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ସ୍ୱରଭଙ୍ଗ, ବେପଥୁ, ବୈବର୍ଣ୍ଣ୍ୟ, ଅଶ୍ରୁ ଓ ପ୍ରଳୟାଦି ଅଷ୍ଟବିଧ ବିକାର ପ୍ରକାଶ ପାଏ ବୋଲି ଶାସ୍ତ୍ରଜ୍ଞ ମାନଙ୍କର ମତ । ସେହିପରି ବିପ୍ରଲମ୍ଭ ଶୃଙ୍ଗାର କ୍ରମେ କାରୁଣ୍ୟରେ ବିବର୍ତ୍ତିତ ହୋଇଯିବା ପରେ ବିରହୀ ବିରହିଣୀମାନଙ୍କ ଠାରେ ଦେଖାଯାଏ ଦଶବିଧ ଅବସ୍ଥା ଭେଦ; ଚିନ୍ତା ଜାଗୃତି, ଉଦ୍‌ବେଗ, କୃଶତା, ମାଳିନ୍ୟ, ପ୍ରଳାପ, ବ୍ୟାଧି, ଉନ୍ମାଦ, ମୂର୍ଚ୍ଛା ଓ ଅବଶେଷରେ ପରସ୍ପରରର ମିଳନର ଆଶା ନ ଦେଖି ମୃତ୍ୟୁ କବଳିତ ହୋଇଯାନ୍ତି ବୋଲି ପଣ୍ଡିତମାନଙ୍କର ମତ । ବ୍ରଜକାମିନୀମାନେ ଏପରି ବିବିଧ ଦଶାରେ ଥିଲେ ମଧ ତଥାପି କୃଷ୍ଣପ୍ରାପ୍ତିର କ୍ଷୀଣାଶା ହେତୁ ସେମାନେ ମୂର୍ଚ୍ଛା ପର୍ଯ୍ୟନ୍ତ ଅବସ୍ଥା ମାନ ପ୍ରାପ୍ତ ହୋଇ ମଧ ମୃତ୍ୟୁ କବଳିତ ହୋଇ ନାହାନ୍ତି ବୋଲି ପ୍ରକାଶ କରି ଉଦ୍ଧବ କହନ୍ତି,

''କେହି ବ୍ୟାଧିମନ୍ତ, କରିଛି ଅଷ୍ଟମ ଦଶା ଏମନ୍ତ,<br>
କେ ନବମରେ ଜଡ଼ତାକୁ ପାଇ<br>
କେବଳ ଅଛି ଅବନୀରେ ଶୋଇ ।''

ସେହିପରି କୃଷ୍ଣପ୍ରୀତିରେ ଅଧୀରା ଗୋପିମାନଙ୍କ ଠାରେ ସୃଷ୍ଟି ହୋଇଥିବା ସ୍ୱରଭଙ୍ଗ, ଅଶ୍ରୁ, ବୈବର୍ଣ୍ଣ୍ୟ, ପ୍ରଳାପାଦି ଦଶାରୁ ସେମାନଙ୍କୁ ଉପଶମିତ କରାଇବା ନିମିତ୍ତ ସେମାନଙ୍କର ପ୍ରିୟ ସଖୀମାନଙ୍କର ଉପଚାରରେ ବ୍ୟଗ୍ରତା ଓ ବ୍ୟାକୁଳତାଦିର କାବ୍ୟଯୁଗୀୟ ବିବୃତି ଦେଇ ସ୍ୱରଭଙ୍ଗ ଦଶାରେ ସେମାନେ କୃଷ୍ଣ ପ୍ରତ୍ୟାବର୍ତ୍ତନ ନିମିତ୍ତ ପ୍ରାଣମାତ୍ର ଧାରଣ କରି କୋଟି କୋଟି ପ୍ରଣତି ଜ୍ଞାପନ କରିଥିବାର ଉଲ୍ଲେଖ କରନ୍ତି । ସେମାନଙ୍କର କୃଷ୍ଣପ୍ରେମଘନ ଭାବାବିଷ୍ଟ ବିରହାବସ୍ଥାର ଯଥାସମ୍ଭବ ସମ୍ବାଦ ଜଣାଇଥିଲେ ମଧ ପ୍ରଥମରୁ ଉଦ୍ଧବ କହନ୍ତି,

''କି କହିବି ଗୋପୀମାନଙ୍କ କଥା<br>
କହିଲେ ଜାତ ହେବ ମହାବ୍ୟଥା ।''

କଂସ ନିଧନ ପରେ କଂସ ପକ୍ଷୀୟ ଅତିଶକ୍ତିଶାଳୀ ଶତ୍ରୁମାନଙ୍କର କବଳରୁ ଯଦୁ ଗଣ-ରାଜ୍ୟ ମଥୁରାକୁ ରକ୍ଷା କରିବାର ଗୁରୁତର ରାଜନୈତିକ ଦାୟିତ୍ୱ ଲିପ୍ତ

ରହିଥିବା ହେତୁ କୃଷ୍ଣଙ୍କର ଗୋପୀବିରହ ବେଦନାର ତୀବ୍ରତାର ପ୍ରାଞ୍ଜଳ ବର୍ଣ୍ଣନାମାନ ପରିଦୃଷ୍ଟ ନହେଲେ ମଧ ଦୀନକୃଷ୍ଣଙ୍କ ଭାଷାରେ,

''କହିଲେ ଶ୍ୱାସ ପକାଇ ମାଧମ
କହିଲ ଯେଉଁ କଥା ହେ ଉଦ୍ଧବ
କିଅତ ବିଚ୍ଛେଦ ଯୁଗ ଯାହାକୁ
କାଳେ ହେଲା ନାହିଁ ଭେଟି ତାହାକୁ
କଷ୍ଟ ଅବା କେତେ, କରତି ହେଲେ ମୋ ଆଶା କରତେ ।
କିରଣାମାଳୀ କିରଣ ଯେମନ୍ତ
କେବେ ହେଁ ନଛାଡ଼େ ମେରୁପର୍ବତ
କିଶୋରୀ ଗୋପୀଙ୍କଠାରେ ମୋ ମନ,
କରି ସେହି ରୂପେ ଅବଧାନ, ହେ ଉଦ୍ଧବ !''

ଏହି ସଂକ୍ଷିପ୍ତ ପଦରୁ ମଧ କିଶୋରୀ ଗୋପିକାଙ୍କ ବିରହ ଦାବାଗ୍ନିକୁ ହୃଦୟରେ ଗୋପନ ରଖି କୃଷ୍ଣ କିପରି ମଥୁରାରେ ଦୁଃସହ ଅନ୍ତର୍ବେଦନାରେ କାଳାତିପାତ କରୁଥିଲେ ତାହା ସହଜରେ ହୁଏ ଅନୁଭୂତ ।

ମଧ୍ୟଯୁଗୀୟ କାବ୍ୟଧାରାରେ ଦୀନକୃଷ୍ଣଙ୍କର ଏହି କାବ୍ୟ ବର୍ଣ୍ଣନା ବାହୁଲ୍ୟ, ଆଳଙ୍କାରିକତା, ଅତିରଂଜିତ ଶୃଙ୍ଗାରିକତା ଓ ମଙ୍ଗଳାଚରଣାଦି ବିଧି ବିଧାନ ନିଷ୍ଠତାରୁ କଦାପି ମୁକ୍ତ ନୁହେଁ । ପୁନଶ୍ଚ ଧର୍ମ-ଦର୍ଶନପ୍ରବଣ ଭାରତୀୟ ସମାଜରେ ମଧ୍ୟଯୁଗୀୟ ଓଡ଼ିଶାରେ କ୍ରମବର୍ଦ୍ଧିଷ୍ଣୁ ଗୋପୀଭାବ ପ୍ରଧାନ ବୈଷ୍ଣବଧର୍ମ ଦର୍ଶନର ରସାଳ ଚର୍ଚ୍ଚା ଲୋକଚିତ୍ତକୁ ଆକର୍ଷିତ କରୁଥିବାବେଳେ କବି ଦୀନକୃଷ୍ଣଙ୍କ ବ୍ୟକ୍ତିଗତ ଭକ୍ତିବିହ୍ୱଳତା ମଧ ଏହି କାବ୍ୟ ପରିସରରେ ସ୍ୱତଃ ପରିସ୍ଫୁଟନ ପାଠକ ଚିତ୍ତରୁ ଗୋପନ ରହି ନ ପାରେ । ସ୍ଥାନେ ସ୍ଥାନେ ମଧ କ୍ଲିଷ୍ଟାର୍ଥବାଚକ ଶବ୍ଦ ସମ୍ଭାର ଏହାର ବହୁ ଅଂଶର ଭାବୋପଲବ୍ଧିର ସୁଗମତାକୁ ଆହତ କରେ । ତଥାପି ଦୀନକୃଷ୍ଣ ହେଉଛନ୍ତି ଓଡ଼ିଆ ସାହିତ୍ୟରେ ବିରହ ପ୍ରଧାନ କାରୁଣ୍ୟ ଲାଞ୍ଛିତ ବିପ୍ରଲମ୍ଭ ଶୃଙ୍ଗାରର ପ୍ରଥମ ଓ ପ୍ରଧାନ କାବ୍ୟଶିଳ୍ପୀ । ବିରହିଣୀ ଗୋପୀମାନଙ୍କର ବିରହ ବେଦନା ହେଉଛି ସମଗ୍ର ବିଶ୍ୱର ପତି ପରିତ୍ୟକ୍ତା ପ୍ରେମିକାମାନଙ୍କର ମର୍ମବେଦନାର ଅବିମିଶ୍ର ସ୍ୱର । ଗୋପୀ ଓ କୃଷ୍ଣଙ୍କୁ ଦେବତା ସ୍ଥାନରେ ଏବଂ ସେମାନଙ୍କର ନିବିଡ଼ ପ୍ରେମକୁ ଅପ୍ରାକୃତ ଦିବ୍ୟ ବୋଲି କବି, ଦାର୍ଶନିକ ଓ ମନିଷୀମାନେ ଯେତେ ଯୁକ୍ତି ସିଦ୍ଧ ତତ୍ତ୍ୱ ଭାବରେ ଅଭିହିତ କରିଥିଲେ ମଧ ସ୍ୱୟଂ ନନ୍ଦ ଯଶୋଦା ଓ ଗୋପାଙ୍ଗନାମାନେ ମଧ ପ୍ରଥମରୁ ହିଁ ଏହା ଅସ୍ୱୀକାର କରିଛନ୍ତି । ଶ୍ରୀକୃଷ୍ଣଙ୍କର ଶୌର୍ଯ୍ୟ ଓ ପୌରୁଷ ଦେଖି ତାଙ୍କର ଏକାନ୍ତ ଅନୁରକ୍ତ ଉଦ୍ଧବ ତାଙ୍କୁ ପରମେଶ୍ୱର ବୋଲି ଗୋପପୁରରେ ପ୍ରତ୍ୟୟ ସୃଷ୍ଟିର ପ୍ରୟାସ କରିଥିଲେ ।

ଶୁକଦେବଙ୍କ ଗୋପାଙ୍ଗନାମାନେ ମଧ ଉଦ୍ଧବଙ୍କ ଉକ୍ତିକୁ ସଂପୂର୍ଣ୍ଣ ଉପେକ୍ଷା କରି ଦେଇଥିଲେ ବୋଲି ଏହି ଗାଥାର ଆଦିଉସ ଭାଗବତରେ କଥିତ ହୁଏ;

''ପୁନଃ ପୁନଃ ସ୍ମାରୟନ୍ତି ନନ୍ଦଗୋପସୁତଂ ବତ
ଶ୍ରୀ ନିକେତୈସ୍ତତ୍ପଦକୈର୍ବିସ୍ମର୍ତ୍ତୁଂ ନୈବ ଶକ୍ନୁମ୍,
ଗତ୍ୟା ଲଳିତୋଦାର ହାସ ଲୀଳାବଲୋକନୈଃ
ମାଧ୍ୱା ଗିରା ହୃତଧୀୟଃ କଥଂ ତଂ ବିସ୍ମରାମହେ ।''

ଯାହାକୁ ଆବାଲ୍ୟରୁ ଆଦରଯତ୍ନ କରି ଆସିଛୁଁ ଯାହା ସହିତ ମାନ ଅଭିମାନର ବହୁ ମନୋମାଳିନ୍ୟ ବାରମ୍ବାର ସୃଷ୍ଟି ହୋଇଛି, ଯାହାକୁ ଆମେ ଆମର ସଂପୂର୍ଣ୍ଣ ଭାବେ କାୟ, ମନ, ବାକ୍ୟ ଓ ହୃଦୟ ଦେଇସାରିଛୁ, ତାହାକୁ କଦାପି ମଣିଷ ବ୍ୟତୀତ ଦେବତା କୁହାଯାଇ ନପାରେ । ସେ ନନ୍ଦ ଯଶୋଦାଙ୍କର ପୁତ୍ର, ଏବଂ ଆମମାନଙ୍କର ପ୍ରାଣାଧିକ ପ୍ରିୟତମ ବୋଲି ଆମେ ତାଙ୍କୁ ଜାଣୁ । ତା'ର ଲାଳିତ୍ୟପୂର୍ଣ୍ଣ ଗତିଭଙ୍ଗୀ, ଲୀଳାୟିତ କଟାକ୍ଷ, ତା'ର ମର୍ମସ୍ପର୍ଶୀ ମନମୋହନ ହାସ୍ୟ ଓ ମଧୁମୟୀବାଣୀ ଆମର ବୁଦ୍ଧି ବୃତ୍ତିକୁ ହରଣକରି ନେଇଛି । ରସିକ ପ୍ରେମିକ ସେହି ସାଧାରଣ ମଣିଷଟିର ମଣିଷ ପଣିଆକୁ କିପରି ଆମେ ଭୁଲିଯାଇ ପାରିବୁ ?'

ତେଣୁ ସେହି ରକ୍ତମାଂସଧାରୀ ସାଧାରଣ ଗୋପାଳ କୃଷ୍ଣ ଓ ତା'ଙ୍କର ବିରହିଣୀ ପ୍ରେମିକାମାନଙ୍କର ପ୍ରେମର କାହାଣୀ ହେଉଛି ବିଶ୍ୱର ଯେକୌଣସି ଦେଶର ପ୍ରେମିକ ପ୍ରେମିକାମାନଙ୍କର ପ୍ରୟୋଜନ ରହିତ ନିଷ୍କପଟ ପ୍ରେମର ସୁମଧୁର ଗାଥା । କବି ଦୀନକୃଷ୍ଣଙ୍କ କାବ୍ୟରେ ସେମାନେ ସେହିପରି ନୈସର୍ଗିକ ଭାବରେ ହିଁ ଅନ୍ତର ଖୋଲି ଗୋପନ କଥାମାନ ପରସ୍ପର ଆଳାପ କରନ୍ତି, ହାସପରିହାସ କରନ୍ତି, କୌତୁକ କ୍ରୀଡ଼ା କରନ୍ତି, ସୁମଧୁର ବକ୍ରୋକ୍ତିରେ ମର୍ମକଥା କୁହାକୋହି ହୋଇ ପରସ୍ପରର ମର୍ମସ୍ଥଳକୁ ଆହତ କରନ୍ତି । ସେମାନଙ୍କର ସମ୍ଭୋଗ ଲୀଳାରେ ଯେପରି ଫୁଟିଉଠେ ଅନୁରାଗ, ଆକର୍ଷଣ, ମିଳନୋତ୍କଣ୍ଠା, ମାନ, ଚାଟୁ, ମାନଭଞ୍ଜନ, ମିଳନ, ସମ୍ଭୋଗ, ବିଚ୍ଛେଦ ଆଶଙ୍କା, ଆଶା, ପୁଲକ, ହର୍ଷ, କୌତୁକ, ତୃପ୍ତି, କ୍ଳାନ୍ତି ଅବସାଦର ସହସ୍ର ବୈଚିତ୍ର୍ୟ ସେହିପରି ବିରହରେ ମଧ ଦେଖାଦିଏ, ସ୍ମୃତିଚାରଣ, ଗୁଣକୀର୍ତ୍ତନ, ବେପଥୁ, ରୋମାଞ୍ଚ, ସ୍ୱରଭଙ୍ଗ-ବିଳାପ ଓ ପ୍ରଳାପ-ପ୍ରଳମ୍ବର ବେଦନାସିକ୍ତ ଚିତ୍ତଗହନରେ ଅବିଚ୍ଛିନ୍ନ ମିଳନର ସୀମାନ୍ତହୀନ ସାତ୍ତ୍ୱିକ ବିକାର । ମିଳନରେ ପ୍ରଣୟୀ ପ୍ରଣୟିନୀ ପରସ୍ପର ସାନ୍ନିଧ ଲାଭକରି ଚକ୍ଷୁ କର୍ଣ୍ଣାଦି ସହିତ ରୂପ, ଶବ୍ଦାଦିର ସାମୀପ୍ୟ ଉପଭୋଗ୍ୟ କରନ୍ତି, କିନ୍ତୁ ଚିତ୍ତ ବୃତ୍ତି ରହେ ଉପେକ୍ଷିତ । ବିରହ ଦଶାରେ ହୁଏତ ଚକ୍ଷୁଶ୍ରବଣ ନାସିକାଦିଙ୍କ ବିଷୟ ଗୁଣାଦିର ବିରହ ହେଲେ ହେଁ ଚିତ୍ତବୃତ୍ତିର ଚେତନାରେ ରୂପଗୁଣାଦିର ଅତ୍ୟନ୍ତ ପ୍ରଗାଢ଼ତା ହୋଇଥାଏ ସଂସ୍ଥାପିତ । ରୂପଗୁଣାଦି ସହିତ ସ୍ମୃତି ଚାରଣରେ ପରସ୍ପରକୁ ଅନୁଧାନର ନିଗୂଢ଼ କାମନାରେ ନିତ୍ୟ ପ୍ରବୃତ୍ତ ହୋଇ ପ୍ରେମ

ସାଧନାରେ ସମାହିତ ହୁଏ ପୂର୍ଣ୍ଣ ସାର୍ଥକତା । ତେଣୁ ପଣ୍ଡିତମାନେ କହନ୍ତି 'ନବିନାବିପ୍ରଲମ୍ଭେନ ସମ୍ଭୋଗଃ ପୁଷ୍ଟିମଶ୍ନୁତେ' ।

ଉତ୍କଳୀୟ କାବ୍ୟଧାରାରେ ମିଳନ ବିରହର, ବିପୁଳ ବୈଚିତ୍ର୍ୟ ସନ୍ଧାନରେ ବ୍ୟାପୃତ ଥିବା ପ୍ରତିଭାଧର କବି ଦୀନକୃଷ୍ଣ ତେଣୁ ଗୋପୀକୃଷ୍ଣଙ୍କର ଏହି ଶାଶ୍ୱତ ପ୍ରଣୟ ଗାଥାକୁ ଉପଜୀବ୍ୟ କରି ରଚନା କରିଥିବା ଏହି କାବ୍ୟରେ ପ୍ରେମସାଧନାର ଯେଉଁସବୁ ନିତ୍ୟ ନୂତନ ଅନୁଭୂତି ବୈଚିତ୍ର୍ୟର ଆଲେଖ୍ୟ ପ୍ରଦାନ କରନ୍ତି ତାହା ସଂପୂର୍ଣ୍ଣ ଭାବରେ ଥିଲା ଓଡ଼ିଆ ସାହିତ୍ୟରେ ଅନାସ୍ୱାଦିତ । ଓଡ଼ିଆ କାବ୍ୟଧାରାରେ ସେ ଏହି ଅପ୍ରକଟ ରହିଥିବା ଗୁପ୍ତ ମଧୁପେଟିକାରୁ ମଧୁ ନିଷାସନ କରିଆଣି ସୁମଧୁର ରସ ସଂପଦର ନୂତନ ନିର୍ଝରିଣୀଟିଏ ସଂଯୋଜିତ କରିଦେଲେ, ଯାହାକୁ ପରିପୁଷ୍ଟ କଲେ ପରବର୍ତ୍ତୀ କାଳରେ ଅଭିମନ୍ୟୁ, ଭକ୍ତଚରଣ, କବିସୂର୍ଯ୍ୟ ବଳଦେବ, ପିଣ୍ଡିକ ଶ୍ରୀଚନ୍ଦନ, ଦୀନବନ୍ଧୁ ହରିଚନ୍ଦନ, ଗୋପାଳକୃଷ୍ଣ, ବନମାଳୀ ଗୌରଚରଣାଦି ଶତଶତ କାବ୍ୟଶିଳ୍ପୀ । ଦୀନକୃଷ୍ଣ ଥିଲେ କୃଷ୍ଣଭକ୍ତିର ସାଧକ ଓ ଉପାସକ । ତେଣୁ କାବ୍ୟର ବହୁ ସ୍ଥଳରେ ଭକ୍ତକବି ଦୀନକୃଷ୍ଣଙ୍କର ଭକ୍ତିର ଦୈନ୍ୟ-ନିବେଦନ ସ୍ୱାଭାବିକ ଭାବରେ କବିତାରେ ପରିସ୍ଫୁରିତ । ଭକ୍ତ ଭାବରେ ସେ କୃଷ୍ଣ ସଂଦେଶବାହୀ ଉଦ୍ଧବଙ୍କ ପରି ଶ୍ରୀକୃଷ୍ଣଙ୍କ ଅଦ୍ଭୁତ କର୍ମମାନ ଦେଖି ତାଙ୍କୁ ପରମେଶ୍ୱର ଭାବରେ ଭକ୍ତି ନିବେଦନ କରିଥିଲେ ମଧ କବି ଦୀନକୃଷ୍ଣ ଭାବରେ ଗୋପୀ ଗୋପାଳଙ୍କ ମଧରେ ଆତ୍ମୀଭୂତ ହୋଇ ଏକାନ୍ତ ଆତ୍ମୀୟ ସ୍ୱଜନ ମନୁଷ୍ୟ ଜ୍ଞାନରେ କରନ୍ତି ତାଙ୍କର ଗୁଣକୀର୍ତ୍ତନ । ଗୋପୀକୃଷ୍ଣଙ୍କ ପ୍ରଣୟ ଲୀଳାରେ ନିହିତ ରହିଛି ଯେଉଁ ସାର୍ବଜନୀନ ଓ ସାର୍ବକାଳୀନ ଶାଶ୍ୱତ ମାନବୀୟ ସ୍ୱର ତା'ର ନୈସର୍ଗିକ ମୂର୍ଚ୍ଛନାକୁ କାବ୍ୟଛନ୍ଦରେ ଉଚ୍ଛୋଳିତ କରି ସେ ହୋଇଛନ୍ତି ଶତାବ୍ଦୀ ପ୍ରବାହର ପ୍ରତିଲୋମରେ ଉତ୍କଳୀୟ ସାରସ୍ୱତ ସରଣୀରେ ସର୍ବକବି ଅନୁସୃତ ଓ ସର୍ବଜନ ବନ୍ଦିତ ଅମର କାବ୍ୟ ବିନ୍ଧାଣୀ । ମଧୁର ରସାତ୍ମକ ଏପରି ଏକ କାବ୍ୟ ରଚନାରେ ରସ ସୌନ୍ଦର୍ଯ୍ୟ ସଂପାଦନଗତ ପୂର୍ଣ୍ଣତା ଦିଗରୁ ଦୀନକୃଷ୍ଣଙ୍କର ଶିଳ୍ପ ସାଧନାରେ ନିଜସ୍ୱତାର ଲାଞ୍ଛନ ପାଇଁ ସେ ହେବେ ଚିର ଅବିସ୍ମରଣୀୟ ।



ନବମ ପରିଚ୍ଛେଦ

# ରୂପାୟନ କଳା

## ୧- ପ୍ରାକୃତିକ ଛବି ବିନ୍ୟାସ :

ପାତ୍ରପାତ୍ରୀମାନଙ୍କୁ ଅବଲମ୍ବନ କରି ଗାଥା, ଉପାଖ୍ୟାନ ବା ଘଟଣା ମାନଙ୍କର ଚିତ୍ରଣ କରାଯିବା ବେଳେ ପ୍ରାକୃତିକ ଓ ତା'ର କମନୀୟ ପରିବେଶମାନଙ୍କର ପ୍ରସଙ୍ଗୋଚିତ ରୂପାୟନ ଦୃଷ୍ଟିରୁ ପୁରାତନ ଓଡ଼ିଆ ସାହିତ୍ୟ କଦାପି ଦରିଦ୍ର ନୁହେଁ । ପୁରାଣମାନଙ୍କ ପରି ବିରାଟ ଗ୍ରନ୍ଥ ଅଥବା କ୍ଷୁଦ୍ର କ୍ଷୁଦ୍ର କବିତାମାନଙ୍କରେ ମଧ୍ୟ ସ୍ରଷ୍ଟାମାନେ ପ୍ରକୃତିକୁ ଆପଣାର ଅତ୍ୟନ୍ତ ପ୍ରିୟତମ ସାଥୀରୂପେ ସର୍ବତ୍ର ସହ୍ଯାର କରି ଆସିଛନ୍ତି । ବିଶେଷତଃ କାବ୍ୟ ଯୁଗରେ ପ୍ରାକୃତିକ ଦୃଶ୍ୟମାନଙ୍କର ସରସ କମନୀୟ ବର୍ଣ୍ଣନା ଅତ୍ୟନ୍ତ ଆକର୍ଷଣୀୟ ସାରସ୍ୱତ ପଦାବଳୀମାନଙ୍କ ସୃଷ୍ଟିକୁ ଉତ୍ସାହିତ ଓ ଅନୁପ୍ରାଣିତ କରି ଆସିଛନ୍ତି । କବି ଶାରଳା, ବଳାରାମ ବା ଅଚ୍ୟୁତାନନ୍ଦଙ୍କର ପୁରାଣ ରୀତିର ବର୍ଣ୍ଣନାମାନଙ୍କୁ ବାଦଦେଲେ କବି ଅର୍ଜୁନ ଦାସ, ବିଷ୍ଣୁଦାସ, ନରସିଂହ ସେଣ, କାର୍ତ୍ତିକ ଦାସ, ଶିଶୁ ଶଙ୍କର ଦାସ ବା ଧନଞ୍ଜୟ ପ୍ରଭୃତି କବିମାନଙ୍କର କାବ୍ୟଗୁଡ଼ିକ ଏହି ପ୍ରାକୃତିକ ଦୃଶ୍ୟାବଳୀମାନଙ୍କର ବର୍ଣ୍ଣନା ଅପୂର୍ବ ରୂପଶ୍ରୀରେ ଶୋଭନୀୟ ହୋଇ ପାରିଛନ୍ତି । ଦୀନକୃଷ୍ଣଙ୍କ ପ୍ରକୃତି ଚିତ୍ରଣ ଏହି ପରଂପରାର ବୈଚିତ୍ର୍ୟରେ ଆଣେ ଅଭିନବତ୍ୱ । ଉଷା ପ୍ରଦୋଷାଦିର ସାଧାରଣ ଦୃଶ୍ୟ ଓ ଘଟଣାମାନଙ୍କର ବର୍ଣ୍ଣନା ସହିତ ନାୟକ ନାୟିକାମାନଙ୍କର ହାବଭାବାଦି ପାଇଁ ଏସବୁ ଉପାଦାନ ଉଦ୍ଦୀପନ-ବିଭାବର ଭୂମିକା ନିର୍ବାହ କରନ୍ତି । ଏହିସବୁ ବର୍ଣ୍ଣନାକୁ ସରସ ଓ ଚିତ୍ତଉଲ୍ଲସିତ କରେ ପ୍ରାୟ ପ୍ରତ୍ୟେକଟି ବିଭାବ ପାଇଁ ଦୀନକୃଷ୍ଣଙ୍କର ସୁନିର୍ବାଚିତ ଉପମା ସମାବେଶ । ବିଶେଷତଃ ତାଙ୍କର ଉପମାମାନ ପାରମ୍ପରିକ ପ୍ରସିଦ୍ଧି ମାନଙ୍କରୁ ଗୃହୀତ ହେବା ସଂଗେ ସଂଗେ ସାଧାରଣ ପରିଚିତ ପରିବେଶ ମାନଙ୍କରୁ ମଧ୍ୟ ସଂଚୟିତ । ଦ୍ରୁତ ପଦଚାଳନାକୁ 'ସଂଗ୍ରାମ ଭୂଇଁ ଅଶ୍ୱବତ' ବାତଚକ୍ରକୁ 'କୁଶଳୀ ନର୍ତ୍ତକୀ ଭ୍ରମରୀ ପରାୟେ', ଗ୍ରୀଷ୍ମକାଳୀନ ନଦୀଧାରର କୃପଣତାକୁ କାନ୍ତବିରହିଣୀର କୃଶତା ପ୍ରଭୃତି ସହିତ ତୁଳନା କରନ୍ତି । ଯଥା,

''କୁରଙ୍ଗନୟନା ନୟନତରଙ୍ଗ ବଳି ମୃଗତୃଷ୍ଣା ଦିଶିଲେ,
କଳାମେଘ କୋଳେ ବିଜୁଳି ପରାୟେ ବନେ ବନେ ଅଗ୍ନି ହସିଲେ ।''

ବସନ୍ତ ପ୍ରକୃତିର ଅପରୂପ ଲାବଣ୍ୟରେ ଭାରତର କବିକୁଳ ଆତ୍ମହରା ହୋଇ ବିପୁଳ କାବ୍ୟ କବିତା ସୃଷ୍ଟିରେ ଲଭି ଆସିଛନ୍ତି ଆତ୍ମପ୍ରସାଦ । ମାଘ, କାଳିଦାସ ଓ ଶ୍ରୀହର୍ଷ ପ୍ରଭୃତିଙ୍କର ପ୍ରସିଦ୍ଧି ବହୁଭାବରେ ବସନ୍ତ ବର୍ଣ୍ଣନା ଦ୍ୱାରା ହୋଇଛି ପରିପୁଷ୍ଟ। ଓଡ଼ିଆ କାବ୍ୟଧାରାରେ ଏହି ବସନ୍ତ ବର୍ଣ୍ଣନାର ଅନ୍ୟତମ ସମର୍ଥ ଶିଳ୍ପୀ ତାଙ୍କର ପ୍ରଣୟୀ ପ୍ରଣୟିନୀଙ୍କର ପ୍ରଣୟାନୁରାଗକୁ ଶାଣିତ ଓ ଶକ୍ତିଶାଳୀ କରାଇବା ଅଭିପ୍ରାୟରେ ଋତୁରାଜ ବସନ୍ତ କାଳୀନ ବନଉପବନର ସୁଷମାକୁ କମନୀୟ ଶ୍ଳୋକ ପଂକ୍ତିମାନଙ୍କରେ କରନ୍ତି ରୂପାୟିତ । ସତେ ଯେପରି ଏହି ବସନ୍ତଶୋଭା ହିଁ ସେହି ପାତ୍ରପାତ୍ରୀମାନଙ୍କୁ ବାଗ୍‌ବିଳାସର ଚାତୁରୀ ଶିକ୍ଷା ଦେଇଛି । ବସନ୍ତ ସଖା କନ୍ଦର୍ପର କୋଦଣ୍ଡ ଟଙ୍କାର ସେମାନଙ୍କୁ କରିଦେଇଛି ଉନ୍ମତ୍ତ । ପୁଷ୍ପସମ୍ଭାର ଦେଖି ସେହି ରସବତୀ ତରୁଣୀଙ୍କ ମନରେ ସୃଷ୍ଟି ହୋଇଚି ଦ୍ରୁତ ବିବିଧ ଭାବାନ୍ତର । ଏହି ନବ ପ୍ରସ୍ଫୁଟିତ କୁସୁମମାନଙ୍କର ପ୍ରଭାବ ଓ ପ୍ରତିକ୍ରିୟା ମାନ ବର୍ଣ୍ଣନ ପ୍ରସଙ୍ଗରେ ପରସ୍ପର ରସାଳ ଆଳାପ କରି କହନ୍ତି,

> ''କଉଁ ଗୋପୀ ଆସି ବୋଲଇ ଗୋ ସଖି ଦେଖ ଦେଖ ଏ ନାଗେଶ୍ୱର,
> କାନ୍ତବିଚ୍ଛେଦରେ ବିରହିଣୀଠାରେ କେବଳ ହୋଏ ନାଗେଶ୍ୱର ।
> କନ୍ଦର୍ପ, କରତଟି ଏହି କେତକୀ,
> କରତି ବିରହୀ ଅଙ୍ଗପ୍ରାଣ ନେବା କଥା ହିଁ ଏହାକୁ କେତେ କି ?''

> ''କୁସୁମ ଉତ୍ତମବାସ ମନୋରମ ନାମମାତ୍ରକ ଛୁରୀ ଅନା,
> କର୍ଣ୍ଣପଥେ ଶୁଣି ପ୍ରବାସ ରମଣୀମାନେ ହୁଅନ୍ତି ଛନ୍ନମନା,
> କୃଷ୍ଣରେ, କୃଷ୍ଣସମ ଦେଖ ତମାଳ,
> କାନ୍ତ ବିୟୋଗରେ ବିରହ ଭୋଗରେ ପ୍ରତେ ହୋଏ କାମତମାଳ ।''

ସେହିପରି ପଳାଶ, ରସାଳ, କରୁଣା, ମାଧବୀ, ସୁନାରୀ, ନିଆଳୀ, ଅଶୋକ, ପୁନ୍ନାଂଗ ଆଦି ପୁଷ୍ପମାନଙ୍କର ନାମ ମଧ୍ୟରେ ଥିବା ଅର୍ଥ ଅର୍ଥାନ୍ତର କରି କବି ସେମାନଙ୍କର ଶୃଙ୍ଗାରୀ ପ୍ରଭାବମାନଙ୍କୁ ଭାବମଞ୍ଜୁଳ ପଂକ୍ତିମାନଙ୍କରେ ଚିତ୍ରଣ କରିଥାନ୍ତି । ଅନୁରୂପ ଚିତ୍ରଣ କଳାର ପାରଦର୍ଶିତା ଉପେନ୍ଦ୍ର ଭଞ୍ଜଙ୍କ 'ଲାବଣ୍ୟବତୀ' ପ୍ରଭୃତି କାବ୍ୟମାନଙ୍କରେ ମଧ୍ୟ ସୁଲଭ । କାମ ଉଦ୍ଦୀପକ ବର୍ଷାଋତୁର ବର୍ଣ୍ଣନାରେ କବି ସାଧାରଣ ଅବସ୍ଥା ଓ ଦୃଶ୍ୟମାନଙ୍କର ବର୍ଣ୍ଣନା କ୍ରମେ ତରୁଣ ତରୁଣୀମାନଙ୍କ ଚିତ୍ତ ଗହନରେ ସୃଷ୍ଟି ହୋଇଥିବା ଶୃଙ୍ଗାରୀ ଭାବମାନଙ୍କୁ ଉଦ୍‌ଘାଟିତ କରାଇ ଅଛନ୍ତି । ଏଥିରେ କାବ୍ୟଯୁଗର ସାଧାରଣ ପ୍ରବୃତ୍ତି ପ୍ରତିଫଳିତ ରହିଥିଲେ ମଧ୍ୟ ଦୀନକୃଷ୍ଣଙ୍କର ସ୍ୱକୀୟ କାବ୍ୟ କୌଶଳ ଏଥିରେ ପରିସ୍ଫୁଟ ଅଛି । ବହୁ କମନୀୟ ପଦ ମଧ୍ୟରେ ଦୀନକୃଷ୍ଣ ବିରହୀ ପ୍ରବାସୀମାନଙ୍କର ପ୍ରିୟା ସ୍ମରଣ, କାମିନୀମାନଙ୍କର ରମେଣେଚ୍ଛା, ସ୍ୱୟଂ ଦୂତୀକା ପରି ପରପୁରୁଷ ଠାରେ ପ୍ରୀତି ନିବେଦନ ଓ ସଂମ୍ଭୋଗ, ପ୍ରବାସୀ କାନ୍ତର ବିଳମ୍ବିତ ଘରବାହୁଡ଼ାରେ ବିରହିଣୀ କାନ୍ତାର କଠିନ ମାନ, କାନ୍ତର ଦୈନ୍ୟ ଓ ଚାଟୁ, ଭିନ୍ନ ଭିନ୍ନ ଦମ୍ପତିଙ୍କର ବିଭିନ୍ନ ସମ୍ଭୋଗ ଚେଷ୍ଟା ଓ ମିଳନାଦିକୁ କବି ଚମତ୍କାର

ବ୍ୟଞ୍ଜନା ଦେଇ ଶ୍ଳେଷୋକ୍ତି, ବକ୍ରୋକ୍ତି ଓ ଧ୍ୱନି ବ୍ୟଞ୍ଜିତ ପଦମାନଙ୍କରେ ପ୍ରକାଶ କରିଛନ୍ତି । ଗୋଟିଏ ଅତ୍ୟନ୍ତ ଲୋକପ୍ରିୟ ଉକ୍ତିରେ କବି ଲେଖିଛନ୍ତି;

''କରନ୍ତେ ଦିନେ ଦିନେ ଦୁର୍ଦ୍ଦିନ କଲି ନୋହଇ ରଜନୀ ଦିନ
 କୁସୁମ ଗନ୍ଧ ଘେନି ବହଇ ମନ୍ଦ ପବନ ଯେ,
କୁଧର ଶିରୁଁ ନିର୍ଝର ଝରେ ମହୀମଣ୍ଡଳ କର୍ଦ୍ଦମ କରେ
 ଚାଲନ୍ତି ନାହିଁ ଅତି ପ୍ରଖରେ ପଥିକ ଜନେ ହେ
 କାହା ଚରଣ ଖସେ, କେ ଦେଖି ହସେ ଯେ,
 କଉଁ ପଥିକ ନଦୀ ତଟରେ ବସେ ଯେ,
କରଇ ଚିନ୍ତା ତରଣୀ ପାଇଁ କଉଁ ତରୁଣୀ ପଚାରେ ଯାଇଁ
 କେମନ୍ତ ହୋଇଯିବ ପୂରିଛି ଏ ଘନରସେ ଯେ,
କୁମ୍ଭ ଭେଳାରେ ହୁଅନ୍ତ ପାରି ତାହିତ ଏଥି ନାହାନ୍ତି କରି
 ମୋହୋ ନାୟକ ନାହାନ୍ତି ଯାଇଛନ୍ତି ସେ ପାରି ଯେ,
କରନ୍ତେ ଅବା ଥିଲେ ଉପାୟେ, ଏବେ ଯାଅଯା ନଗର ଯାଏ
 ଦେଖୁ ତ ଅଛ ଆସୁଛି ଅନ୍ଧକାର ଶର୍ବରୀ ଯେ,
 କହେ ଚତୁର ବର ପ୍ରତି ଉତ୍ତର ଯେ,
 କଲ ମୋ ଠାରେ ତୁମ୍ଭେ କି ଉପକାର ଯେ,
କହିଲ ଯଉଁ କୋମଳବାଣୀ, କୃତାର୍ଥ ହେଲି କର୍ଣ୍ଣରେ ଶୁଣି
 କେବଳ ଆଜ୍ଞୁ କିଣିଲା ପ୍ରାଣୀ ହେଲି ତୁମ୍ଭର ଯେ ।''

ଏପରି କାକୁବାଣୀରେ ଉଭୟ ନିଜ ନିଜର କାମାଭିଳାଷ ଚରିତାର୍ଥ କରି ପ୍ରାତଃ କାଳକୁ କୁମୁଦ ଭୃଙ୍ଗ ପରାୟେ ପରସ୍ପରକୁ ତ୍ୟାଗକଲେ । କାରଣ ପ୍ରଭାତରେ ନିଜ ନାୟକ ନଦୀ ଆରପାରକୁ ଫେରି ଆସିବାର ସଂଭାବନା ଥିଲା । ଏପରି ବହୁ ମନୋଜ୍ଞ ପଦମାନଙ୍କରେ କବି ବର୍ଷାଋତୁରେ କାମୀକାମିନୀମାନଙ୍କର ସମ୍ଭୋଗ ବିଳାସ ଚତ୍ରମାନ ବିପୁଳ ଆକର୍ଷଣୀୟ ବକ୍ରୋକ୍ତି ମାନଙ୍କରେ ପ୍ରକାଶ କରିଛନ୍ତି । ଅବଶ୍ୟ ଏପରି ଅନୁରାଗ ବର୍ଣ୍ଣନାମାନ ଗାଥା ସପ୍ତଶତୀ, ଚୌରପଞ୍ଚାଶିକା, ଆର୍ଯ୍ୟାସପ୍ତଶତୀ ପ୍ରଭୃତି ସଂସ୍କୃତ ରୂପାନ୍ତରିତ ପ୍ରାକୃତ ଗ୍ରନ୍ଥମାନଙ୍କରେ ବହୁଳ ପରିଦୃଷ୍ଟ । କିନ୍ତୁ ଓଡ଼ିଆ ଭାଷାରେ ସେ ସବୁର ଭାବ ଆହରଣ କରି ନିଜସ୍ୱ ଶୈଳୀରେ କାବ୍ୟ ପରିସରରେ ସୁସଂଗତ ଭାବରେ ପରିବେଷଣ କରି ଓଡ଼ିଆ ପାଠକ ସମାଜକୁ ତା'ର ରସାସ୍ୱାଦନର ସୁଯୋଗ ଦେଇଛନ୍ତି ପ୍ରଥମେ କବି ଦୀନକୃଷ୍ଣ ।

ଦୀନକୃଷ୍ଣଙ୍କର ପ୍ରକୃତି ଚିତ୍ରଣ ରୀତିର ସାମଞ୍ଜସ୍ୟ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ପ୍ରଭୃତି ବହୁ ମଧ୍ୟଯୁଗୀୟ କବିମାନଙ୍କର କାବ୍ୟରେ ମଧ୍ୟ ପ୍ରତିଫଳିତ ଥିବାର ପରିଦୃଷ୍ଟ ହୁଏ । ଏପରିକି କବିବର ରାଧନାଥ, ଭକ୍ତକବି ମଧୁସୂଦନ, ଗଙ୍ଗାଧର ମେହେର ପ୍ରଭୃତି ଆଧୁନିକ ଯୁଗର କବିମାନଙ୍କର କବିତାରେ ଦୀନକୃଷ୍ଣଙ୍କର ବର୍ଣ୍ଣନା ଓ ପ୍ରକୃତିରେ

ମାନବୀୟ ପ୍ରବୃତ୍ତିମାନଙ୍କର ଆରୋପ ବ୍ୟାପକ ଭାବରେ ଅନୁଭୂତ ହୋଇଥାଏ । ଏପରି ଏକ ଚିତ୍ରଦେଇ କବି ଦୀନକୃଷ୍ଣ ଲେଖିଛନ୍ତି;

> ''କୁସୁମିତ ବଲ୍ଲରୀ ପବନେ ଚଳେ,
> କମଳ ପ୍ରଫୁଲ୍ଲିତ ହେଉଛି ସଳେ କି,
> କଉଁ ଲତାରୁ ଫୁଲ ପାଖୁଡ଼ା ଖସେ,
> କୁସୁମ ବରଷିଲା ପରାୟେ ଦିଶେ ସେ,
> କଉଁ ବଲ୍ଲରୀ ଫଳେ ନମ୍ରତା ହୋଇ,
> କୃଷ୍ଣ ଗୋପିଙ୍କି ନମସ୍କାର କରଇ ଯେ ।
>
> କମନୀୟ ଦିଶଇ ତରୁ ଉପରେ,
> କାନ୍ତା ସୁବେଶ ଯେହ୍ନେ କାନ୍ତ ଅଂଗରେ ସେ ।'' ଇତ୍ୟାଦି ।

'ରସକଲ୍ଲୋଳ' ଓ ଜଗମୋହନ ଛାନ୍ଦରେ ବର୍ଣ୍ଣିତ ପ୍ରାକୃତିକ ଶୋଭା ସଂପଦମାନଙ୍କର୍ ଏପରି ବହୁ ସମାବେଶ ଓଡ଼ିଆ କାବ୍ୟଧାରାରେ ଏକ ଏକ ନୂତନ ବିଭାବର ସୂତ୍ରପାତ କରିଛନ୍ତି ।

## ୨- ବର୍ଣ୍ଣନା ବିଳାସ :

ମଧ୍ୟଯୁଗର କାବ୍ୟଧାରାକୁ ବୈଚିତ୍ର୍ୟ ମଣ୍ଡିତ କରିଛି ବହୁ ବର୍ଣ୍ଣରଂଜିତ ବର୍ଣ୍ଣନା ସମ୍ଭାର । ପ୍ରାକୃତିକ ପରିବେଶ ପରି ବାଗ୍‌ବିଳାସ, ବେଶ-ଭୂଷଣ, ମାନସିକ କ୍ରିୟା ପ୍ରତିକ୍ରିୟା, ମିଳନ-ସମ୍ଭୋଗ, ବିରହ ବ୍ୟଥା ଓ ବିବିଧ ଚେଷ୍ଟାମାନଙ୍କର ଲୋଭନୀୟ ଚିତ୍ର କେବଳ ମଧ୍ୟଯୁଗୀୟ ରୀତିକାବ୍ୟରୁ ହିଁ ସୁଲଭ ହେଲା । ଏସବୁର ପୃଥୁଳ ଅତିରଂଜିତ ପାରଂପରିକ ବର୍ଣ୍ଣନା ପ୍ରାୟ ସର୍ବତ୍ର ପରିଦୃଷ୍ଟ ହେଲେ ମଧ ପ୍ରତ୍ୟେକ କାବ୍ୟ ଶୈଳୀ ଓ ଶିଳ୍ପକଳାରେ ପ୍ରକାଶ ପାଇଛି ପ୍ରତ୍ୟେକ ସ୍ରଷ୍ଟାର ନିଜସ୍ୱତାର ସ୍ୱାକ୍ଷର । ବିଶେଷତଃ ସମଗ୍ର ବର୍ଣ୍ଣନାର କେନ୍ଦ୍ରବିନ୍ଦୁ କେବଳ ଶୃଙ୍ଗାରାଭିମୁଖୀ ହେଲେ ବି ବେଳେବେଳେ ସାଧାରଣ ଲୋକ ସମାଜର ଚରିତ୍ର ଓ ରୀତି ତହିଁରୁ ଏକାନ୍ତ ଅଲଭ୍ୟ ନୁହେଁ । ଦୀନକୃଷ୍ଣଙ୍କ ରୂପାୟନ କଳାରେ ନିଜସ୍ୱ ଚାତୁରୀ ଓ ଶିଳ୍ପ କୌଶଳ ତାଙ୍କୁ ଜଣେ ସ୍ୱତନ୍ତ୍ର ଶିଳ୍ପୀଭାବେ ଚିହ୍ନିତ କରାଇଦିଏ । ରସକଲ୍ଲୋଳରେ କୃଷ୍ଣଙ୍କର ବାଲ୍ୟକ୍ରୀଡ଼ା, କୈଶୋର ବିଳାସ, ଗୋଗୋଷ୍ଠରେ ଗୋଚାରଣର ବେଶଭୂଷା ଓ ଶିଙ୍ଗାମୂରଲୀ ବାଦ୍ୟ ସହିତ କ୍ରୀଡ଼ା ବିଳାସ, ଅଥବା ରାକ୍ଷସ ସଂହାର ଓ ଯୁଦ୍ଧ କୌଶଳାଦିର ବର୍ଣ୍ଣନା ଯେପରି ଆକର୍ଷଣୀୟ ସେହିପରି ଗୋପୀମାନଙ୍କର କାମଚେଷ୍ଟା, ଗତିବିଳାସ, ରୂପକାନ୍ତି, ସମ୍ଭୋଗ ଉଲ୍ଲାସ, ବାକ୍‌ଚାତୁରୀ ଓ ବକ୍ରୋକ୍ତି ପ୍ରଭୃତିର ଅସାମାନ୍ୟ ଶିଳ୍ପୀ ହେଉଛନ୍ତି ଦୀନକୃଷ୍ଣ । ତାହାଛଡ଼ା ତାଙ୍କର ଉପମା, ଅନୁପ୍ରାସ, ଉପେକ୍ଷା, ଶ୍ଳେଷବକ୍ରୋକ୍ତି, ବିଶେଷୋକ୍ତି ସ୍ୱଭାବୋକ୍ତି ଅଳଙ୍କାରମାନଙ୍କର ସୁସଂଗଠିତ ସଂଯୋଜନାରେ ଏହିସବୁ ବର୍ଣ୍ଣନା ପରିସର ହୁଏ ସୁଖପାଠ୍ୟ । ତା'ର ଲାଳିତ୍ୟ ଓ

ରସାଳତା ପାଠକ ଚିତ୍ତକୁ ବାରମ୍ବାର କରେ ଆକର୍ଷିତ । ଏହିସବୁ ବର୍ଣ୍ଣନା କୁତ୍ରାପି ପାରମ୍ପରିକତା ଅଥବା ପୁନରାବୃତ୍ତିରେ ଭାରାକ୍ରାନ୍ତ ନହୋଇ ମନୋରଂଜକ କାବ୍ୟସାମଗ୍ରୀରେ ପରିଣତ ହୋଇଛନ୍ତି । ପରିବେଷଣ ରୀତିରେ ମଧ୍ୟ ରହିଛି ଚମତ୍କାରିତା । ଏହାର ମନୋହର ଛବି କାବ୍ୟ ପରିସରକୁ ସତେ ଯେପରି ମାନବ ଓ ପ୍ରକୃତିର ଏକ ଚାରୁଚିତ୍ରଶାଳାରେ କରନ୍ତି ପରିଣତ । ଗୋପୀମାନଙ୍କର କାଳିନ୍ଦୀ ସ୍ନାନର ଏକ ଭଙ୍ଗୀ ଚଂଚଳ ଚିତ୍ର ଦେଇ କବି ଲେଖିଛନ୍ତି,

''କମଳେ କମଳ ବଦନୀ ପଶନ୍ତେ କମଳେ ହୋଇଲେ ଚଂଚଳ,
କୁବଳୟ ଆଦି କହ୍ଲାର ସହିତେ କେ ତହିଁ ନୋହିଲେ ନିଶ୍ଚଳ,
କେବଳ ଯେ ଯାହାକୁ ଗୁଣେ ବଳଇ,
କି କି କରି ପାଶେ ଦେଖିଲେ ତାକୁସେ ଅଧୈର୍ଯ୍ୟ ହୋଇ ତରଳଇ ।''

ଏହି କିଶୋରୀ କାମିନୀମାନଙ୍କର କମନୀୟ ନେତ୍ର, ମୁଖ, ନଖ ଓ ଗତି ପ୍ରଭୃତିର ଶୋଭାରେ କଦମ୍ବକୁଳେ ଆପଣାର ସମସ୍ତ ବୈଶିଷ୍ଟ୍ୟ ହରାଇ ଲଜ୍ଜିତା ହେବାରୁ ସେମାନେ ଅପମାନ ଅପେକ୍ଷା ମରଣକୁ ଶ୍ରେୟ ମନେକରି ଶଙ୍କିତ ହୋଇ ପଳାୟନ କଲେ । ପୁନଶ୍ଚ ସ୍ନାନ କୌତୁକର ବର୍ଣ୍ଣନ କରି କବି କହନ୍ତି,

''କନକ ଲତା ନୀଳମଣି ସ୍ଥଳରେ ପବନ ଚଳିଲା ପରାୟେ,
କେ କାହାକୁ ପାଣି ପାଣିରେ ପୂରାଇ ଆନନକୁ ମାରି ପଳାଏ ।
କେ ଜଳ, କରାଟ ପରାୟେ ବୁଡ଼ଇ,
କାହିଁଯିବୁ ବୋଲି କରି କେ ପାଣିରେ ପାଣି ଘେନିକରି ଲୋଡ଼ଇ,
କରେ କରଦେଇ ଚକ୍ରବାକ ହୋଇ କମଳୁଁ କମଳ ତୋଳନ୍ତି,
କେ କରକମଳେ କମଳ ଚୁମ୍ବନ୍ତି ତୋଳି କାହା କୁଚେ ଡାଳନ୍ତି,
କେ ବୋଲେ, ସଖୀକୁଚପନ୍ତି ଶଙ୍କର,
କରି ଏହାଙ୍କୁ ଜଳଶାୟୀ ସମସ୍ତେ ହେଲାଇଁ ଏହାଙ୍କ କିଙ୍କର ।''

ବର୍ଣ୍ଣନାର ଏହି ରୀତି ଅତ୍ୟନ୍ତ ମନୋଜ୍ଞ ଓ ଦୀନକୃଷ୍ଣଙ୍କର ଏହା ଏକାନ୍ତ ନିଜସ୍ୱ । ଗୋଟିଏ ନାୟିକାର ଅଙ୍ଗଲତିକାରେ ପରିଚୟ ଦେଇ କବି କହନ୍ତି,

''କନକ ଲତାରେ କମଳ କୋଳରେ ବିକାଶେ ବେନି ଇନ୍ଦୀବର,
କୁନ୍ଦକଳି ସଙ୍ଗେ ଫୁଟିଅଛି ରଙ୍ଗେ ବନ୍ଧୁଜୀବକ ମନୋହର,
କମଳା, କୋକ ନଦରେ ଗନ୍ଧଫଳୀ,
ନକରି ବିଧାତା କରିଛି ଏଲତା ଚିତ୍ରକୁ ପଡ଼ିଅଛି ବଳି ।''

ଅନ୍ୟତ୍ର ଏକ କିଶୋରୀର ଅଙ୍ଗକୁ କାମ ସରୋବର ସହିତ ତୁଳନା କରି ତା'ର କାନ୍ତିକୁ ସ୍ୱଚ୍ଛଜଳ, କେଶକୁ ଶୈବାଳ, ବଦନକୁ କମଳ, ନୟନ ଯୁଗଳକୁ ଶଫରୀ, କୁଚଯୁଗଳକୁ ଚକ୍ରବାକ ଓ ନଖକୁ କହ୍ଲାରକ ସହିତ ଉପମା ଦେଇ ସର୍ବଜନ ମନୋହାରୀ

ପ୍ରତିମାଟିଏ ଅଙ୍କନ କରିଛନ୍ତି । ଏହିସବୁ ଅଙ୍କନ ପାଇଁ ସଂସ୍କୃତ ଭାଷାରେ ରଚିତ ନାୟିକା ବର୍ଣ୍ଣନାମାନଙ୍କର ଆଦର୍ଶ ବିଦ୍ୟମାନ ଥିଲେ ମଧ ପ୍ରକାଶରୀତି ଓ ତା'ର ସୁଲଳିତ ଶବ୍ଦ ସଂଯୋଜନା କଳାକୌଶଳ ହେଉଛି ଦୀନକୃଷ୍ଣଙ୍କର ନିଜସ୍ୱ । କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଏହି ରୀତିରେ ତାଙ୍କର 'ସୁଭଦ୍ରା ପରିଣୟ' କାବ୍ୟରେ ନାୟିକାକୁ ହେମବଲ୍ଲରୀ ସହିତ ତୁଳନାକରି ତହିଁରେ ସପ୍ତଜାତି ଫଳ ପୁଷ୍ପାଦିର ଶୋଭା ବର୍ଣ୍ଣନ କରିଥିବାର ଦେଖାଯାଏ । ମନେହୁଏ ଦୀନକୃଷ୍ଣ ଏ ରୀତିର ପୁରୋଗାମୀ କାବ୍ୟଶିଳ୍ପୀ ।

ମଧ୍ୟଯୁଗୀୟ ଉତ୍କଳର କେତେକ ଚଳଣି ଓ ରୀତିନୀତି ସହିତ ବହୁ ସାଧାରଣ ବ୍ୟାପାରମାନଙ୍କର ବର୍ଣ୍ଣନାରୁ ଦୀନକୃଷ୍ଣଙ୍କର ସମାଜ ସଚେତନତା ଅନୁମିତ ହୋଇଥାଏ । ଶୟନକକ୍ଷମାନଙ୍କର କାନ୍ଥଚିତ୍ର ମାନଙ୍କର ସମ୍ବନ୍ଧରେ କବି ଉଲ୍ଲେଖ କରନ୍ତି;

''କାନ୍ଥମାନଙ୍କରେ ନାନା ଚିତ୍ର ପ୍ରତିମା
କଥା ନ କହି ହସନ୍ତି ଯେମନ୍ତ ବାମା ।''

ଗ୍ରୀଷ୍ମଋତୁରେ ଜଳଯନ୍ତ୍ର ଗୃହର ବ୍ୟବହାର, ଗୀତ, କବିତ୍ୱ, ବେଣୁ, ବୀଣା, ନୃତ୍ୟ-ରଙ୍ଗରେ କାଳଯାପନ, ଚନ୍ଦନ ପିଚକାରୀ ବ୍ୟବହାର, ନୌକାବିହାର, ବ୍ୟଜନରେ ସ୍ୱେଦ ନିବାରଣ, ଜଳକେଳି ପ୍ରଭୃତିର ବର୍ଣ୍ଣନା 'ରସକଲ୍ଲୋଳ' ଓ 'ଜଗମୋହନ ଛାନ୍ଦ' ଗ୍ରନ୍ଥରେ ଦେଖାଯାଏ । ଶୀତଋତୁରେ ଦରିଦ୍ରମାନଙ୍କର ଭାଗ୍ୟ ଆଦରି ଶୀତ ଯନ୍ତ୍ରଣା ସହନ, ଧନୀମାନଙ୍କର ଶୀତବସ୍ତ୍ର ବ୍ୟବହାର, ଅଗ୍ନିଜାଳି ଶୀତ ନିବାରଣ, ବର୍ଷାରେ ନଦୀବଢ଼ି ବର୍ଣ୍ଣନା ପ୍ରସଙ୍ଗରେ କୂଳପାଳିକାମାନଙ୍କର ମର୍ଯ୍ୟାଦା ପାଳନ ଓ ରସବତୀ କୁଳଟାର କୂଳଲଂଘନ ପ୍ରଭୃତି ଏହି ବର୍ଣ୍ଣନା ପର୍ଯ୍ୟାୟର ଅନ୍ତର୍ଭୁକ୍ତ । ଶିଶୁପୁତ୍ରର ଲାଳନପାଳନ, ଶିଶୁମାନଙ୍କ ପ୍ରତି ସମାଜରେ ସମସ୍ତଙ୍କର ସ୍ନେହ ଶ୍ରଦ୍ଧା, ଶିଶୁମାନଙ୍କ ଦୁଗ୍ଧ ଓ ଦୁଗ୍ଧଜାତ ଖାଦ୍ୟ, କାଛପରିଧାନ, ଅଙ୍ଗରେ ତୈଳମର୍ଦ୍ଦନ, ସ୍ତ୍ରୀଲୋକମାନଙ୍କର ଶାଢ଼ୀ କାଞ୍ଚୁଲା, ପରିଧାନ, ନାନାବିଧ ବେଶଭୂଷା ଓ ଅଙ୍ଗରାଗ ବ୍ୟବହାର ପ୍ରଭୃତି କବିଙ୍କ ବର୍ଣ୍ଣନା ସାମଗ୍ରୀରୁ ବାଦ ପଡ଼ିନି । ଗଉଡ଼ଗୀତ, ଗଉଡ଼ନାଟ, ବେଣୁବଂଶୀ ଓ ଶିଙ୍ଗା ବାଦନ, ପଦ୍ମତୋଳା ଗୀତାଦି ଲୋକ ସଂସ୍କୃତି ଏଥିରେ ସ୍ଥାନିତ । ଚନ୍ଦ୍ରଗ୍ରହଣ କାଳରେ ବ୍ରାହ୍ମଣମାନଙ୍କୁ ଦାନବିଧି, ବ୍ରତୋପନୟନ ପରେ ସାମବେଦୀ ବ୍ରାହ୍ମଣଙ୍କର ମୁଣ୍ଡନ ଚିତ୍ର ସହିତ କୃପଣଜନଙ୍କର ନିଷ୍ଠୁରତା ଓ ଧନଲୋଭ, ନିର୍ଦ୍ଧନଜନର ଦୁଃଖ, ନିର୍ଦ୍ଦୟ ପ୍ରଭୁର ସେବକ ପ୍ରତି ନିଷ୍ଠୁରତା, ଚାଟୁକାରମାନଙ୍କର କୁ ଶିକ୍ଷାଦାନ ପ୍ରଭୃତିକୁ ମଧ କାବ୍ୟ ବର୍ଣ୍ଣନାର ଅଙ୍ଗୀଭୂତ କରାଇଛନ୍ତି । ଗୋଟିଏ ପଦରେ କବି କହନ୍ତି,

''କହେ ଯେଉଁ ପଣ୍ଡିତ ସଭାରେ ପକ୍ଷପାତ, ପ୍ରଭୁ ଆଜ୍ଞାକୁ ଅନୁସରି,
କରେ ତହିଁକି ପ୍ରତେ, ଯେଉଁ ନୃପତି ଚିତ୍ତେ,

ସେହିଟି ଅବିବେକ ପୂରି ହେ, ଆହେଜନେ,
କାଳେ ସେ ଦେଖନ୍ତି ସଂଘାତ, କାଳଦଣ୍ଡେ,
ଅବଶ୍ୟ ହୁଅନ୍ତି ସଂଘାତ,
କଟୁତିକ୍ତ ମଧୁର ଦ୍ରବ୍ୟଠାରୁ ବିଚାର ଆଦ୍ୟ ପ୍ରାନ୍ତେ ହିତ ଅହିତ ହେ ।''

ବହୁ ନୀତି ଉପଦେଶ ସ୍ୱକୀୟ ନୀରସତା ହରାଇ ଦୀନକୃଷ୍ଣଙ୍କ ପଦରଚନା ମାଧମରେ ସରସ ସ୍ୱାଦ୍ୟ ଓ କବିତ୍ୱ ମଣ୍ଡିତ ହୋଇଯାଇଛନ୍ତି । ଏହି ନୀତି ପ୍ରବଚନ ଗୁଡ଼ିକ ସେମାନଙ୍କର ସ୍ୱତନ୍ତ୍ର ଭାବସତ୍ତାକୁ ଅକ୍ଷୁର୍ଣ୍ଣ ରଖି ମଧ ବର୍ଣ୍ଣନା ବୈଚିତ୍ର୍ୟର ଗମ୍ଭୀରତା ମଧରେ ଲୀନ ହୋଇଯାଇଛନ୍ତି । ସେହିପରି, 'କଳାନାଗ ରୀତି ଅତିହିଁ ଅନୀତି ପଯ ଦେଲେ ହୁଏ ପ୍ରବଳ, କେତେବେଳେ ସେ ନଛାଡ଼େ ଗରଳ, କର୍ମ ଅବଳକୁ ବିରହ ବେଳକୁ ଅମୃତ ହୁଅଇ ଗରଳ'; 'କେବୋଲେ ଯେ ଯାହ ଜୀବିକା ସେ ତାହା ନ କଲେ କେହି ନେବ କି କେବେ ଦିନ'; 'ଶତ୍ରୁଠାରେ ହେଳା କଲେ ଯଶ ମିଳେ ନାହିଁ,' 'କୃପଣ ଧନ ସଂଚିଲା ପ୍ରାୟେ ମଧୁ ସଂଚିଲେ ମଧୁକରମାନେ'; 'କୃପଣକୁ ଲୋଭୀ ଆଶା କଲା ପ୍ରାୟେ କେବଳ ପାଉଥାଇ ବାଧା', 'କଲେ ହେଁ ଅନେକ ଯତନ, କଳା ଧଳା କରିବାକୁ କେବା ଭାଜନ', ପ୍ରଭୃତି ଲୋକ ପ୍ରଚଳିତ ପ୍ରବଚନମାନେ ସୁସଂଗତ ଅର୍ଥପୂର୍ଣ୍ଣ ଭାବରେ ଯଥାସ୍ଥାନିତ ହେଇ ଦୀନକୃଷ୍ଣଙ୍କ ପଦାବଳୀକୁ ଅମୃତ ରସାବଳୀରେ ପରିଣତ କରିଦେଇଛନ୍ତି ।

ମଧ୍ୟଯୁଗୀୟ କାବ୍ୟଧାରାରେ ଅପ୍ରାକୃତ ଶବ୍ଦ ସଂଯୋଜନା ଓ ଅର୍ଥବୈଚିତ୍ର୍ୟ ସଂପାଦନରେ ଚମତ୍କାରିତା କ୍ରମଲୋକପ୍ରିୟତା ଲାଭ କରୁଥିବା ହେତୁ ଦୀନକୃଷ୍ଣଙ୍କ ରଚନାରେ ସ୍ଥାନେ ସ୍ଥାନେ କୃତ୍ରିମ ଶବ୍ଦ ବିଳାସ ପରିଦୃଷ୍ଟ ହେଉଥିଲେ ହେଁ ଏହା ତାଙ୍କର ନିଜସ୍ୱ ଶୈଳୀ ଆଦୌ ନୁହେଁ । ଜନସାଧାରଣର ସହଜବୋଧ ଭାଷାକୁ ପୁଞ୍ଜିକରି ଶବ୍ଦଶିଳ୍ପ ବିନ୍ୟାସରେ ଦୀନକୃଷ୍ଣ ଥିଲେ ଅପୂର୍ବ ବିଦ୍ଧାଣୀ । 'ରସକଲ୍ଲୋଳ'ରେ ସେ ଲେଖିଥିଲେ,

''କ' ଅକ୍ଷରେ ହୋଇଛି ନିୟମ,
କଥା ନୋହେ ଦିବ୍ୟ ଅଦିବ୍ୟ ସମ ।''

ଦିବ୍ୟ ବା ଶିଷ୍ଟଜନଙ୍କ ତତ୍ସମତଦ୍ଭବ ଶବ୍ଦବହୁଳ ସାଧୁଭାଷା ଓ ଅଦିବ୍ୟ ବା ଲୋକ ସାଧାରଣଙ୍କର ଦୈନନ୍ଦିନ ଜୀବନର ବ୍ୟାବହାରିକ ଭାଷାର ମିଳନ ଘଟାଇ ଏକ ସମନ୍ୱିତ ସାବଲୀଳ କାବ୍ୟଭାଷା ସୃଷ୍ଟି କରିବାରେ ଅଦ୍ଭୁତ ଯାଦୁକରୀ ସାଫଲ୍ୟ ହେଉଛି ଦୀନକୃଷ୍ଣଙ୍କର କବି ପ୍ରତିଭାର ଅନ୍ୟତମ ବୈଶିଷ୍ଟ୍ୟ । ବିଶେଷତଃ ଲୋକ ମୁଖର କଥିତ ଭାଷା ଓ ମୌଳିକ ଭାବପୂର୍ଣ୍ଣ ଲୋକୋକ୍ତିମାନଙ୍କୁ ଆତ୍ମୀକୃତ କରିନେଇ କାବ୍ୟକବିତାର ପଦସଂଯୋଜନା ଶିଳ୍ପରେ ସାଧୁ ଶବ୍ଦମାନଙ୍କ ସହିତ ନିଖୁଣ ପିହିତ କରିବାରେ ସେ ଥିଲେ ଧୂରୀଣ ଶିଳ୍ପୀ । ଏପରି ସମନ୍ୱିତ ଶବ୍ଦ ସଂପଦର ସୁସଂଗତ ଅର୍ଥପୂର୍ଣ୍ଣ ପ୍ରୟୋଗ ହେତୁ ସେ ସୃଷ୍ଟିକରନ୍ତି ଅନନ୍ୟ ସୁଲଭ 'କାନ୍ତକୋମଳ ପଦାବଳୀ' ।

ପଦରଚନାରେ ଏପରି ଲାଳିତ୍ୟ ପାଇଁ ତାଙ୍କୁ ଓଡ଼ିଆ ଭାଷାରେ ଜୟଦେବ କୁହାଯାଇ ପାରେ । ପୁନଶ୍ଚ ନିଜର ବିପୁଳ ପାଣ୍ଡିତ୍ୟ ଓ ବହୁ ଶାସ୍ତ୍ର ଦର୍ଶିତା ସତ୍ତ୍ୱେ ସେ ଥିଲେ କୌତୁକ ପ୍ରିୟ ରସିକ କବି । କୌତୁକ ଭାବପୂର୍ଣ୍ଣ ଢଗଢମାଳି ବା ଲୋକ ପ୍ରଚଳିତ ରୂଢ଼ି ଓ ନୀତିବାକ୍ୟମାନଙ୍କର ସଦୁପଯୋଗ କରି କାବ୍ୟକବିତାକୁ ସୁସ୍ୱାଦ୍ୟ, ରସାଳ ଓ ଲୋକଗ୍ରାହୀ ସେ କରି ପାରିଥିଲେ । 'କୁଶଳରେ ସମସ୍ତେ ହେଁ ସୁମୁଖ, ନଷ୍ଟ କାଳରେ ହୁଅନ୍ତି ବିମୁଖ'; ଅଥବା 'କର୍ମେ ଯାହାର ଯଉଁ ଦଶାଥାଇ, ତାହାବଳେ ଆନ କରି ନୋହଇ' ଭଳି ଲୋକ ମୁଖର ପ୍ରବଚନମାନଙ୍କୁ ଉପମା ଭାବରେ ଉପଯୋଗ କରି ଭାଷା ବିନ୍ୟାସ ଶିଳ୍ପରେ ଅକୃତ୍ରିମତା, ସ୍ୱାଭାବିକତା, ସ୍ୱଚ୍ଛତା, ସ୍ୱଚ୍ଛନ୍ଦତା, ସମରସତା, ସଂଯମଶୀଳତା ଓ ସର୍ବବ୍ୟାପୀ କୋମଳ କମନୀୟ ଲାଳିତ୍ୟ ଭରି ଦେଇଛନ୍ତି । ଏହା ତାଙ୍କର ମୌଳିକ କଳ୍ପନା ଓ ସହଜାତ ଶିଳ୍ପ-ରୀତିର ଦ୍ୟୋତକ । ଲୋକ କଥିତ ପଦାଂଶମାନଙ୍କୁ ବିନିଯୋଗ କରି ଗୋଟିଏ ଛାନ୍ଦରେ କବି ଜଣେ ବିରହିଣୀ ପ୍ରେମିକା ମୁଖରେ କହନ୍ତି;

''କାମିନୀ ଛଡ଼ା ବଦନପୋଡ଼ା କରିଥିଲି ମୁଁ କି ଘରବୁଡ଼ା
ପ୍ରାଣ ତୁ ମୋର କଲି ତତେ ମୋ ଅଙ୍ଗରୁ ଛଡ଼ା ହେ,
କେ ଅବା ମୋତେ କରନ୍ତା ଲୋଡ଼ା, କାହା ଆଗରେ ହୁଅନ୍ତି ଛଡ଼ା
କୃପାଣ ହୋଇ କାଟନ୍ତା ମୋତେ, ମୋହରି ବ୍ରୀଡ଼ା ରେ ।
କାହା ସଂଗତେ ଆଉ କରନ୍ତି କ୍ରୀଡ଼ାରେ,
କେ ଅବା ଛଡ଼ାନ୍ତା ମୋ କନ୍ଦର୍ପ ପୀଡ଼ାରେ,
କରୁଣା କଲେ କାଳୀଘଉଡ଼ା ଯାମଳାର୍ଜ୍ଜୁନ ଗଛ ଉପୁଡ଼ା
କଲା ଭଲା ସେ ଅଘାଅସୁର ମସ୍ତକ ଫୋଡ଼ା ରେ ।''

ଅନ୍ୟତ୍ର :

''କାଳିନ୍ଦୀ ଜଳେ କଳ୍ଲୋଳରଙ୍ଗୀୟା
କଦମ୍ବ ତରୁତଳ ତ୍ରିଭଙ୍ଗୀୟା
କଳା କମଳ କଜ୍ଜ୍ୱଳ କାଳୀୟା
କେକୀ ବରହୀ କଳାପ ଚୂଳୀୟା
କାନ୍ତ କୁଣ୍ଡଳୀୟା
କୁମୁଦ ବନ୍ଧୁ ମୁଖ ମଣ୍ଡଳୀୟା, ଇତ୍ୟାଦି ଇତ୍ୟାଦି ।''

ଲୋଭନୀୟ ପଦ ବିନ୍ୟାସରେ ସୃଷ୍ଟ ଏହି ସୁମନୋଜ୍ଞ ଶ୍ଳୋକମାନଙ୍କୁ ଆବୃତ୍ତି କଲେ ମନେହୁଏ

''ସୁନ୍ଦରେ ତୃପ୍ତିର ଅବସାଦ ନାହିଁ
ଯେତେ ପଢୁଥିଲେ ନୂଆ ଲାଗୁଥାଇ ।''

ଦୀନକୃଷ୍ଣ ଥିଲେ ଲୌକିକ କୌତୁକ ଓ ହାସ୍ୟ ପରିହାସର ଶିଳ୍ପୀ ମଧ୍ୟ । ଦୀନ ଦୁଃଖୀମାନେ ଏହି କୌତୁକ ଓ ହାସ ପରିହାସ କଥା ବିନିମୟରେ ବହୁ ଭାବରେ ନିଜ ନିଜର ଦୁଃଖ ସନ୍ତାପ ଲାଘବ କରିବାକୁ କ୍ଷମ ହୋଇଥାନ୍ତି । ଏପରି କୌତୁକ କଥା ଓ ବକ୍ରୋକ୍ତିମାନଙ୍କୁ ବହୁ ସ୍ଥଳରେ କବି ଉପଯୋଗ କରିବାର ସୁଯୋଗ ଉଠାଇଛନ୍ତି । ଶୀତକାଳରେ ଶୀତାର୍ତ୍ତ ଜୀବନ ଅତିବାହିତ କରୁଥିବା ଗୋପୀମାନଙ୍କ ଗୃହେ ଗୃହେ ଶ୍ରୀକୃଷ୍ଣ ପ୍ରବେଶ କରି ସେମାନଙ୍କୁ କୌତୁକ ପରିହାସରେ କହନ୍ତି,

''କେଉଁ ଗୋପୀ ପାଶେ ହୋଇ ପ୍ରବେଶ,
କଉତୁକେ କରନ୍ତି ପରିହାସ,
କୋଳେ ରଖିଅଛୁ ତୁ ଉଷ୍ମମକୁ,
କହୁଅଛି ଯାଇ ମୁହିଁ ହିମକୁ,
କାହିଁଗଲା ବୋଲି ସେ ଲୋଡୁଅଛି,
କୁଚକନ୍ଦିରେ ଆସି ଏ ପଶିଛି ।''

ଗୋପୀ ଏହାର ପ୍ରତ୍ୟୁତ୍ତରରେ ରମଣେଚ୍ଛା ପ୍ରକଟ କରି କଉତୁକ ବାଣୀରେ କହେ,

''କମ୍ପୁଅଛ ଯଦି ଶୀତବଳରେ,
କିମ୍ପା ନ ପଶ ଆସି ମୋ କୋଳରେ ।''

ଏପରି ବହୁ ସ୍ଥଳରେ ବର୍ଣ୍ଣନା ଏକାନ୍ତ ଗ୍ରାମ୍ୟ ଓ ଅଶ୍ଳୀଳ ଭାବ ବ୍ୟଞ୍ଜକ ହେଲେ ମଧ୍ୟ ସାଧାରଣ ଗ୍ରାମ୍ୟ ସମାଜରେ ପ୍ରାୟ ବାସ୍ତବ ଓ ସ୍ୱାଭାବିକ । କଂସବଧ ପରେ ମାଈଁମାନଙ୍କୁ ପ୍ରବୋଧନା ଓ ସଂବେଦନା ଭିତରେ ରହିଛି କପଟୀ କୃଷ୍ଣଙ୍କର କୌତୁକ ପୂର୍ଣ୍ଣ ବାଣୀ; ସେହିପରି ବସନ୍ତ ଋତୁରେ ବନବିହାର ବେଳେ ପୁଷ୍ପମାନଙ୍କୁ ଦେଖି ଗୋପୀମାନେ ବିବିଧ କୌତୁକ ହାସ ପରିହାସରେ ପୁଷ୍ପମାନଙ୍କର ନାମରୁ ଭିନ୍ନାର୍ଥ ବାହାର କରି ଯେଉଁ ବକ୍ରୋକ୍ତି ପ୍ରକାଶ କରିଥାନ୍ତି ତାହା ଅତ୍ୟନ୍ତ ଉପଭୋଗ୍ୟ । ବେଳେ ବେଳେ ପ୍ରସଙ୍ଗ ଅବତାରଣାରେ ନାଟକୀୟତା ଦୀନକୃଷ୍ଣଙ୍କ ରଚନାମାନଙ୍କରେ ଲକ୍ଷଣୀୟ । କବି ଶିଶୁକୃଷ୍ଣଙ୍କ ଠାଣି ବର୍ଣ୍ଣନା ବେଳେ କବିମାନଙ୍କର 'ମିଛଫନ୍ଦା' ପ୍ରସଙ୍ଗ ଅବତାରଣା କରୁକରୁ ହଠାତ୍ କ୍ରନ୍ଦନ ଶୁଭିଲା କୃଷ୍ଣଙ୍କର । ଏହି ଚିତ୍ର ଦେଇ କବି କହନ୍ତି;

''କବି ବଚନେ କରେ ତାରତମ, କୁବେରକୁ ବୋଲଇ କୋଟିକାମ,
କେଉଁଠାରେ କନ୍ଦର୍ପ ହୋଯେ ନିନ୍ଦା, କେତେ କହିବି ତାଙ୍କ ମିଛଫନ୍ଦା,
କହୁଁ କହୁଁ କୁମାର ଯେ ରୋଦନ୍ତି, କଳକଂଠ କଣ୍ଠ ହେଲେ ନିନ୍ଦନ୍ତି ।''

ସେହିପରି କୃଷ୍ଣଙ୍କ ଶୋଭା ଦେଖି ମଥୁରାବାସିନୀମାନେ ବିବିଧ ଉପମାରେ ପ୍ରଶଂସା କରୁଥିବାବେଳେ ଶ୍ରୀକୃଷ୍ଣ କଂସ ସିଂହଦ୍ୱାରରେ ବିଜୟ କରନ୍ତି ତତ୍‌କ୍ଷଣାତ୍;

''କହୁଁ କହୁଁ ଏହା ନରନାରୀ, କଂସ ସିଂହଦ୍ୱାରେ ବିଜେକରି ।
କୁବଳୟ କରିବର ଦେଖିକରି, ରହିଲେ ଆଗେ ଉଭାରି ।''

କୃଷ୍ଣ ଓ ମାହୁନ୍ତଙ୍କର ଉକ୍ତି ପ୍ରତ୍ୟୁକ୍ତି ଓ କୃଷ୍ଣଚାଣୁରଙ୍କ ଉକ୍ତିରେ ଏପରି ନାଟକୀୟ ଛଟା ସହଜ ପରିଦୃଷ୍ଟ । ସର୍ବୋପରି କୃଷ୍ଣଗୋପିକାମାନଙ୍କର 'ଘେନାଘେନି ବାଣୀ'ରେ ନିହିତ ଥିବା ନାଟକୀୟତାର ମାଧୁର୍ଯ୍ୟ ପ୍ରାଚୀନ ଓଡ଼ିଆ କାବ୍ୟଧାରାରେ ଅନ୍ୟତ୍ର ଦୁଷ୍ପ୍ରାପ୍ୟ । ଏହିପରି ନାଟକୀୟ ଅଭିନୟ କରି କୃଷ୍ଣ ଶ୍ଳେଷ ଓ ବକ୍ରୋକ୍ତିରେ କଂସ ନିଧନ ପରେ ମାଈଁମାନଙ୍କୁ ପ୍ରବୋଧନା ଦେଇ କହନ୍ତି;

''କରି ବଡ଼ ପ୍ରତି ଆଶା ଅଇଲି ଧାଇଁ
କଉତୁକେ ମାମୁଁ ମୁଖ ଦେଖିବା ପାଇଁ ।
କରିଥାଇ ମାମୁଁ ମୋତେ କେଡ଼େ ସେନେହ
କରିତା ଭାବନା ଦହି ହେଉଛି ଦେହ ।
କାହାର କିଗଲା ମାଈଁ ମୋହୋ ବାହାରେ,
କର୍ମ ଅବଳକୁ ମୁଁ ନୋହିଲି କାହାରେ ।

କି ଅପୂର୍ବ ଆଦର ସେ କରଇ ମୋତେ,
କେତେରୂପେ କେତେଚାର ପେଷେ ଗୁପତେ,
କାଳଯାକ ଚିନ୍ତଇ ମୋ ଅ-ପୂର୍ବ ଶୁଭ,
କିଛି ନପାଇଲା ମୋହୋଠାରୁ ସେ ଲାଭ ।'' ଇତ୍ୟାଦି

ଏହିସବୁ ବର୍ଣ୍ଣନା ଭିତରେ ଭରିରହିଛି କୃଷ୍ଣଦାସଙ୍କର ଅପୂର୍ବ ନାଟକୀୟ କୌତୁକପ୍ରିୟତା ।

ରୀତିଯୁଗୀୟ ଆଡ଼ମ୍ବରପୂର୍ଣ୍ଣ ରାଜକୀୟ କାବ୍ୟମାନଙ୍କର କୋଳାହଳ ମଧ୍ୟରେ ଦୀନକୃଷ୍ଣଙ୍କର ମାତ୍ର ଗୋଟିଏ ବିଶିଷ୍ଟ କାବ୍ୟର ସ୍ୱର ତାଙ୍କର କବିଦୀପ୍ତିକୁ ଉଦ୍ଭାସିତ କରିପାରୁ ନଥିବା ବେଳେ ତାଙ୍କର ନିଜସ୍ୱ ଶୈଳୀ ରସସୌନ୍ଦର୍ଯ୍ୟ ଚେତନା ଓ ବ୍ୟକ୍ତିମର୍ଯ୍ୟାଦା ଚେତନା ତାଙ୍କର ଉତ୍ତୁଙ୍ଗ ବ୍ୟକ୍ତିତ୍ୱ ବିଭାକୁ ଉଚ୍ଚ ନୈତିକସ୍ତରରୁ ବିଚ୍ଛୁରିତ କରାଇ ବିଦଗ୍ଧ କାବ୍ୟ ରସିକ କୁଳର ଦୃଷ୍ଟି ଆକର୍ଷଣ କରିଥାଏ । ବହୁଗ୍ରନ୍ଥ, ଗୀତିକା ଓ ଗୀତିକବିତାମାନ ରଚନା କରି ଏ ଦେଶର ସାରସ୍ୱତ ପରଂପରାକୁ ବିପୁଳ ସମୃଦ୍ଧିଦାନ କରିଥିବା ଏହି କବିଙ୍କର କବିକର୍ମ ପ୍ରତି ସଶ୍ରଦ୍ଧ ଅଚରଂଗ ଚେତନା ମଧ ତାଙ୍କର ରଚନାମାନଙ୍କର ବହୁଳ ପରିଦୃଷ୍ଟ ।



**ଦଶମ ପରିଚ୍ଛେଦ**

# କବିଙ୍କ ସ୍ୱଗତୋକ୍ତି

ରସବିନୋଦ ରଚନା ଅବକାଶରେ ଅକ୍ଷର ବୃତ୍ତର ସମତା ରକ୍ଷାକରି ସମାନ ସଂଖ୍ୟକ ଅକ୍ଷର ବିଶିଷ୍ଟ ପଦରଚନା ସମ୍ବନ୍ଧରେ ନିଜର କୃତିତ୍ୱ ଉଲ୍ଲେଖ କରି କବି କହନ୍ତି;

''ଏ ଗ୍ରନ୍ଥ ଚରଣକୁ ଚିହ୍ନ । ନବ ଅକ୍ଷର ପରିଚ୍ଛିନ୍ନ ।
ଅଷ୍ଟ ଅକ୍ଷର ହୋଇ ନାହିଁ । ଦଶକୁ ଅବା ଯିବା କାହିଁ ।
ଲେଖିବା ପଢ଼ିବାର ଲୋକ । ସେ ଯେବେ ହୋଇବ ବିବେକ ।
ଅନୁଭବରେ ଦେହ ମନ । ବିଚାରି କରିବ ଲେଖନ ।
ଅକ୍ଷର ଗଣିବ ହସ୍ତରେ । ତେବେ ସେ ଲେଖିବ ପତରେ ।
ମନନୟନ ଏକ କରି । ଲେଖନ ମୁନେ ଦୃଷ୍ଟି ଭରି ।
ଚୈତନ୍ୟ ନଟଳିବ ଯେବେ । ଅକ୍ଷର ନ ବଦଳି ତେବେ ।
ଯୁକତେ ମତ୍ତ ହସ୍ତୀମନ । ତାହାକୁ ଅଙ୍କୁଶ ଚୈତନ୍ୟ ।
ଲୋଚନ ଦୁଇ ରବିଶଶୀ । ଠୂଳ ହୋଇଣ ଯେବେ ବସି ।
ଲେଖନ ମୁନ ଘେନି ପାଞ୍ଚ । ସବୁ ତା ସେଥିକରି ଆଞ୍ଚ ।
ଏମନ୍ତ ଭାବେ ଯେବେ ଲେଖି । ଏଥକୁ ଜଗନ୍ନାଥ ସାକ୍ଷୀ ।
ଏତେ ପ୍ରକାରେ ଯେବେ ହୁଡ଼ି । ଧର୍ମ ତା କଷ୍ଟ ଦେବେ ଫେଡ଼ି ।
ଏହାର କିଛି ନାହିଁ ଦୋଷ । ଭଣିଲେ ଦୀନକୃଷ୍ଣ ଦାସ ।''

ଓଡ଼ିଶାରେ ଗ୍ରନ୍ଥରଚନା ପାଇଁ ତାଳପତ୍ର ଓ ଲେଖନ ଏକମାତ୍ର ସାମଗ୍ରୀ ଭାବରେ ଚଳିତ ଶତାବ୍ଦୀ ପର୍ଯ୍ୟନ୍ତ ବିବେଚିତ ହେଉଥିବା ବେଳେ ମହାଭାରତ ରାମାୟଣ ପରି ବୃହଦ୍‌କାୟ ଗ୍ରନ୍ଥମାନ ରଚନା କରାଯିବା ବେଳେ ପଦରଚନା କ୍ଷେତ୍ରରେ ମାତ୍ରା ବା ଅକ୍ଷର ବୃତ୍ତଗତ ପାଦସାମ୍ୟ ପ୍ରତି ଆଦୌ ଦୃଷ୍ଟି ନ ଦେଇ ଶାରଳା, ବଳରାମ ସଂପୂର୍ଣ୍ଣ ଦାଣ୍ଡୀ ବୃତ୍ତରେ ଗ୍ରନ୍ଥମାନ ସମାପ୍ତ କରିବାକୁ ପ୍ରୟାସ କରିଥିଲେ । ଏହି ବିଧିରେ ରଚିତ ହୋଇଥିଲା ପଦ୍ୟ ଗଦ୍ୟର ସମନ୍ୱୟରେ 'ରୁଦ୍ର ସୁଧାନିଧି' ପରି ଗ୍ରନ୍ଥ । ଏହାକୁ ଏକ ବିଶିଷ୍ଟ ପୁରାଣ ରଚନା ବିଧି ଭାବରେ ବିବେଚନା କରି

ଚୈତନ୍ୟ ଦାସ 'ବିଷ୍ଣଗର୍ଭ ପୁରାଣ' ରଚନା କରିଥିଲେ ମଧ 'ନିର୍ଗୁଣ ମାହାତ୍ମ୍ୟ' ରଚନା କରିଥିଲେ ସମାକ୍ଷରୀ ବୃତ୍ତରେ । ତତ୍ତ୍ୱପ୍ରଧାନ ଭାଗବତ ଗ୍ରନ୍ଥ ରଚନାବେଳେ କବି ଜଗନ୍ନାଥ ଦାସ ସମାକ୍ଷର ବିଶିଷ୍ଟ ପଦ ରଚନା ପାଇଁ 'ନବାକ୍ଷରୀ' ବୃତ୍ତକୁ ସର୍ବୋତ୍ତମ ବିବେଚନା କରିଥିବାରୁ ବଳରାମ ଦାସ, ଅଚ୍ୟୁତାନନ୍ଦ ଦାସ, ଶିଶୁ ଅନନ୍ତ ଦାସ, ଯଶୋବନ୍ତ ଦାସ, ଦ୍ୱାରକା ଦାସ ପ୍ରଭୃତି ବହୁ ନିର୍ଗୁଣପନ୍ଥୀ କବି ଛନ୍ଦବନ୍ଦୀରେ ଚଉତିଶା, କୋଇଲୀ, ପ୍ରଭୃତି ଗୀତିକବିତାମାନ ରଚନା କରୁଥିବାବେଳେ ତତ୍ତ୍ୱମୂଳକ ଗୀତା, ସଂହିତା, କବଚ, ପଟ୍ଟଳ, ମାଳିକା ପ୍ରଭୃତିକୁ ଏହି ନବାକ୍ଷରୀ ସରଳ ବୃତ୍ତରେ ରଚନା କରୁଥିଲେ । କବି ଦୀନକୃଷ୍ଣ ତାଙ୍କର ଏହି ତତ୍ତ୍ୱ ପ୍ରଧାନ ବିରାଟ 'ରସ ବିନୋଦ' ଗ୍ରନ୍ଥକୁ ପ୍ରମାଦଶୂନ୍ୟ ନବାକ୍ଷରୀ ବୃତ୍ତରେ ରଚନା କଲାବେଳେ ନିଜ କବିକର୍ମର ଅନୁଭବକୁ ଏହିପରି ବ୍ୟକ୍ତକରି ଅନ୍ୟମାନଙ୍କୁ ଏ ଦିଗରେ ମାର୍ଗପ୍ରଦର୍ଶନ କରିଛନ୍ତି । ଏପରି ଚେଷ୍ଟାକୃତ ଅକ୍ଷର ଗଣନ କରିବାରେ କ୍ଷିପ୍ରତା ଅବଲମ୍ୱନ କରିଥିଲେ ମଧ ତାଙ୍କର ରଚନା ସାବଲୀଳ, ସୁଲଳିତ ଓ କବିତ୍ୱର ଆବେଗରେ ସ୍ୱଚ୍ଛନ୍ଦ ପ୍ରବହମାନ । କବି କର୍ମର ବିଧି ଓ ପ୍ରବୃତ୍ତି ସମ୍ବନ୍ଧରେ ଯେ କବି ଅତ୍ୟନ୍ତ ସଚେତନ ଥିଲେ ତାହା ତାଙ୍କର ବିଭିନ୍ନ ରଚନାମାନଙ୍କରୁ ମଧ ପ୍ରକାଶିତ ହୋଇଥାଏ । ତାହାଛଡ଼ା ଏହି ଗ୍ରନ୍ଥର ସପ୍ତଦଶ ଅଧ୍ୟାୟରେ କବି କହନ୍ତି ଯେ ଯେଉଁମାନେ କବି କର୍ମରେ ଲିପ୍ତ, ସେମାନେ ସ୍ୱୟଂ ଭଗବାନଙ୍କର ଆତ୍ମୀୟ ସ୍ୱଜନ ବୋଲି କବି ଭଗବାନ ଶ୍ରୀକୃଷ୍ଣଙ୍କ ମୁଖରେ ପ୍ରକାଶ କରାନ୍ତି । କବି କର୍ମରେ ଲିପ୍ତ ଲୋକ ପଦରଚନାବେଳେ ଭାବ ଓ ତା'ର ପ୍ରକାଶକ୍ଷମ ଉପଯୁକ୍ତ ଶବ୍ଦ ପାଇଁ ଯେତେବେଳେ ସମସ୍ୟାର ସମ୍ମୁଖୀନ ହୁଅନ୍ତି, ସ୍ୱୟଂ ଭଗବାନ ସେମାନଙ୍କୁ ସହାୟତା କରି ଇପ୍ସିତ ଭାବ ଓ ଭାଷା ଯୋଗାଇ ଦେଇଥାନ୍ତି । କବି କର୍ମ ଏକ ଅକ୍ଷୟ କୀର୍ତ୍ତୀ ଓ ସର୍ବ ସୁଖ ପ୍ରଦ । ଭଗବାନଙ୍କ କୃପା ବ୍ୟତୀତ ଏହି କବିକର୍ମରେ ସାଫଲ୍ୟ ସମ୍ଭବ ନୁହେଁ । କବି କର୍ମ ପାଇଁ ମୁନିମାନେ ବିଖ୍ୟାତ । ଜନ୍ମାନ୍ତରର ବାସନା ଓ ସଂସ୍କାର ହେତୁ କବିମାନଙ୍କର କବି ପ୍ରବୃତ୍ତି ପ୍ରକାଶ ହୁଏ ବୋଲି ଦୀନକୃଷ୍ଣଙ୍କର ମତ । ଭାବ ଓ ଭାଷାର ସଂଯୋଗରେ ଅଦୃଷ୍ଟ ଈଶ୍ୱରୀୟ ଶକ୍ତିର ସହାୟତା ଅନୁଭବ କରିଥିଲେ ଅତିପ୍ରାଚୀନ କାଳରେ ମୁନିଋଷିଗଣ, ତେଣୁ ସେମାନେ ତାଙ୍କୁ 'ବାଗ୍‌ଦେବୀ' 'ବାଗୀଶ୍ୱରୀ' ବୋଲି ନାମିତ କରିଥିଲେ । କାଳିଦାସ ଏହି ବାକ୍ ଓ ଅର୍ଥମୟ କାବ୍ୟସତ୍ତାରେ ପାର୍ବତୀ ପରମେଶ୍ୱରଙ୍କର ଯୁଗଳପ୍ରକାଶ ଅନୁଭବ କରିଥିଲେ । ଗ୍ରୀକ୍ ପରଂପରାରେ ସେହି ଅଦୃଶ୍ୟ ଶକ୍ତିକୁ ମ୍ୟୁଜ୍ (muse) ବୋଲି ଅଭିହିତ କରି କବିମାନେ ସମସ୍ତେ ଭକ୍ତି କରୁଥିଲେ । ଆମ ଦେଶର କବି ପରଂପରାରେ କବିକର୍ମର ସବୁ ରଚନାକୁ ଜଗନ୍ନାଥଙ୍କ ପ୍ରେରଣା ବୋଲି ଅନୁଭବ କରି ଆସିଛନ୍ତି । ତେଣୁ କବିତ୍ୱ

ସ୍ଫୂର୍ତ୍ତିରେ ସ୍ରଷ୍ଟା ମାନସର ବ୍ୟାକୁଳତା ବେଳେ ଭାବ ଓ ଭାଷାର ଆବିର୍ଭାବକୁ ବିଶ୍ୱର ସମଗ୍ର ଶିଳ୍ପୀ ବା କବିକୁଳ ଏକ ରହସ୍ୟମୟ ଈଶ୍ୱର ସତ୍ତାର ଆଶୀର୍ବାଦ ବୋଲି ଅନୁଭବ କରିଥିବାବେଳେ ଦୀନକୃଷ୍ଣ ଏହାକୁ ବିସ୍ତାରିତ ଭାବରେ ବର୍ଣ୍ଣନା କରି ଏହି ରଚନାର ସାତ୍ତ୍ୱିକତା ଭିତରେ ତାଙ୍କର ଇଷ୍ଟ ଦେବତାଙ୍କର ଆବିର୍ଭାବ ଅନୁଭବ କରିଛନ୍ତି । ଏପରି ଈଶ୍ୱରାବିର୍ଭାବ ଦ୍ୱାରା କବି ସ୍ୱୟଂ ଦିବ୍ୟତ୍ୱ ପ୍ରାପ୍ତ ହୋଇ ଶ୍ରୋତା ଓ ପାଠକମାନଙ୍କୁ ମଧ୍ୟ ସାତ୍ତ୍ୱିକ ମାର୍ଗରେ ପରିଚାଳିତ କରାଇ ସେମାନଙ୍କୁ ସର୍ବବିଧ ବନ୍ଧନରୁ ମୁକ୍ତ କରାନ୍ତି ବୋଲି ଦୀନକୃଷ୍ଣଙ୍କର ମତ । କବିକର୍ମ ପରି ଏକ ସୂକ୍ଷ୍ମକର୍ମରେ ନିହିତ ମାନସିକ ଭାବାବେଗର ପ୍ରକାଶକାଳୀନ ସାଧାରଣ ସତ୍ୟାନୁଭୂତିକୁ ଯେପରି ଦୀନକୃଷ୍ଣ ସ୍ୱୀୟ ଅନୁଭବରୁ ବ୍ୟକ୍ତ କରନ୍ତି ତାହା ଓଡ଼ିଶାର ଅନ୍ୟ କୌଣସି ଗ୍ରନ୍ଥରେ ପ୍ରାୟ ଉପଲବ୍ଧ ନୁହେଁ । 'ରସବିନୋଦ' ପରି ତତ୍ତ୍ୱଗ୍ରନ୍ଥ ବ୍ୟତୀତ 'ରସକଲ୍ଲୋଳ' ପରି ଲଳିତ କାବ୍ୟରେ ମଧ୍ୟ କବିଙ୍କର ଏହି କବିତ୍ୱ-ଚେତନା ବିଭିନ୍ନ ପ୍ରସଙ୍ଗରେ ହୋଇଛି ପରିସ୍ଫୁଟ । ବିଭିନ୍ନ ଅନୁଭବ କରୁଥିବା, କବିଚିତ୍ତର ଅବସ୍ଥା ଦର୍ଶାଇ ସେ କହନ୍ତି;

୧) ''କେ ବୋଲଇ କବି ବାଟ ପଡ଼ିଲା,
କ୍ରମେ ବିଧାତା ତାହାକୁ ଛାଡ଼ିଲା ।''

୨) କବି ଏହାକୁ ଏମନ୍ତ କାନ୍ତିକି,
କଲେ ବୋଲିବା ଅବିବେକୀ,
କାଚକାଞ୍ଚନେ ତୁଳିବା ପରାୟେ,
କବି ବାଣୀ ନିକିତିରେ ସେ ହୋଏ ।
କାଇଁଚକୁ ସେ ସୁନାସଂଗେ ତୁଳି,
କ୍ରମେ ମୂଲ ବେଲକୁ ସେ ପଡ଼େବଳି ।
କବି ବଚନେ କରେ ତାରତମ,
କୁବେରକୁ ବୋଲଇ କୋଟିକାମ ।
କେଉଁଠାରେ କନ୍ଦର୍ପ ହୋଏ ନିନ୍ଦା,
କେତେ କହିବି ତାଙ୍କ ମିଛ ଫନ୍ଦା ।

୩) କବି ସେ ସତ ମିଛ କରି କହନ୍ତି,
କବିତା ଚାତୁରୀରେ ମନ ମୋହନ୍ତି ।

୪) କହିବାକୁ କେବା ସାମରଥା ସେ
କହିବସିଲେ ହୋଇବ ପୋଥା ସେ,
କବି ତୁଣ୍ଡ କରାଇବ ବ୍ୟଥା ସେ ।

୫) କବି ଗିରକୁ ପାଇଲା ନାହିଁ ତା,
କଳେବର ଦ୍ରବିଗଲା ନାହିଁ ତା,
କେଉଁ ଭାଗ୍ୟେ ରହିଅଛି ପ୍ରାଣ ତା ।''

ବିଶୁଦ୍ଧ ସାତ୍ତ୍ୱିକ କର୍ମରେ ଲିପ୍ତ କବି ସାଂସାରିକ ସୁଖ ସ୍ୱାଚ୍ଛନ୍ଦ୍ୟରୁ ବଂଚିତ ହୋଇଥାନ୍ତି । ସେସବୁ ସୁଖ ପ୍ରତି ସଂପୂର୍ଣ୍ଣ ଉଦାସୀନ ଓ ବିମୁଖ କବିମାନେ କେବଳ ଏକ ଈଶ୍ୱରୀୟ ଅଶରୀରି ସଂକେତ ଅନୁସରଣ କରୁଥିବାରୁ କଳହ ଉତ୍ପାଦକ ପ୍ରସଙ୍ଗମାନଙ୍କ ପାଇଁ ମଧ୍ୟ ଖେଦ ପ୍ରକାଶ ନକରି ସୁଖ ଦୁଃଖରେ ଦିନାତୀତ କରୁଥିବା ମଧ୍ୟ ପ୍ରକାଶ କରି କହନ୍ତି,

''ପଦରେ ଥାଇ ଏକା ମନ । ଦୁଃଖେ ସୁଖେ ନିଅନ୍ତି ଦିନ ।
କଳିକଥାରେ ନାହିଁ ଖେଦ । ତାଙ୍କ ଭଜନ ତୁମ୍ଭ ପଦ ।।''

ଏପରି କବି ଜୀବନର ନାନା ସାଧାରଣ ସାର୍ବଜନୀନ ଅନୁଭୂତିଗତ ତଥ୍ୟ କବି ଉପସ୍ଥାପନ କରୁଥିବାବେଳେ ଏ ସବୁରେ ସ୍ୱକୀୟ ଜୀବନାନୁଭୂତିର ପ୍ରତ୍ୟକ୍ଷ ପ୍ରକାଶ ପ୍ରାୟ ବିଦ୍ୟମାନ । ଦାରିଦ୍ର୍ୟ ଓ ଅନାଟନ ନିପୀଡ଼ିତ ତାଙ୍କର କବି ଜୀବନର ଅନୁଭବକୁ ପ୍ରକାଶ କରି କବି କହନ୍ତି,

''କାହିଁକି ମୋତେ ସଂସାର ଲିଟ ମଧ୍ୟରେ ପ୍ରଭୁ କଲ ସଂଘଟ
କିମ୍ବା ନକଲ ଚରଣ ପଦ୍ମ କୁସୁମଲିଟ ଯେ ।
କିମ୍ବା ଛାଡ଼ନ୍ତି ଭକତି ବାଟ, ଆନନ୍ଦ ହୋଇ କରନ୍ତି ନାଟ,
ଏବେ ଅନେକ ରୂପ କଲାଣି ଏ ପୋଡ଼ା ପେଟ ଯେ ।
କେତେବେଳେ ବୋହିତେ ଗଲା କରଟ ହେ
କେତେବେଳରେ ମୂର୍ଖ ନାୟକ ଚାଟ ହେ ।
କେତେବେଳରେ ଅଦୃଶ୍ୟ ନଟ, କେତେବେଳରେ ବଧିର ଭାଟ,
କେତେବେଳରେ ପଇଡ଼ଖୋଳା ମୁଠି ମର୍କଟ ହେ ।''

ବୋଇତ ଆଶ୍ରା କରିଯାଇଥିବା କାକ ଯେପରି ଅକୂଳ ସାଗରରେ ବିଶ୍ରାମସ୍ଥଳ ନପାଇ ବ୍ୟର୍ଥ ମନୋରଥ, ମୂର୍ଖ ଶିକ୍ଷକ ଲାଭକରି ବିଦ୍ୟାର୍ଥୀ ଯେପରି ନିରାଶ, ନଟର ସମସ୍ତ ଅଭିନୟ ଯେପରି ଦୃଶ୍ୟ ହୋଇ ନପାରିଲେ ବ୍ୟର୍ଥ, ବଧିର ସାମନ୍ତଠାରେ ଭାଟର ସମସ୍ତ ପ୍ରଶଂସା ପ୍ରଶସ୍ତିଗାନ ଯେପରି ବିଡ଼ମ୍ବିତ, ଉଦରପୂର୍ତ୍ତି ଲୋଭରେ ପଇଡ଼ଖୋଳକୁ ମୁଠାରେ ଧରିଧରି ବାନର ଯେପରି ଖାଦ୍ୟଲାଭରୁ ବଂଚିତ ହୋଇ

ନିରାଶ ହୁଏ ସେହିପରି ଦୀନକବି ତାଙ୍କର ଖାଦ୍ୟସଂସ୍ଥାନ ମାତ୍ର କରିବାକୁ ବିଭିନ୍ନ ମହଲରେ ଆଶ୍ରିତ ହୋଇ ମଧ୍ୟ ନୈରାଶ୍ୟ ନିପୀଡ଼ିତ ଚିତ୍ତରେ ଏହି ଆତ୍ମ କୈନ୍ଦ୍ରିକ ଉକ୍ତିମାନଙ୍କରେ ନିଜର ଦୁରବସ୍ଥାକୁ ନିଃଶଙ୍କୋଚରେ ବ୍ୟକ୍ତ କରିଛନ୍ତି ।

କାଳ୍ପନିକ ପ୍ରବନ୍ଧ କାବ୍ୟମାନଙ୍କର ଶୃଙ୍ଗାର ଭାବରେ ପ୍ରମତ୍ତ ଶିଷ୍ଟ ମହଲରେ ପ୍ରଥମେ ତାଙ୍କର ଗ୍ରନ୍ଥମାନେ ଯେ ଆଦୌ ଆଦୃତ ହୋଇ ନଥିଲା ଓ ସେ ସବୁ ଗ୍ରନ୍ଥ ଯେ ସେମାନଙ୍କର ରସଲିପ୍ସୁ ଚିତ୍ତକୁ ଆକୃଷ୍ଟ କରି ପାରି ନଥିଲା, ତାହାର ଚିତ୍ର ମଧ୍ୟ ଦେଇ କବି କହନ୍ତି;

''କେଲେ ତୁମ୍ଭର ରସରେ ଗୀତ, ରସଇ ନାହିଁ କାହାର ଚିତ୍ତ
ବୋଲନ୍ତି କର୍ଣ୍ଣେ ଶୁଣି ବିଶେଷ, ରସ ନୋହେତ ଯେ ।
କରି ତ ଥାନ୍ତି ଜ୍ଞାନକୁ ହତ, ମୋହ ମଦରେ ହୋଇ ଉନ୍ମତ୍ତ
ମୁଁ ତାଙ୍କୁ କି ବୋଲିବି ମୋହର ନଥାଇ କୃତ ଯେ ।''

'ରସ କଲ୍ଲୋଳ'ରେ ଏପରି ଅନୁଭବର ବିବୃତ୍ତିରୁ ମନେହୁଏ କୃଷ୍ଣକଥା ସମ୍ବଳିତ ତାଙ୍କର ପୂର୍ବବର୍ତ୍ତୀ ରଚନାବଳୀର ସମସ୍ତ ପ୍ରୟୋଜନୀୟତା ସତ୍ତ୍ୱେ ଶୁଦ୍ଧ ଶୃଙ୍ଗାର ରସାମୋଦୀ ତତ୍କାଳୀନ ଅଭିଜାତ ଶ୍ରେଣୀୟ ସ୍ୱଚ୍ଛଳ ଅବସ୍ଥା ସମ୍ପନ୍ନ ମହଲରେ ଆଦୃଦ ହୋଇ ନପାରିବାରୁ କବି ପାରିତୋଷିକାଦି ଲାଭରେ ନିରାଶ ହୋଇଥିବା ଖୁବ୍ ସମ୍ଭବ । ଏପରିକି ଧାର୍ମିକ ବିବେଚିତ ଲୋକେ ମଧ୍ୟ ତାଙ୍କର କୃଷ୍ଣକଥା ଆଧାରିତ ରଚନାମାନଙ୍କୁ ଆଦର ନକରି ତାଙ୍କୁ ନିରାଶ କରିଥିବାର ତିକ୍ତ ଅନୁଭବରେ ବ୍ୟଥିତ ହୋଇ କବି କହନ୍ତି,

''କାହା ହୃଦୟ ଦ୍ରବଇ ନାହିଁ, ଜଳ ଉପଳ ପରାୟ ହୋଇ
କେବଳ ବାହାରକୁ ତିନ୍ତିଲା ପରାୟେ ଦିଶେ ଯେ ।
କରନ୍ତି ଅଙ୍ଗେ ଅନେକ ଛାପ, କେହି ନଜାଣେ ଭିତର ପାପ,
ଚିତ୍ରକାରର ପଟ ପରାୟେ ପ୍ରତ୍ୟକ୍ଷେ ଦିଶେ ଯେ,
କଥା କଥାକେ କହିବାକୁ ଏ ଶଲ୍ୟ ଯେ,
କିମ୍ବା ଦୀନକୃଷ୍ଣକୁ ଏମନ୍ତ କଲ ହେ ।''
କବି ଯା କରେ ମୂର୍ଖକୁ ସ୍ତୁତି, ଏଥିରୁ ବଳି ନାହିଁ ବିପତ୍ତି
ଏଥିକି ପ୍ରତି ଛାତି କି କାତି ମାରିବା ଭଲ ହେ ।''

ଚିତ୍ରକାରକର ପଟ ପରି ଦେହରେ ନାମାବଳୀମାନଙ୍କର ବିପୁଳ ଛାପମାରି ନିଜକୁ ଧର୍ମପରାୟଣ ବୋଲି ପ୍ରଚାର କରୁଥିବା ଛଦ୍ମଧାର୍ମିକ ଲୋକମାନଙ୍କୁ ଏହି ଦରିଦ୍ର

କବି ନିଜର ଗ୍ରନ୍ଥ ପାଠ କରାଇ ଆନୁକୂଲ୍ୟ ଆଶା କରିବାରେ ସେମାନଙ୍କର କଠୋର ଦୁର୍ବ୍ୟବହାରରେ ବ୍ୟଥିତ ହୋଇଥିବା ଏଥିରୁ ସୁସ୍ପଷ୍ଟ । ତେଣୁ ପ୍ରତିଭାବାନ କବି ଏହି ପାଷାଣ୍ଡମାନଙ୍କୁ ସ୍ତୁତିକରିବା ଅପେକ୍ଷା ଅନ୍ୟକିଛି ବଡ଼ବିପଦ ନଥିବାର ଅନୁଭବ କରି ଏହା ଅପେକ୍ଷା ଛାତିରେ କାତିମାରି ଆତ୍ମହତ୍ୟା କରିବାକୁ ବରଂ ଶ୍ରେୟସ୍କର ମନେକରନ୍ତି । ଏପରି ଛଦ୍ମଧାର୍ମିକ ଲୋକ ଯେତେ ଧନବାନ, ପ୍ରତିଷ୍ଠାବାନ ଅଥବା ପ୍ରତିପତ୍ତିଶାଳୀ ରାଜଶାସକ ହେଲେ ମଧ୍ୟ ସେମାନଙ୍କୁ କବି 'କୁମତି ଗୁଆଁର' ବା ମନ୍ଦବୁଦ୍ଧି ଅରସିକ ନିଷ୍ଠୁର କୃପଣ ଭାବେ ବର୍ଣ୍ଣନା କରି ସେମାନଙ୍କ ଠାରେ କବିକୃତ ସାତ୍ତ୍ୱିକ ଗ୍ରନ୍ଥର କୌଣସି ଗ୍ରାହକତା ନଥାଏ, ବରଂଥାଏ ଅନାଦର ଓ ନିନ୍ଦୁକତା, ତାହା କବି ବାରମ୍ବାର ବହୁ ପଦରେ ଉଲ୍ଲେଖ କରିଛନ୍ତି;

୧) ''କର୍ଣ୍ଣେ ଶୁଣି ଗୀତ ବୋଧ ନୁହେ ଚିତ୍ତ ଯେମନ୍ତ ଗୁଆଁର ଲୋକର
କେଶବ ଚରିତ ପ୍ରତ୍ୟକ୍ଷେ ଦେଖିତ ହେଉଥାଏ ଏଡ଼େ ଅସ୍ଥିର ।''

୨) ''କୁମତି ଗୁଆଁର
କେବଳ ବଇମାତ୍ର ଭାଇ ତା'ର ।''
ଶୁଦ୍ଧ କବିତ୍ୱର ଏକାମାତ୍ର ଶତ୍ରୁ ହେଉଛି ଦୁର୍ବୁଦ୍ଧି ଅରସିକ ।

୩) ''କର୍କଶ ମୂର୍ଖଶୁଷ୍କ ତରୁମାତ୍ର,
ତେକେବେଳେ ହେଁ ନଧରଇ ପତ୍ର ।''

କବିତ୍ୱ ହିଲ୍ଲୋଳରେ ରସିକତରୁ ପଲ୍ଲବିତ ହେଲେ ମଧ୍ୟ ମୂର୍ଖ କୃପଣର ଶୁଷ୍କ ହୃଦୟରେ ତାହା ପ୍ରଭାବହୀନ, ପ୍ରତିକ୍ରିୟାହୀନ ।

୪) ''କୁତ୍ସିତ ଯା ବୁଦ୍ଧି,
କରେ ତା ବଚନ ଆମ୍ବିଳ ଦଧି ।''

ଉତ୍ତମ ଗୋକ୍ଷୀର ତୁଲ୍ୟ କବିତ୍ୱ ରସରେ ଶ୍ରଦ୍ଧା ଶାକର ଯୁକ୍ତକରି ପାନ କରୁଥିବା ଲୋକେ ସ୍ୱାଦୁ ଅନୁଭବ କରୁଥିବାବେଳେ କୁତ୍ସିତ ବୁଦ୍ଧି ଅରସିକମାନେ ତାକୁ ଆମ୍ବିଳ ଦଧି ତୁଲ୍ୟ ପରିହାର କରନ୍ତି । ଅରସିକମାନଙ୍କ ଠାରେ କାବ୍ୟର ରସସଂପଦର ନିବେଦନ ବ୍ୟର୍ଥ ନିଷ୍ଫଳ ହୁଏ ବୋଲି ଅତି ପ୍ରାଚୀନ କାଳରୁ କବିଗଣ ଅନୁଭବ କରି କାବ୍ୟ ରଚନାରେ ମଙ୍ଗଳାଚରଣରେ ସେମାନଙ୍କର ନିନ୍ଦାବାଦ କରିବାକୁ ଅଳଙ୍କାର ଶାସ୍ତ୍ରବିତମାନେ ଏକ ବିଧିଭାବରେ ଘୋଷଣା କରିଆସିଛନ୍ତି । ସାଂପ୍ରତିକ କାଳରେ ଶିକ୍ଷା ଓ ସଂସ୍କାରର ଭୂୟୋ ବିକାଶ ସତ୍ତ୍ୱେ ଅବସ୍ଥାର ଉନ୍ନତି ପରି ବର୍ତ୍ତେ ବରଂ ଅଧିକ

ଶୋଚନୀୟ ଯେ ନହୋଇଛି, ତାହା ନୁହେଁ । ତଥାପି ଯେଉଁ ଯୁଗରେ କବି ଓ କଳାକାରମାନଙ୍କୁ ପୃଷ୍ଠପୋଷକତା ପ୍ରଦାନ ନିମିତ୍ତ ରାଜା ଓ ସମ୍ଭ୍ରାନ୍ତ ଲୋକଙ୍କର ଅପରିହାର୍ଯ୍ୟ କର୍ତ୍ତବ୍ୟ ରୂପେ ବିବେଚନା କରା ଯାଉଥିଲା, ସେ ଯୁଗରେ ଏହି ଦରିଦ୍ର କବିଙ୍କର ଏପରି ଅନୁଭୂତି, ଦୁର୍ଦ୍ଦଶା ଓ ସେହି କୁମତିମାନଙ୍କୁ କଠୋର ସମାଲୋଚନା ତାଙ୍କର ଶିଳ୍ପୀସୁଲଭ ସ୍ୱାଭିମାନୀର ନିର୍ଭୀକ ବ୍ୟକ୍ତିତ୍ୱର ସ୍ୱତଃସ୍ଫୂର୍ତ୍ତ ପ୍ରକାଶ ମାତ୍ର । କବି କର୍ମର ମହତ୍ୱ, ବୈଶିଷ୍ଟ୍ୟ ଓ କବି ଜୀବନର ବ୍ୟଥା ଯନ୍ତ୍ରଣାକୁ ଯେପରି ନିଃସଙ୍କୋଚ ଓ ନିର୍ଭୟରେ ଉତ୍‌ଥାପିତ କରନ୍ତି ଦୀନକୃଷ୍ଣ ତାହା ତାଙ୍କର ଶିଳ୍ପୀ-ସୁଲଭ ସ୍ୱାଭିମାନୀ ପରିଚାୟକ । ବେଳେ ବେଳେ ଆପଣାର ସ୍ୱାର୍ଥ ଓ ସୁବିଧା ଦୃଷ୍ଟିରୁ ଚତୁର ଲୋକେ ମଧ୍ୟ ଆପଣାର କିଛି ରଚନା ପାଇଁ ଆତ୍ମସ୍ପର୍ଦ୍ଧା ଓ ଆତ୍ମପ୍ରଶଂସା ଯେ ନକରନ୍ତି ତାହା ନୁହେଁ, କିନ୍ତୁ ତାହା ଦ୍ୱାରା ସେମାନେ ସ୍ୱୟଂହି ଉପହସିତ ହୋଇଥାନ୍ତି । କିନ୍ତୁ ଏପରି ସ୍ୱାର୍ଥ-ବୁଦ୍ଧିର ବିନାଶ ଘଟି ନଥିବା ଯୁଗରେ ପ୍ରକୃତ ପ୍ରତିଭାବାନ ସୌନ୍ଦର୍ଯ୍ୟସ୍ରଷ୍ଟା ଶିଳ୍ପୀକୁଳର ଅବ୍ୟକ୍ତ ଯନ୍ତ୍ରଣାକୁ ସାଧାରଣ ଭାବେ ଆତ୍ମ-ଅନୁଭୂତି ମାଧ୍ୟମରେ ଯେପରି ସ୍ପଷ୍ଟ ବ୍ୟକ୍ତ କରନ୍ତି ଦୀନକୃଷ୍ଣ ସେପରି ଅଭିବ୍ୟକ୍ତି ଏକାନ୍ତ ବିରଳ । ନିଥର ନିସ୍ପନ୍ଦ କାବ୍ୟରଚନା ପରଂପରାରେ ଏପରି ଏକ ସାର୍ବକାଳୀନ ସତ୍ୟକୁ ନିର୍ଭୟରେ ପ୍ରକାଶ ଓ ରାଜାଦେଶ ବିରୁଦ୍ଧରେ ଅବଜ୍ଞାର କଠୋର ସ୍ୱର ହେଉଛି ତାଙ୍କର ପ୍ରଚଣ୍ଡ ସ୍ୱାଭିମାନର ସ୍ୱର, ଏକ ସାର୍ବକାଳୀନ ବିଦ୍ରୋହୀ ଶିଳ୍ପୀର ସ୍ୱର, ଯାହାକି ଏ ଦେଶର ସାରସ୍ୱତ ପରଂପରାରେ ଉତ୍ସାହପ୍ରଦ ଭାବରେ ମଧ୍ୟ ବେଳେବେଳେ ପ୍ରତିଧ୍ୱନିତ ।



## ପରିଶିଷ୍ଟ

# ଦୀନକୃଷ୍ଣଙ୍କ ସମ୍ବନ୍ଧୀୟ ତଥ୍ୟମୂଳକ କେତେକ ଗ୍ରନ୍ଥର ତାଲିକା


୧. ଦାର୍ଢ୍ୟତା ଭକ୍ତିରସାମୃତ : ଭକ୍ତ ରାମଦାସ
୨. 'ରସକଲ୍ଲୋଳ'– ଆଲୋଚନା ଓ ଅନୁବାଦ : John Beams. Indian Antiquary-1872. Page No. 217.
୩. ପ୍ରବନ୍ଧାବଳୀ : ଶ୍ୟାମସୁନ୍ଦର ରାଜଗୁରୁ
୪. ଓଡ଼ିଆ ସାହିତ୍ୟର ଇତିହାସ : ପଣ୍ଡିତ ବିନାୟକ ମିଶ୍ର
୫. ଓଡ଼ିଆ ସାହିତ୍ୟର ପରିଚୟ (ଦ୍ୱିତୀୟ ଭାଗ) : ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ
୬. 'ରସକଲ୍ଲୋଳ' ମୁଖବନ୍ଧ : ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି; ପ୍ରାଚୀ ସମିତି, କଟକ ପ୍ରକାଶିତ
୭. ଓଡ଼ିଆ ସାହିତ୍ୟ ଇତିହାସର ସମାଲୋଚନା : ଡକ୍ଟର କରୁଣାକର କର । ପ୍ରାଚୀ ସମିତି, କଟକ ପ୍ରକାଶିତ
୮. ଓଡ଼ିଆ ସାହିତ୍ୟର ଇତିହାସ (୩ୟ ଖଣ୍ଡ) : ପଣ୍ଡିତ ସୂର୍ଯ୍ୟନାରାୟଣଦାଶ, ଗ୍ରନ୍ଥମନ୍ଦିର, କଟକ
୯. History of Oriya Literature : Dr. M. Mansingh, Kendra Sahitya Academy, Delhi.
୧୦. ଦୀନକୃଷ୍ଣ ସାହିତ୍ୟ ସମୀକ୍ଷା : ଅଧ୍ୟାପକ ନଗେନ୍ଦ୍ରନାଥ ପ୍ରଧାନ, ଫ୍ରେଣ୍ଡ୍ସ ପବ୍ଲିଶର୍ସ, କଟକ
୧୧. ଜଗମୋହନ ଛାନ୍ଦ- ମୁଖବନ୍ଧ : ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି, ପ୍ରାଚୀ ସମିତି, କଟକ ପ୍ରକାଶିତ
୧୨. ଓଡ଼ିଆ ସାହିତ୍ୟରେ ଦୀନକୃଷ୍ଣ : ଡକ୍ଟର ନଗେନ୍ଦ୍ରନାଥ ପ୍ରଧାନ, ଫ୍ରେଣ୍ଡ୍ସ ପବ୍ଲିଶର୍ସ, କଟକ
୧୩. ଓଡ଼ିଆ ସାହିତ୍ୟର ଇତିହାସ : ଡକ୍ଟର ମାୟାଧର ମାନସିଂହ, ଗ୍ରନ୍ଥମନ୍ଦିର, କଟକ
୧୪. କହେ କୃଷ୍ଣଦାସ କବି : ଡକ୍ଟର କୃଷ୍ଣଚରଣ ସାହୁ
୧୫. ଓଡ଼ିଆ ନିର୍ଗୁଣ ସାହିତ୍ୟର ଭୂମିକା : ଡକ୍ଟର ନଗେନ୍ଦ୍ରନାଥ ପ୍ରଧାନ, ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର
୧୬. ଗବେଷକ ଆର୍ତ୍ତବଲ୍ଲଭ ମହାନ୍ତି : ଡଃ ନଟବର ସାମନ୍ତରାୟ


